# ଲଘୁଚାପ

(ସାମାଜିକ ଉପନ୍ୟାସ)

ଶ୍ରୀ ନରସିଂହ ମିଶ୍ର



# ଲଘୁଚ୍ଛାପ


ପ୍ରକାଶକ :
**ଶ୍ରୀ ଅନନ୍ତ ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :
ନଭେମ୍ବର, ୧୯୮୧

ପ୍ରଚ୍ଛଦପଟ :
ଶ୍ରୀ ଅସିତ ମୁଖାର୍ଜି

ମୁଦ୍ରାକର :
ଭାରତୀ ପ୍ରେସ୍
କଟକ-୯

ମୂଲ୍ୟ—ବନ୍ଧାଇ : ୧୮ ଟଙ୍କା
ସାଧା : ୧୫ ଟଙ୍କା

*LAGHUCHAP*

Sri Narashingh Mishra

Publisher
**Sri Anant Misra**
Cuttack Students' Store
Cuttack-753002

*First Edition*:
1981

**Price :**
Deluxe : Rs. 18·00
Popular : Rs. 15-00

---

Paper used for Printing of this book was made available by the Government of Orissa at Concessional rate.

# ଆତ୍ମକଥା

"Life is a Match from House to Home and Home to Heaven." ଏ କଥାଟା ଯେବେ ମନକୁ ଖୁବ୍ ଛୁଇଁଥିଲା ହୁଏତ ଏହା ଅତୀତରେ ଅଗଣିତ ମନକୁ ଛୁଇଁଥିବ । ମଣିଷ ବୋଧହୁଏ ସେଇ ଅମୃତ ଯାତ୍ରାର ପ୍ରଥମ ପାହାଚରେ ପାଦ ଦେବା ପାଇଁ ଝାଟି, ମାଟି, ଇଟା, ଚୂନ, ପଥରର ଘରଟିଏ ତିଆରି କରେ । ଏଥିପାଇଁ ତାକୁ ତା'ର ସମସ୍ତ ଅର୍ଥ, ଶକ୍ତି, ସାମର୍ଥ୍ୟ, ସମୟ ଓ ସୁଯୋଗ ବୋଧହୁଏ ବିନିଯୋଗ କରିବାକୁ ପଡ଼ିଥାଏ । ବହୁ ଦୁଃଖ ଯନ୍ତ୍ରଣା, ଅଭାବ, ଅନଟନ, ଅନୁଶୋଚନା, ମାନାପମାନକୁ ସେ ବରଣ କରେ । ବିନିମୟରେ ସେ ଘରଟିଏ ତ ପାଏ, ତା ସହିତ ଅସରନ୍ତି ଅନୁଭୂତି ସେଇ ଜୀବନ ବିଦ୍ୟାଳୟରୁ ଲାଭ କରିଥାଏ । ସ୍ଥିରତା, ସହିଷ୍ଣୁତା, ଧୈର୍ଯ୍ୟ, ବିସ୍ମରଣଶୀଳତା ତା' ଭିତରେ କିଛି ପରିମାଣରେ ଯେ ପ୍ରକାଶିତ ନହୁଏ ଏହା କୁହାଯାଇ ପାରିବ ନାହିଁ । ଏହାହିଁ ତା'ର ଯାତ୍ରାର ପାଥେୟ, ସ୍ଥୂଳରୁ ସୂକ୍ଷ୍ମପାଇଁ ତାର ପ୍ରବଣତା । କାଠି କୁଟାର ଘରୁ ସ୍ନେହ, ଶ୍ରଦ୍ଧା, ସେବା, ତ୍ୟାଗ ଓ କୋମଳତାର କୁଳାୟ ପାଇଁ ତା'ର ସାଧନା, ସେଥିରେ ସେ ଯେତିକି ସଫଳ ହୁଏ, ଅମୃତ ଯାତ୍ରା ତା' ପାଇଁ ସେତିକି ଶୁଭଙ୍କର ହୋଇଥାଏ । ସୂକ୍ଷ୍ମତମ କୋମଳ ବା ବୃତ୍ତିରୁ, ଅନିର୍ବଚନୀୟ ଅମୃତ ଧାମର ସନ୍ଧାନ ତାକୁ ମିଳେ !

ସମସ୍ତେ କ'ଣ ଏ ଯାତ୍ରା ପଥରେ ଆଗେଇ ପାରନ୍ତି ! ଅନେକ ମଣିଷ ମାଟି ପଥରର ଘର ପାଖରେ ଅଟକି ଯାଆନ୍ତି । ମଣିଷ କୋମଳତମ ବୃତ୍ତିର ପ୍ରୟୋଗରେ ଶାନ୍ତି ସନ୍ତୋଷର ଆଳୟ ( Home ) ରଚନା କରି ପାରେ ନାହିଁ । ସ୍ଥୂଳ-ଭିତରେ ତାର ଗମ୍ଭୀର ନିମଜ୍ଜନ, ସୂକ୍ଷ୍ମର ସନ୍ଧାନ ନେଇ ପାରେନା । ପୁଣି

ସ୍ରଷ୍ଟର ସାଧନା ପୀଠରେ ଯେ ସିଦ୍ଧିଲାଭ କରେ ଯେ ତୃଷ୍ଣାକୁ ପାଦାଘାତରେ ପାର ଦେଇପାରେ—ସେତେବେଳେ ସେ ଧ୍ରୁବ ଅମୃତ ସନ୍ତାନ। ମୃତ୍ୟୁଞ୍ଜୟରେ ମୃତ୍ୟୁର ଦ୍ୱାରକୁ ଅତିକ୍ରମ କରିପାରେ। ମୋର ଏ ଉପନ୍ୟାସଟି ଏହି ପ୍ରକାର ଏକ ମନମନ୍ଥନ ଭିତରୁ ସୃଷ୍ଟି। ଚରିତ୍ରଗୁଡ଼ିକ ତା'ର ଆଙ୍ଗିକ ବିଭବ। ପାଠକମାନଙ୍କୁ ଏହା ଆନନ୍ଦ ଦେଲେ, କିମ୍ବା ଅନୁଭୂତି ଯୋଗାଇଲେ, କୋମଳ ଚିତ୍ତବୃତ୍ତିକୁ କିମ୍ବା ଉଲ୍ଲସିତ କଲେ, ମୁଁ ସେମାନଙ୍କର ଶ୍ରଦ୍ଧା ଚର୍ଚ୍ଚିତ ହେବ। ଏହାହିଁ କାମନା।

ଜନ୍ମତିଥି
ଜ୍ୟେଷ୍ଠ, କୃଷ୍ଣଷଷ୍ଠୀ

ବିନୀତ
ନରସିଂହ



ରାତିର ଶେଷ ପ୍ରହର ।

ତନ୍ଦ୍ରାଭରା ନୟନରେ ସ୍ୱପ୍ନର ଶିକାର ଚାଲିଛି, ଗୋଟିକ ପରେ ଗୋଟିଏ ।

"ଜଣକୁ ଆପଣାର କରିନେଲେ, ଆଉ ସମସ୍ତେ ପର ହୋଇ ଯାଆନ୍ତି, ତେବେ ସେ ଜଣକ କିଏ ?

ସ୍ତ୍ରୀ ?

ଧନ ଦଉଲତ ? ?

ସମ୍ଭୋଗ, କ୍ଷମତା, ସ୍ୱାର୍ଥ·· ନା ଆଉ କଣ ? ? ?

ଏ ପ୍ରଶ୍ନଟା ମୋତେ ସବୁବେଳେ ବିବ୍ରତ କରୁଚି ସୌମ୍ୟା, ତାର ପ୍ରକୃତ ଉତ୍ତରଟା ଖୋଜି ପାଉନି, ତମେ ଟିକିଏ ସାହାଯ୍ୟ କରିବନି ସୌମ୍ୟା ! ଏ ମହାସତ୍ୟର ଉଦ୍‌ଘାଟନ ପାଇଁ ମୋତେ କଣ ଶାକ୍ୟମୁନି ଗୌତମ ପାଲଟିବାକୁ ହେବ !"

ହସିଲେ ସୌମ୍ୟା, ଅତି ଆତ୍ମମଗ୍ନ ସେ ହସ, ଅତି ଆପଣାର ··ଆବେଗ ନାହିଁ ··ଉଦ୍‌ବେଗ ନାହିଁ ··ବ୍ୟାକୁଳତା ନାହିଁ, ନାରୀ ହୃଦୟର ସେଇ ଶାନ୍ତ ସରଳ ଆଦିମ ହସ । ଶରତ ସନ୍ଧ୍ୟାର ହସକୁଡ଼ି ଗୁନ୍ଦର ହସ ।

"ତୁମେ ଖାଲି ହସୁଚ ଯେ ସୌମ୍ୟା, ନିଜେ ପକ୍ଷଭୁକ୍ତ ବୋଲି ବୋଧହୁଏ ସାହସ କରୁନ ମନ୍ତବ୍ୟ ଦେବାକୁ । ସବୁ ଶାସ୍ତ୍ର ପୁରାଣତ କହୁଛି, ସବୁ ସାଧୁ ସନ୍ଥ ତ କହୁଛନ୍ତି, "ନାରୀ ନର୍କର ଦ୍ୱାର, ତାରି ପାଇଁ ସମସ୍ତେ ପର ହୋଇ ଯିବାର ଭୂରି ଭୂରି ପ୍ରମାଣ ରହିଛି, ତେବେ ଏତେ ସୁନ୍ଦର ସରଳ ସମାଧାନ ପାଇ ବି ମଣିଷ ଅତୃପ୍ତ । ଯୁଗ ଯୁଗର ସେ ଅତୃପ୍ତି; କିନ୍ତୁ ସୌମ୍ୟା ! ତମେ ଏ ପ୍ରକାର ଏକ ସିଦ୍ଧାନ୍ତର ବିରାଟ ବ୍ୟତିକ୍ରମ । ତୁମେ ସେ ପ୍ରକାର ସିଦ୍ଧାନ୍ତର ଶ୍ୱାସରୁଦ୍ଧ କରି ତାକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଛ । ମୁଁ ଯେତେବେଳେ ମୋ ଅତୀତର ସେଇ କ୍ଷତାକ୍ତ ଦିନଗୁଡ଼ାକୁ

ଦୃଷ୍ଟି ଫେରାଏ, ପ୍ରେମ ମୂଳ ଟକ୍ରାଉଠେ, ସଙ୍ଘର୍ଷ ଭିତରେ ଜନଗୁଡ଼ାକର ଜବନ ନାଶଉଛନ୍ତି । କିଛି ସମୟପରେ ମହାନନ୍ଦରେ ଅଭିଭୂତ ହୁଅନ୍ତି ସେମାନେ । ଆଉ କେତେକ ଶାଣିତ ଅସ୍ତ୍ରର ଆଘାତ ପାଇ ଚିତ୍କାର କରଉଛନ୍ତି । ଜ୍ୱାଳାମୟ ସେ ଚିତ୍କାର, ବ୍ୟଥାତୁର ସେ ଯନ୍ତ୍ରଣା । ତମେ ମୋର ଏ ଭଙ୍ଗା କୁଡ଼ିଆରେ ପାଦଦେବା ଦିନଠାରୁ ସେମାନେ ମୋର ପର ହୋଇଯାଇଛନ୍ତି । ଆଃ··· ସେ ପରପଣିଆ କେଡ଼େ ମଧୁର । ତା' ପ୍ରତିବଦଳରେ ଶାନ୍ତି, ସୁଖ, ଆଶା···ସମସ୍ତେ ପ୍ରେମ ବଳୟର ଖୁବ୍ ନିକଟବର୍ତ୍ତୀ ହୋଇ ଯାଇଛନ୍ତି । ସେଇଟା ତମର କୁହୁକ ସୌମ୍ୟା ! ତମେ ଛୋଟିଆ ଏକ ପରିବାର ଭିତରେ ଅସୀମ ପାରାବାରଟାଏ ସୃଷ୍ଟି କରି ଦେଇଛ । ନାରୀ ନର୍କର ଦ୍ୱାର ହୋଇନପାରେ ।''

ସୌମ୍ୟା ତଥାପି ହସିଲେ ।

''ତମେ ତା'ହେଲେ କିଛି କହୁନ ସୌମ୍ୟା । ମୋ କଥାର ଅପ୍ରାସଙ୍ଗିକତା କିଛି ଅନୁଭବ କଲ କି ? ଦର୍ଶନ ଅଧ୍ୟାପିକା ନା, ସବୁବେଳେ ନୂତନ ମୂଲ୍ୟ ସୃଷ୍ଟି-କରିବାର ପ୍ରବଣତା ରହୁଛି ।''

''ମୁଁ ହସିବାରେ କ'ଣ କିଛି ଅସଙ୍ଗତ ରହିଗଲା ! ପ୍ରକୃତି ତ ସବୁବେଳେ ହସେ, ପୁରୁଷ ତା' ହସିଲା ମୁହଁରୁ କଥା ଛଡ଼େଇବାକୁ ଚେଷ୍ଟାକରେ, ସଫଳ ହେଲେ ଅର୍ଥକୁ ଅନର୍ଥ କରେ । 'ନାରୀ ନରକର ଦ୍ୱାର'—ଏହା ହେଉଛି ସେଇ ପ୍ରକାର ଏକ ଅନର୍ଥ ଭାଷା । ପୁରୁଷ ପ୍ରଧାନ ସମାଜ, ଭିତରର କିଛି ଅର୍ଥ ବୁଝେନା ଅନର୍ଥ ପାଇଁ ତାର ଅନୁରାଗ ଅଧିକ । ପ୍ରଚଳିତ ଧାରଣାକୁ ସେ ପ୍ରଶ୍ରୟ କରେ ।''

''ପୁଣି ତ ସେଇ ଦର୍ଶନତତ୍ତ୍ୱ, ବାସ୍ତବତା ଆଉ ଦର୍ଶନ, ଦ'ଟା ଅଲଗା କଥା । ବାସ୍ତବତାରେ ଗାଣିତିକ ସୂତ୍ରର ପ୍ରାମୁଖ୍ୟ ରହିଛି; କିନ୍ତୁ ଦର୍ଶନ ତ ମଣିଷର ଦର୍ଶନ ସମ୍ବନ୍ଧିତ ତାର ଏକ ସାଲିସ୍ ମନୋଭାବ ।''

ନା, ମୁଁ ଦର୍ଶନ ତତ୍ତ୍ୱ କଥା କହୁନ, ପ୍ରକୃତି ସବୁବେଳେ ବାସ୍ତବ । ପୁରୁଷ ସେ ବାସ୍ତବତାରେ ବିହ୍ୱଳ ହୋଇ ସମୟରେ ଅବାସ୍ତବ ହୋଇଉଠେ । ତାର କଳା, ଦର୍ଶନ, ସାହିତ୍ୟ ଓ ସଙ୍ଗୀତ ସେଇ ବାସ୍ତବତାର ମଧ୍ୟରେ ସେପରି ଅବାସ୍ତବ ପ୍ରମାଣ । ତା' ପୁଣି ଯେତେବେଳେ ପ୍ରାଣସ୍ପର୍ଶୀ ହୋଇଉଠେ, ତା ମଧ୍ୟରେ ଆତ୍ମୀୟତା ଏକୀଭୂତ ହୁଏ, ସ୍ଥୂଳରୁ ସୂକ୍ଷ୍ମ ଓ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଉଠେ, ସେତେବେଳେ ତାହା ତା ପାଇଁ ଦର୍ଶନ ପାଲଟିଯାଏ । ପ୍ରକୃତି ବାସ୍ତବତାର ଆଧାର । ସ୍ଥୂଳର ଏକ ସ୍ଥିତି-ସମ୍ପନ୍ନ ସ୍ଥାପତ୍ୟ । ପୁରୁଷର ବୋଧହୁଏ ନିଜର କିଛି ସ୍ଥିତିନାହିଁ · ତାହା ପ୍ରକୃତି

ଭିତରେ ନିମଜ୍ଜିତ । ପ୍ରକୃତି ତା ଶରୀର ଓ ମନରୁ କିଛି କିଛି ବିଭବ ଦାନକରି ପୁରୁଷକୁ ଗଢ଼ିଛି । ତେଣୁ ପ୍ରକୃତି ସତ୍ୟ···ପ୍ରକୃତି ସତ୍ୟ···ପ୍ରକୃତି ଅନନ୍ତ । ସରଳ ମନରେ ବୁଝିଲେ ତାକୁ ସହଜରେ ବୁଝି ହୋଇଯାଏ । ବିଶ୍ଳେଷଣ କଲେ ସେ ହୁଏ ରହସ୍ୟମୟୀ···ତା'ପରେ ଆସିଯାଏ ଦର୍ଶନ ।

ମୁଁ ତମ କଥାରେ ଏକମତ ହେଲେ ଉପନିଷଦର ପୁରୁଷ ଓ ପ୍ରକୃତିତତ୍ତ୍ୱ ବୋଧହୁଏ ଭୁଲ ହୋଇଯିବ । ତମେ ଯାହା କହୁଛ ବୋଧହୁଏ ସତ୍ୟର ଏକ ବିପରୀତ କଥା କହୁଚ । ପ୍ରକୃତି ଭିତରୁ ପୁରୁଷର କିମ୍ବା ନାରୀ ଭିତରୁ ପୁରୁଷର ସୃଷ୍ଟି ନୁହେଁ । ସର୍ଜନାର ପ୍ରଥମ ପ୍ରଭାତରେ କେବଳ ପୁରୁଷହିଁ ଥିଲା । ସୃଷ୍ଟିପାଇଁ ସେ ନିଜକୁ ଦ୍ୱିଖଣ୍ଡିତ କଲା, ତାରି ଭିତରୁ ସୃଷ୍ଟି ହେଲା ନାରୀ, ତା ପରଠାରୁ ପ୍ରକୃତି ଭିତରୁ ପୁରୁଷର ସୃଷ୍ଟି । ତେବେ ସେ ଯାହା ହେଉନା କାହିଁକି ପ୍ରତ୍ୟେକ ବିଷୟରେ ଟିକିଏ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଦରକାର; ନ ହେଲେ ମଣିଷ ଜୀବନର ଘାତ ପ୍ରତିଘାତ ମଧ୍ୟରେ ବଞ୍ଚି ପାରିବନି ବୋଧହୁଏ । ଦର୍ଶନହିଁ ତାର ଆଶ୍ୱାସନା, ତା ଜୀବନବ୍ୟାପୀ ସାଧନାର ସିଦ୍ଧିମନ୍ତ୍ର ।

"ହଁ ପ୍ରକୃତରେ ଦର୍ଶନହିଁ ମଣିଷକୁ ମଣିଷ ଭାବରେ ବଞ୍ଚାଇ ରଖିଛି । ମଣିଷ ମାତ୍ରେଇ ନିଜର କିଛିନା କିଛି ଦର୍ଶନ ଅଛି ଓ ସେ ତାକୁଇ ନେଇ ତାର ଜୀବନ ଯାତ୍ରା ନିର୍ବାହ କରେ ।"

ସୌମ୍ୟା ! ମୋତେ ସବୁବେଳେ ସେଇ ଗୋଟିଏ ପ୍ରଶ୍ନ ବିବ୍ରତ କରୁଛି । "ମଣିଷ କାହାକୁ ଆପଣାର କରିନେଲେ ଆଉ ସମସ୍ତଙ୍କୁ ପର କରିଦିଏ ?" ଏ ପ୍ରଶ୍ନର ସମାଧାନ ପାଇଁ ତୁମର ଦାର୍ଶନିକ ଦୃଷ୍ଟିଭଙ୍ଗୀ କଣ, ମୋତେ ବୁଝାଇ ଦିଅ ସୌମ୍ୟା !

"ତୁମେ ତାକୁ କଣ ଚିହ୍ନିନ ! ବାରବାର କରି ଚିହ୍ନିଚ । ତମର ପଥରେ ସେ ଆସିଛି, ତମରି ପାଖେ ପାଖେ ଅଛି, କାହା ସହିତ ଗ୍ରନ୍ଥି'ଟିଏ ଜଡ଼ିରହିଚ । ତାହା ସାଥୀକୁ ଚିହ୍ନାଇ ଦେବ କଣ !"

"ସୌମ୍ୟା, ମୋ ଭିତରେ ଯେ ଜଡ଼ିଭୂତ ଅଥଚ ମୁଁ ତାକୁ ଚିହ୍ନି-ପାରୁନି ?"

ମଣିଷର ସେ ଚିର ସାଥୀ, ସେ ତାକୁ କ୍ଷଣିକ ଆନନ୍ଦ ଦିଏ, ଶୀର୍ଣ୍ଣ ଶରୀରରେ ଶତସିଂହର ଶକ୍ତି ସଞ୍ଚାରକରେ । ସେ ଶକ୍ତି ଭାବପ୍ରବଣତାର ଏକ ଘନ

କୁହୁଡ଼ି । ମଣିଷ ହଠାତ୍ ତାହା ବୁଝି ପାରେନା, ସେଇ ଦୁର୍ବଳ ମୁହୂର୍ତ୍ତରେ ମଣିଷ ଭିତରେ ଏକ ଅହେତୁକ ଆତ୍ମସମ୍ମାନବୋଧ ସୃଷ୍ଟି ହୋଇଥାଏ । କ୍ଷମତାର ଅହଂକାର ମନ ଭିତରେ ଭରିଯାଏ । ମଣିଷ କ୍ଷଣିକ ପାଇଁ ଶାସ୍ତିଦାତାର ସିଂହାସନରେ ବସିବାର ସୌଭାଗ୍ୟ ଲାଭ କରିଥାଏ । ଏତେ ସମ୍ମାନର ଅଧିକାରୀ ଯେ ମଣିଷକୁ କରାଇପାରେ, ତାକୁ କିଏ କେହି କେବେ ଶତ୍ରୁ ବୋଲି ଭାବି ପାରିବ । ତୁମେ ତ କବି, ଭାବୁକ । ତମକୁ ମୁଁ ଆଉ ଅଧିକ କଣ କହିବି ”

“ବାଃ....ତମେ ମଣିଷ ପ୍ରକୃତିଟାକୁ ଏତେ ଚିକନକି ଭାବରେ ବିଶ୍ଳେଷଣ କରିଛ ସୌମ୍ୟା ! ମଣିଷ ମନକୁ ବିଶ୍ଳେଷଣ କରିବା ମୋର ପେଶା, ଅଥଚ ମୁଁ ପାରିଲିନି ।”

“ଠିକ୍ ପାରିଛ ତୁମେ, ଅନେକ ସମୟରେ ନ ପାରିବାଟା ପାରିବାପଣିଆର ଗୋଟାଏ ସବଳ ଦିଗ । ପରାଜୟଟା ଏକପ୍ରକାର ବିଜୟ । ଅଜ୍ଞତାଟା ତା ପାଇଁ ଗୋଟାଏ ଆଶୀର୍ବାଦ । ବ୍ୟସ୍ତ ହୁଅନି, ତମଭିତରେ ଏ ଯେଉଁ ମାନସିକ ଦୁର୍ବଳତା ଟିକିଏ ସୃଷ୍ଟି ହୋଇଛି, ମୁଁ ତା'ପାଇଁ ଏକ ମହୌଷଧିର ବ୍ୟବସ୍ଥା କରିଦେବି କବି ।”

ଚମତ୍କାର···ଚମତ୍କାର··· । ସୌମ୍ୟା ମୋର କେବଳ ପତ୍ନୀ ନୁହେଁ, ମୋର ଶରୀର ଓ ମନର ବି ଡାକ୍ତର । ମୋର ଦୋଷ ଦୁର୍ବଳତା, ରୋଗ, ବିରାଗ ସବୁ ପ୍ରଶମିତ ହୋଇଯିବ । ହାଃ··· ହାଃ ହାଃ ଚମତ୍କାର, ଚମତ୍କାର !!”

ସ୍ୱାମୀଙ୍କର ଚିତ୍କାର ଶୁଣି ଚହଟ୍‌କରି ଉଠିପଡ଼ିଲେ ସୌମ୍ୟା । ତାଙ୍କ ହାତରେ ହଲାଇ ଦେଇ କହିଲେ, “ଏ ! କଣ ହେଲା କି, ଚିତ୍କାର କାହିଁକି କରୁଛ ?”

ନୀଳ ଘନ ଅନ୍ଧକାର ଭିତରେ ଶେଯରୁ ଉଠି ସୌମ୍ୟାର କୋଳକୁ ଆଉଜି ବସି ପଡ଼ିଲେ ସମରେନ୍ଦ୍ର । ଆଲୁଳାୟିତ କବରୀରେ ଅଙ୍ଗୁଳି ଚାଳନା କରୁକରୁ କହିଲେ, “ଚମତ୍କାର ସ୍ୱପ୍ନଟାଏ ଭାଙ୍ଗିଦେଲ ସୌମ୍ୟା । ଏଇ ଜିରୋ ବଲ୍‌ବର ନୀଳାଭ ଆଲୋକ ତଳେ, ତମରି ପଲ୍ଲବିତ ପେଲବ ବୁକୁର ମୃଦୁଳ ସ୍ପର୍ଶରେ ମୁଁ ବିଭୋର ହୋଇ ତମରି ସାଥିରେ ଦର୍ଶନ ଚର୍ଚ୍ଚା କରୁଥିଲି । ତମ ପାଖରେ ମୁଁ ଗୋଟାଏ ମାନସିକ ରୋଗୀ··ତମେ ଗୋଟାଏ ପ୍ରେସ୍କ୍ରିପ୍ସନର ବ୍ୟବସ୍ଥା କରିଛ ମୋ ପାଇଁ । ସେ ମହୌଷଧିଟା କଣ ଟିକିଏ କହିବନି ।”

“ଏଁ, ତମେ କଣ ତଥାପି ସ୍ୱପ୍ନ ଦେଖୁଚ ! କଣ ତମର ହୋଇଚି ? ଚଞ୍ଚଳ କହ ।” ଏତିକି କହି ସୌମ୍ୟା ଲାଇଟଟାକୁ ଜାଳିଦେଲେ । ଦେଖିଲେ

ସମରେନ୍ଦ୍ରଙ୍କ ମୁଖମଣ୍ଡଳରେ ଉତ୍ତେଜନାର ରକ୍ତିମ ପ୍ରକାଶ; କିନ୍ତୁ ସେ ସ୍ତ୍ରୀଙ୍କ ପାଖରେ ବସି ମୁହଁ ଦେହରେ ହସ୍ତ ସଂଚାଳନ କରି କହିଲେ, କିଣ ନିଦ ଭାଙ୍ଗିଲା ନା ନାହିଁ । ଓ...ସପ୍ନର କ୍ରୀଡ଼ା ଭୂମିରେ କବିଙ୍କ ଗୋଟାଏ ଶିକାର ମିଳି ଯାଇଥିଲା ନା କିଣ ? ଖାଲି ତ ହସ...ମଣିଷ ପୁଣି ଇମିତ ହସିପାରେ ।

"ଏଁ, ମୁଁ ହସୁଥିଲି ।"

"କେବଳ ହସୁ ନ ଥିଲ, ପ୍ରେମିକ ପ୍ରଳାପ ବି ବକୁଥିଲ କେଉଁ କାବ୍ୟ ନାୟିକା ସାଥିରେ । ଆଚ୍ଛା ସେ ଭଦ୍ର ମହିଳାଟି ପୁଣି କିଏ ? ତା' ସହିତ ଏତେ ବନ୍ଧନ ପୁଣି କେବେଠୁ ? ତା'ପାଇଁ ଅଭିପ୍ରେତ ଆଲିଙ୍ଗନଟା ବୋଧହୁଏ ଭୁଲରେ ମୋ ଭାଗରେ ପଡ଼ିଗଲା ।"

ସମରେନ୍ଦ୍ର ସୌମ୍ୟାଙ୍କୁ କୋଳକୁ ଟାଣି ଆଣି ଗୋଲାପ ଗଣ୍ଡରେ ତୃଷାତୁର ଚୁମ୍ବନର ଏକ ଆଲେଖ୍ୟ ଟାଣି କହିଲେ—ସେ କାବ୍ୟ ନାୟିକାଟି ଏଇ ସଂଶୟିଣୀଙ୍କି ତା ସୌମ୍ୟା ।

"ଅଥଚ ଆଉ ଗୋଟାଏ ନାଁର ସମ୍ବୋଧନ ଶୁଣାଯାଉଥିଲା ।"

"ନା ସୌମ୍ୟା, ତମେ ଭୁଲ ବୁଝୁଛ । କଳ୍ପନା'ର ଗନ୍ତାଘରରେ ଗୁଡ଼ାଏ ସୁନ୍ଦର ନାଁ କବିମାନେ ସାଇତି ରଖିଥାନ୍ତି । ସେଇଗୁଡ଼ାକ ତାଙ୍କର ସମ୍ପତ୍ତି, ତାଙ୍କର ମଣି-ମାଣିକ୍ୟ । ସେଇଗୁଡ଼ାକୁ ନେଇ ସେମାନେ ତାଙ୍କର କାବ୍ୟ କବିତାର ବ୍ୟବସାୟ ଚଳାନ୍ତି । ଗୋଟିଏ ଗୋଟିଏ ନାଁ ଗୋଟିଏ ଗୋଟିଏ ଚରିତ୍ର । ଚରିତ୍ରର ଚିତ୍ରଶାଳାରେ ଏଇପରି ଅସରନ୍ତି ନାଁ ଲୁଚିକରିଥାଏ ।"

"ହଁ ମୁଁ ତ ମନାକରୁନି, ସେଥିରୁ କେତେକ ରାଜସିଂହାସନ ପାଇଲା-ବେଳେ ଆଉ କେତେକ ଦାରୁଣ ଯନ୍ତ୍ରଣାରେ ଛଟପଟ ହୁଅନ୍ତି । କିଏ ସର୍ବଭକ୍ଷୀ ତ ଆଉ କିଏ ସର୍ବହରା ହୋଇଥାଏ । କିଏ କଳାମସ୍ୱୀ ତ ଆଉ କିଏ କଳଙ୍କିନୀ, ନୁହେଁ ?" ହସି ହସି ପଚାରିଲେ ସୌମ୍ୟା ।

"ସେ ସୌମ୍ୟା ଏପରି ଏକ ସୃଷ୍ଟି, ଯେ କି ତାର ସ୍ରଷ୍ଟାଠାରୁ ଊର୍ଦ୍ଧ୍ୱରେ । ଦେଶକାଳପାତ୍ରର ପରିଧିକୁ ଅତିକ୍ରମ କରିଯାଇଥିବାର ଏକ ଚରିତ୍ର ।"

"ସେ ସୌଭାଗ୍ୟ ବୋଧହୁଏ ଏ ସୌମ୍ୟାର ନାହିଁ, ଯାହାହେଉ ତମେ ଏଥର ବିଶ୍ରାମ ନିଅ । ରାତି ବର୍ତ୍ତମାନ ତିନିଟା, ବହୁତ ସମୟ ବାକି ଅଛି, ହଁ ଉପରକୁ ମୁହଁ କରି ଶୁଅନି, ପୁଣି ସ୍ୱପ୍ନ ଦେଖିବ, କଡ଼ ଲେଉଟାଇ ଶୁଅ ।"

ସମରେନ୍ଦ୍ର କଡ଼ ଲେଉଟାଇ ଶୋଇଲେ । ଅନ୍ଧକାରର ସାନ୍ଦ୍ରତା ପାଇଁ ବାଲବ୍‌ଟାକୁ ଲିଭାଇଦେଲେ ସୌମ୍ୟ । ବାହାରେ ତୋଫା ଜହ୍ନ । ନିର୍ମଳ ଆକାଶରେ ପତଳା ମେଘ ଖଣ୍ଡର ସାମୟିକ ବିଖଣ୍ଡିତ ସମାବେଶ । ଚନ୍ଦ୍ରପୃଷ୍ଠରେ 'ସ୍ୱଚ୍ଛନୀର ଚମକ । ମେଘ ମେଖଳାରେ ଛାୟା ଓ କାୟାର ଲୁଚକାଳି ।"

କିଛି ସମୟ ପରେ···

ଏଥର ସୌମ୍ୟାର ପାଳି । ନୟନରେ ତାର ସ୍ୱପ୍ନର ଶିଙ୍ଗାର । ହସିଲ ସୌମ୍ୟା, ଖୁବ୍ ଉଚ୍ଛ୍ୱାସମୟ ସେ ହସ । ପଚାରିଲ, "ସତରେ କିବ ! ସେ ପୁଣି ନବାଗତାଟି କିଏ ?

"ସେ ?···ସେ ସ୍ୱପ୍ନର ଗୋଟିଏ ତାଜମହଲ । ମୁଁ ତାର ରୂପବର୍ଣ୍ଣନା କିପରି କରିବ କିଛି ବୁଝିପାରୁନି ସୌମ୍ୟା । କଳା ଆଉ କଳ୍ପନାର ଗୋଟାଏ ଅଦ୍ଭୁତ ରୂପରାଜ । ପୁଣି ବୁଝି ପାରୁନି, ତମ ଭିତରେ ତମେ କୁଅଡ଼େ ଆଖିପିଛୁଳାକେ ଉଭେଇଗଲ । ଗୋଟିଏ ଭିତରେ ଅନେକ ରୂପର ପଟୁଆର । ଗୋଟାଏ ମୁହୂର୍ତ୍ତରେ ଦେଖିଛି ସେ ନାରୀ, ପରମୁହୂର୍ତ୍ତରେ ସେ ପାଲଟିଛି କନ୍ୟା । ପୁଣି ଦେଖିଛି ସେ ଦେବୀ, ତାପରେ ଅଦେହ ଆତ୍ମାର ଏକ କାନ୍ତ୍ରିକମାକାର ଆଲେଖ୍ୟ । ଗୋଟାଏ ସମୟରେ ସେ ଏକ ଲାସ୍ୟମୟୀ ରସତରଙ୍ଗିଣୀ ପୁଣି ଅନ୍ୟ ରୂପରେ କାମନାର ଏକ ଅଗ୍ନେୟଗିରି । ଦେଖିଛି, ତାର ନନ୍ଦନର ଦ୍ରାଘିମା ଅନନ୍ତଚକ୍ରବାଳ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଅଧର ଉପକଣ୍ଠରେ ରସାଳ ଅଙ୍ଗୁରର ଏକ ଉଦ୍ୟାନ । କି ଆଶ୍ଚର୍ଯ୍ୟ ! କବରୀରେ ତ କାହିଁ କୃତ୍ରିମା ନଥିଲ । ଶରୀରକୁ ନିବିଡ଼ ଭାବରେ ନିରୀକ୍ଷଣ କଲି । ପ୍ରଥମେ ଦୃଷ୍ଟି ପଡ଼ିଲା ତାର ମୁଖମଣ୍ଡଳ ଉପରେ । ଆହୁର ଆଶ୍ଚର୍ଯ୍ୟ, ମୁଖଟିରେ ଗୋଲାକୃତ, ଅଣ୍ଡାକୃତ, ପୂର୍ଣ୍ଣଚନ୍ଦ୍ରାକୃତ କିମ୍ବା ଅର୍ଦ୍ଧବୃତ୍ତ ଓ ତ୍ରିକୋଣର ସମାବେଶ ନଥିଲା । ତା'ଥିଲ ଏକ ଆୟତ କ୍ଷେତ୍ର । ସେଥିରେ ଥିଲ ଅନେକଗୁଡ଼ିଏ ନୟନର ନୀଳ ଆକାଶ ସହିତ ପ୍ରତିଯୋଗିତା ।

ତାପରେ ଦୃଷ୍ଟି ପଡ଼ିଲ ବକ୍ଷୋଜ ଉପରେ । ତା'ତ ନଥିଲା—ଥିଲା ଇଟା ପଥର, ବାଲି, ଚୂନର ସ୍ତୂପୀକୃତ ବିନ୍ୟାସ । ଝୀନବସନ ଭେଦ କରି ନାଭିକେନ୍ଦ୍ରକୁ ନିରୀକ୍ଷଣ କଲି । ଗୋଟାଏ ଜଳାବର୍ତ୍ତର ସନ୍ଧାନ ମିଳିଲ । ବୁଝି ପାରିଲିନି ସେ ଜଳାବର୍ତ୍ତର ଆବଶ୍ୟକତା ସେଠାରେ କାହିଁକି । ଶିକ୍ଷା ଦୀକ୍ଷା, ଆଭିଜାତ୍ୟ ତଥା ସମାଜର ତର୍ଜ୍ଜନୀ ନିର୍ଦ୍ଦେଶକୁ ଉପେକ୍ଷାକରି ତୃଷାତୁର ଆଖି ଦୁଇଟାକୁ ଖୁବ୍ ଚଞ୍ଚଳତାର ସହିତ ଶିଥିଳ ନୀବିବନ୍ଧନର ନିଷିଦ୍ଧ ଅଞ୍ଚଳ ଉପରେ ବୁଲାଇ ଆଣିଲି ।

ଚେଷ୍ଟା କଲି ଅପରିଚିତାର ପରିଚୟ ଆବିଷ୍କାର କରିବା ପାଇଁ । ଆଶ୍ଚର୍ଯ୍ୟ କଥା, ଦେଖିଲି ନାରୀତ୍ୱ ନାହିଁ କି ପୁରୁଷତ୍ୱ ନାହିଁ । କେବଳ କ୍ଲୀବତ୍ୱର ଏକ କଳ୍ପ ପ୍ରାନ୍ତର ।

ଟିଗୋଡ଼ ଦୃଷ୍ଟିକୁ ନିରୀକ୍ଷଣ କଲି, ତା ବଦଳରେ ଦେଖିଲି ଗୁଡ଼ାଏ ଗମ୍ବୁଜ । ହାତ ଦଉଡ଼ି ନଥିଲା, ତେବେ ଖୋଲା ଝରକାର କବାଟ ଦୁଇଟା ହାତ ପରି ପ୍ରସାରୟମାନ ହେଲା । ଉଦ୍ଦାମ କୌତୁହଳ ଭିତରେ ସେଇ ଅଦ୍ଭୁତ ନାରୀ ମୂର୍ତ୍ତିକୁ ପର୍ଯ୍ୟବେକ୍ଷଣ କଲି । ଯାର ଶରୀରରେ ମସ୍ତକର କେଶରାଶି ଆଲୁଳାୟିତ । ଶୈବାଳର ସବୁଜିମା ଆଉ ଶରୀରର ଶୁଭ୍ରିମା ଭିତରେ କେଶଗୁଚ୍ଛ ନିଜର ମାୟା ବିସ୍ତାର କରିଛି । ହଠାତ୍ ମଣିଷର କଣ୍ଠସ୍ୱର ତାରି ଭିତରୁ ଶୁଣିବାକୁ ପାଇଲି । ଚେଷ୍ଟାକଲି ତାର ବିଶ୍ଳେଷଣ କରିବାପାଇଁ । ତା ଥିଲା ନିଷ୍ପୃହ ସେଇ କିମ୍ଭୂତ-କିମାକାର ନାରୀମୂର୍ତ୍ତିର ସଙ୍ଗୀତ । ଯେ ନାରୀଟି ପାଇଁ [illegible]ବଳ ନାରୀ ରୂପ-କଳ୍ପର ଏକ ଆଲେଖ୍ୟ । ନିରୀକ୍ଷଣ କଲି, ପର୍ଯ୍ୟବେକ୍ଷଣ କଲି, ତା ଶରୀର ଶଯ୍ୟାରେ ବହୁ ବର୍ଣ୍ଣାଢ୍ୟ ଦୃଶ୍ୟର ପରିବର୍ତ୍ତନଶୀଳତା ଆରମ୍ଭ ହୋଇଛି—ସତେଯେପରି ଗୋଟାଏ ଦୃଶ୍ୟପଟ । ଦର୍ଶକକୁ ଦୃଶ୍ୟସମ୍ଭାର ଅର୍ପଣ କରୁଛି ନୟନ ମନକୁ ଉଲ୍ଲସିତ କରିବାପାଇଁ । ହଠାତ୍ ଦେଖିଲି କେତେଟା କୃଷ୍ଣ କାୟାର ଗ୍ରୀଷ୍ମାମୂର୍ତ୍ତି ଆଗେଇଛନ୍ତି । ନିରୀକ୍ଷଣ କଲି, ସେଗୁଡ଼ିକ ବୋଧହୁଏ କୋଡ଼ି, ଶାବଳ, ଗଇନ୍ତି, କରତି, ଘନ, ଓଳମ ଓ ସବାର ବିଶିଷ୍ଟ ସମାବେଶ । ତୈଳାକ୍ତ ଜଳର ଅସରନ୍ତି ଦୃଶ୍ୟପଟ ପରି ସେଗୁଡ଼ିକ ସୃଷ୍ଟି ହୋଇ ପୁଣି କୁଆଡ଼େ ଲୀନ ହୋଇ ଯାଉଥିଲେ ।

ତା'ପରେ ଦେଖିଲି ସେ ନାରୀ ମୂର୍ତ୍ତି ଏକ ପ୍ରାସାଦମୟୀ । ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଗୋଟିଏ ଗୋଟିଏ କୋଠରୀ । ମୁଁ ଶକ୍ତି ସଂଚୟ କରି ତା ଭିତରେ ପ୍ରବେଶ କରିବାକୁ ଚେଷ୍ଟାକଲି । ଭୟ, କୌତୁହଳ ଓ ଆବେଗ ଭିତରେ ଗୋଟିଏ ପାଦ ଆଗକୁ ବଢ଼ାଇଲି । ପ୍ରଥମ କୋଠରୀ ମଧ୍ୟରେ ପ୍ରବେଶ କଲି । ସୂଚୀଭେଦ୍ୟ ଅନ୍ଧକାର । ତା' ଭିତରେ ଜଣେ ବପୁବନ୍ତ ବ୍ୟକ୍ତି ନିଜର ତେଜୋଦୀପ୍ତ ଶରୀରକୁ ଏକ ଦୁଗ୍ଧ ଫେନନିଭ ଶଯ୍ୟା ଉପରେ ବିସ୍ତାର କରି ନିଦ୍ରାମଗ୍ନ । ତାଙ୍କ ଚାରିପାଖରେ ଅସରନ୍ତି ଷୋଡ଼ଶୀ ମହାଆନନ୍ଦରେ ଘୂର୍ଣ୍ଣିଭୂତ ହୋଇ ରକ୍ତପାନ କରୁଛନ୍ତି । ସୁପ୍ତ ଶରୀରରେ ପ୍ରତିକ୍ରିୟା ପ୍ରକାଶ ପାଉନି । କିଏ ବି ଚଞ୍ଚଳତା ମଧ୍ୟରେ ପ୍ରତିବାଦ ନାହିଁ । ସାରା ଶରୀରରେ ଦଂଶନର ଦାଗ । ଭାବିଲି ଲୋକଟିକୁ କଣ କାଳନିଦ୍ରା ଗ୍ରାସକରିଛି । ତାଙ୍କୁ ଉଠାଇଦେବାକୁ ଖୁବ ଇଚ୍ଛା ହେଲା; କିନ୍ତୁ ସାହସ କରିପାରିଲିନି ।

ସୌମ୍ୟା ସମରେନ୍ଦ୍ରର ଶରୀରକୁ ନିବିଡ଼ ଭାବରେ ଆଲିଙ୍ଗନ କରି ଭୟ କମ୍ପିତ କଣ୍ଠରେ କହିଲା, "ନା · · ନା ମୋତେ ଭାରି ଭୟ ଲାଗୁଛି । ତମେ ମୋତେ ସେଇ ଅଶୁଭ ସ୍ୱପ୍ନର ସଙ୍କେତ ଆଉ ଦିଅନା · । ମୋ ପାଖରୁ ଲାଗିଆସ ନା···। ଦେଖିଲ ମୋ ଦେହ କିପରି ଥରୁଛି ।"

"ଏତେ ଶୀଘ୍ର ଡରିଲେ ଚଳିବ । ଡରିବା କଥାତ ମୁଁ କିଛି କହିନି, ସେଇ ନାରୀ ମୂର୍ତ୍ତିଟିର ବର୍ଣ୍ଣନା କରୁଥିଲି । ଶୁଣ, ସେ ତାର ନିଜର ରୂପ ପ୍ରକାଶ କରିଛି... ଶେଷରେ । ପୁଣି କିଛି ସମୟ ପରେ ଦେଖିଲି, ସେ ସବୁ ଅଦ୍ଭୁତ ଦୃଶ୍ୟ କୁଆଡ଼େ ମିଳାଇ ଯାଇଛି । ଚତୁର୍ଦ୍ଦିଗରେ ଦେଖିଯାଉଛି ଏକ କୁହେଳୀ ପର୍ଦ୍ଦା । ତା' ଭିତରୁ ବାହାରି ଆସିଲା ଏକ ଲାସ୍ୟମୟୀ ନାରୀମୂର୍ତ୍ତି ।

ମୁଁ ଆଶ୍ଚର୍ଯ୍ୟ ହେଲି । ତାର ଶରୀରରେ ଉନ୍ମାଦନାର ଶିହରଣ ଥିଲା । ପୂର୍ବରୁ ଯେଉଁ ସ୍ୱପ୍ନଗୁଡ଼ାକ ଦେଖିଥିଲି, ସେହି ସବୁ ଦୃଶ୍ୟର ସମବାୟରେ ତାର ଶାଢ଼ୀଟି ଚର୍ଚ୍ଚିତ ହୋଇଥିଲା । ସେ ଦୃଶ୍ୟ ମୋ ଭିତରେ ସୃଷ୍ଟି କରିଥିଲା କଣ୍ଟକବିଦ୍ଧ ଯନ୍ତ୍ରଣା; କିନ୍ତୁ ସେ ଦେଖାଯାଉଥିଲା କଣ୍ଟକ ବନର ରକ୍ତ ଗୋଲାପପରି ।

ମୁଁ ତାକୁ ପଚାରିଲି—

ତମେ ପୁଣି କିଏ ?

ସେ ଖାଲି ହସିଲେ ।

ମୁଁ ପୁଣି କହିଲି—

"କିଛି କହିବନି ?"

ମୁଣ୍ଡ ହଲାଇ ଅଧରରେ ମମତାର ମେଖଳା କାଟି ପୁଣି ହସିଲା । ମୁଁ ଏଥର ସାହସର ସହିତ କହିଲି, "ଓ, ତମେ ତା ହେଲେ ମୌନାବତୀ ।

"ନାଁ ଟା ଟିକିଏ କହନା ।"

ଏଥର ସେ ହସି ହସି ଉତ୍ତରଦେଲା—

"ନାଁଟା ଜାଣିବାର ବିଶେଷ କିଛି ଆବଶ୍ୟକତା ଅଛି, ନଜାଣିଲେ ବି ଚଳିବ ।"

ମୁଁ ଟିକିଏ ଆତ୍ମୀୟତାର ଅଭିନୟ କରି କହିଲି—

"କବି କେବଳ ଆବଶ୍ୟକତାର ଅଙ୍କ କଷେନି ।"

"ଆଉ ଅନାବଶ୍ୟକ ଆତ୍ମୀୟତାର ଆଲବମ୍ ତିଆରି କରନ୍ତି ବୋଧହୁଏ ।"

"ନିଶ୍ଚୟ, ସେଇଟା ବି ସେମାନଙ୍କ ବ୍ୟବସାୟର ଗୋଟାଏ ପୃଷ୍ଠି। କୁହନା ଏଥର, ନାଁଟା କହିବାରେ ଏତେ ଦ୍ୱିଧା କାହିଁକି ?"

"ଆପତ୍ତି ଥିଲା, ଆପଣଙ୍କ ଭାଷାରେ କେବଳ ଏକ ମୌନାବତୀ ମହିଳା ବୋଲି।"

"ବାଃ...ବାଃ...ବାଃ...ଚମତ୍କାର କମ୍ପୋଜିସନ୍। ଆଉ ତେବେ ଅପରାଜିତା କାହିଁକି ? ମୌନାବତୀ ତ ବେଶ୍ ଭାଷାମୟୀ ହୋଇ ଉଠିଲେଣି। ନାଁଟା ଏଥର କୁହନା।"

ନାଁ ଟା ସିଧା ଶୁଣି ଦିବାରେ ଆନନ୍ଦ ନ ଥାଏ। ତାକୁ ଆବିଷ୍କାର କରିବାକୁ ପଡ଼ିବ। ତେବେ ମୋ ନାଁର ନିକଟବର୍ତ୍ତୀ ଗୋଟାଏ ନାଁ କହିପାରେ ଯାହାଙ୍କ ଆପଣଙ୍କୁ ସାହାଯ୍ୟ କରିବ। ମୁଁ ଦେଖୁଛି ଆପଣଙ୍କର "ମଧୁମନ୍ଦିର"। ଆପଣ ମୋତେ ଅନ୍ତରଭରା ନିମନ୍ତ୍ରଣ କରିଥିଲେ। ସେ ନିମନ୍ତ୍ରଣ ରକ୍ଷାକରି ମୁଁ ଆସିଛି।

"ତେବେ ମୋର ମନେହୁଏନା, କୌଣସି ପ୍ରାସାଦବାସିନୀ ରାଜଦୁଲାଲୀକୁ ମୋର ଏଇ ସ୍ୱର୍ଣ୍ଣପୁରୀକୁ ନିମନ୍ତ୍ରଣ କରିପାରି।"

"ତେବେ ପ୍ରାସାଦନୀ ରୂପରେ ଆପଣ ନିମନ୍ତ୍ରଣ ଜଣାଇଥିଲେ କିନ୍ତୁ ପ୍ରାସାଦବାସିନୀ ରୂପରେ ଆପଣଙ୍କ ପାଖରେ ପହଞ୍ଚିଛି। ତୁମେ ଯେଉଁ ପ୍ରଶ୍ନଟିର ସମୁଚିତ ଉତ୍ତର ପାଇଁ ଏତେ ବ୍ୟଗ୍ର ଏତେ ଉଦ୍‌ବଗ୍ନ ମୁଁ ସେଇ ପ୍ରଶ୍ନଟିର ନିଜେ ହିଁ ଗୋଟିଏ ସନ୍ତୋଷଜନକ ଉତ୍ତର। ମୋତେ ତ ନିମନ୍ତ୍ରଣ କରିଛ, ଏଥର ନିର୍ମାଣ କର। ମୋଠାରେ ନିମଗ୍ନ ହୁଅ, ମୋ ଭିତରେ ନିମଜ୍ଜିତ ହୁଅ, ମୁଁ ତୁମର ସନ୍ଦିଗ୍ଧ ପ୍ରାଣକୁ ସମୃଦ୍ଧ କରିଦେବି। ତେବେ ଗୋଟାଏ ସର୍ତ୍ତରେ।

ମୁଁ ପ୍ରତ୍ୟେକ ସର୍ତ୍ତ ପୂରଣ କରିବାକୁ ପ୍ରସ୍ତୁତ। ଶୁଣେ ସେ ସର୍ତ୍ତଟା କ'ଣ।"

"ବିନିମୟରେ ମୁଁ ଚାହେଁ, ଆପଣଙ୍କର ସମସ୍ତ ଶକ୍ତି, ସମସ୍ତ ଅର୍ଥ, ସମସ୍ତ ସମୟ ଆଉ ସମସ୍ତ ସୁଯୋଗ। ଦେଇ ପାରିବେ ?"

ମୁଁ ହଠାତ୍ ହଁ କରି ପାରିଲିନି ସୌମ୍ୟା। ମୋତେ ଏକ ନୂଆ ପ୍ରଶ୍ନପରି ମନେହେଲା। ମୁଁ ଖାଲି ତା ମୁହଁକୁ ଚାହିଁ ରହିଲି। ସେ ପୁଣି କହିଲା—

"ସମ୍ମତହେଲେ 'ଆପଣ' ଶବ୍ଦ ଦୁର୍ବଳହୋଇ 'ତୁମେ' ଶବ୍ଦ ଆତ୍ମୀୟ ହୋଇଯିବ। ତୁମେ ପ୍ରଶ୍ନ କରିଥିଲନା କାହାକୁ ନିଜର କରିନେଲେ ଅନ୍ୟ ସମସ୍ତେ ପର ହୋଇଯାଆନ୍ତି ?"

"ହଁ !"

"କ୍ରୋଧ ! କ୍ରୋଧ··· !! କ୍ରୋଧକୁ ମଣିଷ ଆପଣାର କରିନେଲେ ଆଉ ସମସ୍ତେ ପର ହୋଇଯାଆନ୍ତି ।"

"ଅବଶ୍ୟ ଏହା ଏକ ନିଚ୍ଛକ ସତ୍ୟ, କିନ୍ତୁ ତୁମେ ଯଦି ମୋର ଶକ୍ତି, ସାମର୍ଥ୍ୟ, ଅର୍ଥ, ସମୟ ଓ ସୁଯୋଗକୁ ଅପହରଣ କରି କ୍ରୋଧକୁ ପରିହାର କରିବାକୁ ଉପଦେଶ ଦିଅ, ତେବେ ମୁଁ ବୁଝିପାରୁନି କ୍ରୋଧଠାରୁ ତୁମେ କେଉଁ ଗୁଣରେ କମ୍ । ତମକୁ ଆପଣାର କରିବାରେ ତ କମ୍ ଯାତନା ନାହିଁ ।"

ସେ ହସିହସି କହିଲା, "ପ୍ରତ୍ୟେକ ମଣିଷ ତାର ଆଶ୍ରୟ ପାଇଁ ମନ୍ଦିରଟିଏ ନିର୍ମାଣ କରେ । ନିର୍ମାଣର ଅଧିକାର ଓ ସୁଯୋଗ ଏଇଥିରୁ ପାଏ; ସମ୍ମାନର ଅଧିକାରୀ ହୁଏ । ନିର୍ମାଣ ତ ସହଜରେ ହୁଏନା । ବିଶ୍ୱସ୍ରଷ୍ଟା ଏ ସୃଷ୍ଟିକୁ ସର୍ଜନା କରିବାପାଇଁ କେତେ ସାଧନା କରିଛନ୍ତି । କେତେ ଅସରନ୍ତି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । ସମୟ, ସୁଯୋଗ, କରୁଣା, ଶକ୍ତି ଓ ସାମର୍ଥ୍ୟର ସମନ୍ୱୟରେ ତାଙ୍କର ଏଇ ମହାନ୍ ସୃଷ୍ଟି । ସ୍ରଷ୍ଟା ସର୍ବଦା କ୍ଷମାଶୀଳ, ସ୍ନେହଶୀଳ । ସର୍ଜନାହିଁ ସ୍ନେହର ପରିପ୍ରକାଶ ! କ୍ରୋଧକୁ ମଣିଷ ପରିହାର କରିବାପାଇଁ ସ୍ନେହ ପ୍ରବଣତାହିଁ ଏକମାତ୍ର ମହୌଷଧି । ସର୍ଜନା ପାଇଁ ମଣିଷକୁ ଯାହା ତ୍ୟାଗ କରିବାକୁ ପଡ଼ିଥାଏ, ତାହା ବହୁଗୁଣିତ ହୋଇ ପୁଣି ଫେରିଆସେ । କ୍ରୋଧପାଇଁ ଯେଉଁମାନେ ପରିତ୍ୟକ୍ତ ହୁଅନ୍ତି, ସେମାନେ ଫେରନ୍ତିନାହିଁ, ଫେରିଲେ ବି ସଂଶୟାକ୍ରାନ୍ତ ହୋଇ ଫେରନ୍ତି, ଯାହାକି ନିଭୃତରେ ଖୁବ୍ ଯନ୍ତ୍ରଣା ଦିଏ ।"

ତା'ହେଲେ ତୁମେ ମୋର କଳ୍ପିତ ବାସନାର ଏକ ସ୍ୱପ୍ନିଳ ରୂପ । ମୋର 'ମଧୁ ମନ୍ଦିରର' ମଧୁର ମନ୍ଦାକିନୀ । ସେ ହସିଲା, ମେଘମୁକ୍ତ ଆକାଶର ପୂର୍ଣ୍ଣିମା ଚନ୍ଦ୍ରପରି ହସିଲା । କିଛି ସମୟ ପରେ ଦେଖିଲି ତା ହସ ଭିତରେ ଗୋଟାଏ ଘନକୁହୁଡ଼ି ସୃଷ୍ଟି ହୋଇଛି । ତା'ରି ଭିତରେ ନାରୀ ମୂର୍ତ୍ତିଟି କୁଆଡ଼େ ଲୀନ ହୋଇଯାଇଛି । ତା'ର ଚନ୍ଦ ସମ୍ଭାର ଶାଢ଼ୀଟି ଶରୀର ଶଯ୍ୟାରୁ ଖସି ଆସି ପୃଥିବୀ ଉପରେ ବିଛେଇ ହୋଇପଡ଼ିଛି ।

ସୌମ୍ୟା ହସି ହସି କହିଲେ, "ଚମତ୍କାର ଏ ସ୍ୱପ୍ନ, କେବଳ ସ୍ୱପ୍ନଦର୍ଶୀ କବିଙ୍କ ବ୍ୟତୀତ କାହାଠାରେ ଏହା ସମ୍ଭବ ନୁହେଁ ।"

"କେବଳ ସେତିକି ନୁହେଁ ସୌମ୍ୟା, ତା'ପରର ଘଟଣା ଶୁଣିଲେ ତୁମେ ସତରେ ବିସ୍ମିତା ହେବ ।"

"ତା'ପରେ କଣ ହେଲା ?"

ଦେଖିଲି ବଧ୍ୟାଳୟର ଗୃହ ଭେଦକରି ଅନ୍ତ୍ରେ ଅନ୍ତ୍ରେ ଉପରକୁ ଉଠିଛି ଗୋଟିଏ ପୁଣ୍ଡିତ ପ୍ରସାଦ । ତା' ଭିତରେ ପୂର୍ବାପର ପୁରୀ ଅନେକଗୁଡ଼ିଏ କୋଠରୀ । ପ୍ରତ୍ୟେକ କୋଠରୀରେ ଦେଖିଲି ଗୋଟଏ ଗୋଟିଏ ସମାଧି ମନ୍ଦିର । ମୋର କୌତୂହଳତା ଅତି ମାତ୍ରାରେ ବଢ଼ିଗଲା । ଉତ୍ସୁକତା ବହୁ ଗୁଣିତ ହେଲା । ତନ୍ନ ତନ୍ନ କରି ପର୍ଯ୍ୟବେକ୍ଷଣ କଲି । ଏସବୁ ସମାଧି ମନ୍ଦିର କାହାର ! ଏଇ ରମ୍ୟ ପ୍ରାସାଦ ମଧ୍ୟରେ ଏକାଧାରରେ ଏତେ ସମାଧି ମନ୍ଦିର ! ଦେଖିଲି ସମାଧିସ୍ଥର ନାମୋକୀର୍ତ୍ତି ହୋଇଛି କେତୋଟି ସ୍ପଷ୍ଟ ଆଉ କେତେଟି ଅସ୍ପଷ୍ଟ । ଆଉ କାହାର କିଛି ବର୍ଣ୍ଣ ବି ଲିଭିଯାଇଛି ।

ଆଖିର ସମସ୍ତ ଶକ୍ତି ପୁଞ୍ଜୀଭୂତ କରି ପଢ଼ିଲି ।

ଗୋଟିଏ ସମାଧି ମନ୍ଦିର ଗାତରେ ଲେଖାଅଛି "ସୋଽହଂ" ।

ଦ୍ୱିତୀୟଟିରେ ମଧ୍ୟ ବର୍ଣ୍ଣଟି ଲୋପ ପାଇଛି, "ଅ—କାର ।"

ଶୂନ୍ୟ ସ୍ଥାନ ପୂରଣକରେ ଜୀବନ ବିଦ୍ୟାଳୟର ଜଣେ ଅନୁଗତ ଛାତ୍ର ହିସାବରେ । "ହଂ" ଯୋଡ଼ି ତାକୁ ପଢ଼ିଲି "ଅହଂକାର" । ଆଉ ଗୋଟିଏ ସମାଧି ମନ୍ଦିର ଉପରେ ଅସ୍ପଷ୍ଟ ଅକ୍ଷରରେ ଲେଖାଅଛି "ଅସହିଷ୍ଣୁତା" । ଆଉ ଗୋଟିଏ କୋଠରୀକୁ ଯାଇ ଦେଖିଲି, ଜଣେ ଶୀର୍ଣ୍ଣକାୟ ବ୍ୟକ୍ତି ଧ୍ୟାନମଗ୍ନ ଭାବରେ ବସିଛି । ସେ ଅତ୍ୟନ୍ତ ମୌନ ଅଥଚ ମୁଖମଣ୍ଡଳରେ ପ୍ରଶାନ୍ତିର ଚିହ୍ନ । ନୟନ ଦୁଇଟି କୋଟରଗତ ହେଲେ ବି ପ୍ରଦୀପ୍ତ ହୀରକଖଣ୍ଡ ପରି ଜଳୁଛି । କେଶହୀନ ମସ୍ତକରେ କୃଷ୍ଣ କେଶର କୋମଳତା ନ ଥିଲେ ବି ପାଣ୍ଡୁରିମା ମଧ୍ୟରେ କୃତ୍ତିମାର ପ୍ରାଣସତ୍ତା କିଛି ପରିମାଣରେ ଅଛି । ଲୋକଟିକୁ ନିରୀକ୍ଷଣ କଲି, ଦେଖିଲି ସେ ସେଇ ବଧ୍ୟବନ୍ଦୀ ରକ୍ତାଳବ୍ୟକ୍ତି ଯାହାକୁ ମୁଁ ପ୍ରଥମ ସ୍ୱପ୍ନରେ ଗୋଟିଏ କୋଠରୀ ଶଯ୍ୟାରେ ଜ୍ୱରଗ୍ରୋକ ଗହ୍ୱରରେ ଦେଖିବାକୁ ପାଇଥିଲି । ସେତେବେଳେ ସେ ସ୍ଥୂଳ ଉଦର ନଥିଲା । ଜ୍ୱରପୋକ କିଣ ଏତେ ରକ୍ତ ଶୋଷିନେଲେ । ପଞ୍ଜରା ହାଡ଼ ଗଣି ହୋଇ ଯାଉଛି । ନିବିଡ଼ ମାଂସପେଶୀର ରକ୍ତବନ୍ଧନ କି'ଣ ଏତେ ଶୀଘ୍ର ଶିଥିଳ ହୋଇଗଲା ।

ବିଭିନ୍ନ ଉପାୟରେ ନିଜର ଉପସ୍ଥିତି ଘୋଷଣାକଲି ।

ଟିକିଏ ବି ପ୍ରତିକ୍ରିୟା ନାହିଁ । କଣ୍ଠ ଖୋଲି କହିଲି—

"କ୍ଷମାଦେବେ, ମୁଁ ଆପଣଙ୍କ ଡିଷ୍ଟର୍ବ କରୁଛି ।"

ଉତ୍ତର ନାହିଁ ।

ଦେଖିଲି ତା ସାମନାରେ ମନ୍ଦପର୍ଦ୍ଦା ଖାଲି ପଡ଼ିଛି । ଲକ୍ଷ୍ୟକଲି, ତା ଶରୀରରୁ ଏକ ତରଳସ୍ରୋତ ନିର୍ଗତ ହେଉଛି । ପରୀକ୍ଷା କଲି, ପାଣି ନୁହେଁ,

ସ୍ୱେଦଧାର ନୁହେଁ, ନୟନର ଲୋତକ ନୁହେଁ, ଧମନୀର ରକ୍ତଧାର ନୁହେଁ, ଅଥଚ ସେଇ ବର୍ଣ୍ଣହୀନ ସ୍ରୋତରେ ରକ୍ତର ଗନ୍ଧଥିଲା । ବୋଧହୁଏ ରକ୍ତ ପାଣି ଫାଟିଯାଇଛି ନା କ'ଣ ।

ଶରୀରକୁ ଲକ୍ଷ୍ୟକଲି ।

ବର୍ଷ, ମାସ, ଦିନର ପାଦଚିହ୍ନ ମୋର ଶରୀରରେ ଅଙ୍କିତହୋଇ ରହିଛି । ମସ୍ତକରେ କେଶାଗ୍ରର ନାହିଁ; କିନ୍ତୁ ତପୋମଗ୍ନ ତାପସ ପରି ସେ ବସିଛି । ମୁଁ ତାକୁ ଆଉ ଅଧିକ ବ୍ୟସ୍ତ କରିବାକୁ ଚାହିଁଲିନି । କହିଲି, "ନମସ୍କାର, ଆସୁଚି ।"

ହଠାତ୍ ଘର ସାରା କୁହେଳିକାଚ୍ଛନ୍ନ ହୋଇଗଲା ।

ସେଇ ରମ୍ୟ ପ୍ରାସାଦଟି କୁଆଡେ ଉଭେଇଗଲା । ମନ୍ଦିରଟି କୁଆଡେ଼ ଅନ୍ତର୍ଦ୍ଧାନ ହୋଇଗଲା । ସୂର୍ଯ୍ୟ କିରଣରେ ସକାଳର କୁହୁଡ଼ି ଅପସରି ଗଲାପରି କିଛି ସମୟ ପରେ ସେଇ କୁହେଳିକା କୁଆଡେ଼ ଉଭେଇଗଲା । ଦେଖିଲି, ସମ୍ମୁଖରେ ସ୍ତୂପୀକୃତ ଇଟା, ବାଲି, ପଥର, ଚୂନ, ସେଇ ହାତୁଡ଼ି, ଛେଣି, ଓଲମ, କରଣି ।

ରାତିପାହି ଅନେକ ବେଳ ହୋଇଗଲାଣି । ସୂର୍ଯ୍ୟଙ୍କର ନାଲି କିରଣର ଲୋହିତ ନଦୀ ଚାରିଆଡ଼େ ବନ୍ୟା ତୋଳିଲାଣି । ଚଟ୍‌କରି ନିଦ ଭାଙ୍ଗିଗଲା ସୌମ୍ୟାର । ସେଇ ଶ୍ରେଷ୍ଠୀ କୁଆଟା ରଡ଼ିଖେଇ ବସେଇ ଦେଲାନି, ତାକୁ ଉଠାଇବା-ପାଏ କଣ୍ଠ । ସମରେନ୍ଦ୍ର ଆଖି ମଳି ମଳି ଉଠିପଡ଼ିଲେ । ଆଃ ··କେଡେ଼ ସୁନ୍ଦର ସ୍ୱପ୍ନଟା ଭାଙ୍ଗିଗଲା । ବଦମାସ୍ କୁଆଟା ଟିକିଏ ବି ଶୁଆଇ ଦେଉନି । ଏଇ ଗୁଣ୍ଡପାଣିଆ ଗୋଟାଏ ଗୋଡ଼ କିଏ ଭାଙ୍ଗି ଦେଇଛି । ଆଉ ଗୋଡ଼ଟାକୁ ବି ଆଜି କିଏ ଭାଙ୍ଗିଦେବ ।"

କୁଆଟା କ'ଣ ବୁଝିଲା କେଜାଣି, ଫୁର୍‌କରି ଗଛଡ଼ାଳକୁ ଉଡ଼ିଗଲା ।

❑❑❑

"ଅଜ୍ଞା ନମସ୍କାର ।"

ପଛକୁ ଚାହିଁଲେ ସମରେନ୍ଦ୍ର । ନୟନରେ ଅନୁସନ୍ଧାନର ଉତ୍ସୁକତା ଶୁଣି ହାତ ଟେକିଲେ ।

"ନମସ୍କାର, କଣବାବୁ ! ମୋ ପାଖରେ କିଛି କାମ ଥିଲା ?"

"ଦେଖିଲି ପଡ଼ିଆ ଭିତରେ ବାବୁ କିଏ କ'ଣ କଣ୍ଟାବୁଦା ଓପାଡ଼ି ପକାଉଛନ୍ତି, ସେଥିପାଇଁ ସନ୍ଦେହ ହେଲା । ଆପଣମାନେ କାମ କରିବେ, ଆମେ ଚାହିଁଥିବୁ । ସେଥିପାଇଁ ଟିକିଏ ବୁଲିଆସିଲି । ଏ ଜାଗାଖଣ୍ଡିକି କିଣିଲେ ନା କଣ ?"

"ହଁ କିଣିଲି, ସରକାରଙ୍କଠାରୁ - ଲୋକଙ୍କଠୁ ନୁହେଁ ।"

ସରକାର କଣ ଜାଗା ବିକୁଛନ୍ତି ?"

"ହଁ, ଲିଜ୍‌ରେ ।"

"ଲିଜରେ କଣ ସେ ? ଯିଏ ତ ପଇସା ଦେବ ସେ ଜାଗା ପାଇବ ।"

ମାନେ ଜାଗା ଅଳ୍ପ, ଗ୍ରାହକ ବେଶି । ତା'ପରେ ପଇସାବାଲା ଯିଏ କେବଳ କିଣା ବିକାରେ ଆଗୁଆ । ଲିଜ୍‌ରେ ଗରିବ ଲୋକର ବି ଭାଗ୍ୟରେ ଥିଲେ ଜାଗା ଉଠିବ । ଗଣତନ୍ତ୍ର ଦେଶ ତ, ସମାନ ଅଧିକାର ଏ ଜାଗା ଉପରେ ରହିବନି କାହିଁକି ?"

"ତା' ହେଲେ ଆପଣ ନିଶ୍ଚୟ ଭାଗ୍ୟବାନ । ରାଜଧାନୀର ରାଜରାସ୍ତା ନିକଟରେ ଜାଗାଟିଏ ପାଇଲେ । ଗୋ, ଭୂମି, କନ୍ୟା ଭାଗ୍ୟରେ ଥିଲେ ମିଳେ ।"

"ମିଳିଛି ତ... ସେ ଦୃଷ୍ଟିରୁ ମୁଁ ନିଶ୍ଚୟ ଭାଗ୍ୟବାନ । ତେବେ ଏହାକୁ କାମରେ ଲଗାଇ ପାରୁଛି କି ନାହିଁ ସେଇ କଥାଟା ବାକି ରହିଲା ଦେଖିବାକୁ ।"

"ବୁଝିଲେ ଆଜ୍ଞା, ଯେଉଁ କାମର ଆରମ୍ଭଟା ଶୁଭ, ତାର ସବୁ କାମଟା ଶୁଭରେ ହୋଇଯାଏ । ଆପଣ ତ ଶିକ୍ଷିତ ଲୋକ, ମୁଁ ମୂର୍ଖ ମିସ୍ତ୍ରୀଟାଏ । ଅଉ ଅଧିକ କଣ କହିବି । ଘରଟାର ଭବିଷ୍ୟତ ଜାଗାଟା ମିଳିବା ଦିନରୁ ଠିକ୍ ହୋଇଯାଇଛି ।"

"ତା' ହେଲେ ତମେ କ'ଣ ଜଣେ ମିସ୍ତ୍ରୀ ?"

"ହଁ ଆଜ୍ଞା !"

"ଆଚ୍ଛା କି କାମ ସବୁ କର ?"

"ଏଇ ପଥର କାମ, ଇଟା କାମ, ଛାତ କାମ, ଧୁଳେଇ, ରଙ୍ଗ କାମ, କାଠ କାମ, ଯେତେବେଳେ ଯାହା ମିଳିଲା । ମାଲିକ ଯିମିତି କହିବେ, ଯୋଉ ଡିଜାଇନ୍‌ର କହିବେ, ଯୋଉ ସଜିରେ କହିବେ, ମୁଁ ସବୁଥିରେ ରାଜି । ମାଲିକର ଖୁସିଟା ଆମର ଆଶୀର୍ବାଦ । କାମଟା ମୋତେ ଦେଇ ଥରେ ଦେଖନ୍ତୁନା, ମନ ନ ପାଇଲେ ପରେ ପଛରେ ଛଡ଼ାଇଦେବେ ।"

"ସେ ତ ପର କଥା, ଯୋଗାଡ଼ କରି କାମଟି ଉଠାଇଲା ବେଳକୁ କାଠିକର ପାଠ ।"

"ଯେ ଘର କରେ ତାକୁ, କେତେଗୁଡ଼ାଏ ଶବ୍ଦ ଭୁଲିଯିବାକୁ ହୁଏ । ତା ଭିତରେ ଏଇ "ପର କଥା" ଟା ମନକୁ ନ ଆଣିବା ଭଲ । ସବୁ ପର କଥା ବର୍ତ୍ତମାନରୁ ବିଚାରକଲେ ଠିକ୍ ଭାବରେ କରାଯାଇ ପାରିବ । ପର ପର ବୋଲି କହି ଗଲେ, ତାହା ପର ହୋଇଯିବ, ଆପଣ କେବେହେଲେ ନିଜର କରି ପାରିବେନି ।"

"କଥା ଆଚ୍ଛା କଥା କହୁଚ, ଯୋଗାଡ଼ ନକରି ଲକ୍ଷେ ଟଙ୍କାର କାମଟାକୁ ମନଇଚ୍ଛା' କରାଯାଇ ପାରିବ ।"

"ଯୋଗାଡ଼ ! ଯୋଗାଡ଼ ମାନେ ଆପଣ କଣ କହୁଛନ୍ତି ? ଟଙ୍କା ତ ! ଟଙ୍କା ଏକା ଥରକେ ଯୋଗାଡ଼ ହୋଇପାରିବନି କି କାମ ବି ହୋଇପାରିବନି । ମନେରଖନ୍ତୁ, ଘର କରିବା ଲୋକ ଟଙ୍କା ଯୋଗାଡ଼କୁ ଅପେକ୍ଷା କରେନି । ସୁବିଧା, ସୁଯୋଗ ଓ ସମୟକୁ ସେ ପୂଜି କରି କାମ ଆରମ୍ଭକରେ, ତା'ପରେ ଟଙ୍କା ଆପେ ଆପେ ତା ପିଛା ଧରେ । ଟଙ୍କା ଟଙ୍କା କଣ ହେଉଛନ୍ତି, ମନ ଅଛି ତ

କାମ କରିବାକୁ ? ଥରେନ୍ତ କରନ୍ତୁ, ଦେଖିବେ ଟଙ୍କା ଆସିବ ନା ନାହିଁ । ମନଠୁ ଏ ଫସାଦରେ ଆଉ କେହି ବଡ଼ ନୁହେଁ । ସେଇଥିରେ ଭାଗବତକାର କହିଛନ୍ତି—

"ଏ ମନ ଭାବୁଥାଇ ଯାହା ;
କାଲେ ପ୍ରାପତ ହୁଏ ତାହା ।"

"ଆଚ୍ଛା ତମ ନାଁ କଣ ବାବୁ ?"

"ମୋ ନା ସତ୍ୟ ସୁନ୍ଦର ଆଜ୍ଞା ! ଏ ଚଗଲା କୁଲି ଆଉ ରେଜାଗୁଡ଼ାକ ମୋ ନାଁରୁ ତନିଟା ଅକ୍ଷର ଏକାଠି ଯୋଡ଼ି ମୋତେ 'ସସୁର' ବୋଲି ଡାକନ୍ତି । ଆଜ୍ଞା ଲାଜ ମାଡ଼ୁଚି କହିବାକୁ, କମ୍ପାନୀଟାରେ 'ସସୁର ମିସ୍ତ୍ରୀ' କହିଦେଲେ ସମସ୍ତେ ଜାଣନ୍ତି । ହେଲେ ମୋର ଆଜ୍ଞା କଟକର ହୋଇ ପୁଣି ଝିଅ କେହି ନାହାନ୍ତି ।"

"ବାବୁମାନେ କଣ ବୋଲି ଡାକନ୍ତି ?"

"ଓଡ଼ିଆ ମାଲିକମାନେ କଏ ଡାକନ୍ତି ସତ୍ୟ, କଏ ସୁନ୍ଦର, କଏ ସୁନ୍ଦ... କିନ୍ତୁ ପଞ୍ଜାବି ଡାକନ୍ତି ସୁନ୍ଦର୍, ସତେୟା, ବଙ୍ଗାଳୀ ବାବୁମାନେ ଡାକନ୍ତି ସତନ୍ ଏମିତି ଡାକନ୍ତି ଆଉ । ହେଲେ ସସୁର ନାଁଟା ମୋ କାନରେ ସବୁବେଳେ ପଡ଼େ ।"

"ଚମତ୍କାର ନାଁଟାଏ ପାଇଛ । ତମ ନାଁରୁ ଜଣା ପଡ଼ୁଛି ତମେ ନିଶ୍ଚୟ ଜଣେ ଭଲ ମିସ୍ତ୍ରୀ ହୋଇଥିବ ।"

"ସତରେ ଆଜ୍ଞା, ମୋ ନାଁଟା ମୋର ଗର୍ବ । ହାତରେ କରଣୀ ଅଛି, ମିଛ କହୁନି ଆଜ୍ଞା, ମୋ ନାଁ ପଞ୍ଚ କାନ୍ତ ହୋଇଚି । ନାଁ ମୋତେ ଆଶା ଓ ବିଶ୍ୱାସ ଦେଇଚି । ମନରେ ବଳ ଦେଇଚି । ଯିଏ କହିବ, "ସତ୍ୟସୁନ୍ଦର ତମେ ଏଇଆ କଲ ।" ମୋ ମନ ଦୁଃଖରେ ଭାଙ୍ଗିପଡ଼େ । ସତ୍ୟସୁନ୍ଦର ଯାହା କିଛି କରି ପାରେନା । ଯୋଉ ବାବୁମାନେ ମୋତେ ସତ୍ୟସୁନ୍ଦର ବୋଲି ଡାକିଦିଅନ୍ତି, ମୋ ଛାତିଟା କୁଣ୍ଢେମୋଟ ହୋଇଯାଏ, ମୋ ପାଟିରୁ ସାର୍ ଶବ୍ଦଟା ଆପେ ଆପେ ଲହରେଇ ହୋଇ ବାହାରି ଆସେ ।"

"ଆଚ୍ଛା... ନାଁଟାର ଏତେ କରାମତି । ଆଉ କ'ଣ କାମଧାମ କରୁଚ ?"

ସତ୍ୟସୁନ୍ଦର ହସି ହସି କହିଲେ, "ମୋର ବହୁତ ପ୍ରକାରର ଧନ୍ଦା ଅଛି, ଘାସକଟାଠାରୁ ଘୋଡ଼ାଚଢ଼ା ଯାଏ । ଦରକାର ହେଲେ କୁଲି କାମଠାରୁ

ଆରମ୍ଭ କରି ସେଟିଦ୍ୱାର ପର୍ଯ୍ୟନ୍ତ ସବୁ କାମ କରିଥାଏ । ଗୋଟାଏ କାମରେ ତ ପେଟ ପୁରେନି, ତେଣୁ କରି ଏକାବେଳେ ଦୁଇ ଘରଟା କାମ ଧରିଥାଏ । ବର୍ଷତମାମ କାମ ପଡ଼ିଆ ପଡ଼େନି ।

"ଚଳାଅ କିମିତି, ଜଗନ୍ନାଥଙ୍କ ଚରିତ୍ରକଥା ବାଣିଜପଣ କରନ୍ତି ତ !

"ନାହିଁ ଆଜ୍ଞା, ମାଲିକର ଖୁସି ଆଉ ସନ୍ତୋଷ ମୋର ପୁଞ୍ଜି । ମୁଁ ପୁଣି ଧୋକାଦେବି । ମୋର ଘର ପାଞ୍ଚଟା ଷ୍ଟାଫ୍ ଅଛନ୍ତି । ସେମାନେ ସେ ସବୁ କରନ୍ତି । ମୁଁ ତାଙ୍କ କାମ ସୁପରଭାଇଜ୍ କରେ । ସେମାନେ ମୋର ପରମାନେଣ୍ଟ ଷ୍ଟାଫ୍ । କାମ ବିଲକୁଲ ଚୋଖା, ଗଲତର ପ୍ରଶ୍ନ ନାହିଁ । ମୁଁ ତ ମାଇକେଲ ଖଣ୍ଡିକ ଧରି ପୃଥିବୀ ପରିକ୍ରମା କରୁଥାଏ, ଠକାଠକର ପ୍ରଶ୍ନ ନାହିଁ ଆଜ୍ଞା ! ମାଲିକଙ୍କୁ କିଛି କହିବାକୁ ବା କିଛି ବୁଝିବାକୁ ପଡ଼େନି । ମାଟି ଖୋଳାଠୁ ଆରମ୍ଭ କରି ଘର ଫିନିସିଙ୍ଗ୍ ପର୍ଯ୍ୟନ୍ତ ସବୁ ପ୍ରକାରର ଲୋକ ରଖିଛି । ଖାଲି ବରାଦ ଦେଲେ ହେଲା ।"

"ତା' ହେଲେ ତମେତ କମ୍ ପାରିବାର ଲୋକନୁହଁ ସତ୍ୟ ସୁନ୍ଦର !"

"ଯା ଆଉ ! ଆପଣମାନଙ୍କ ପରି ବଡ଼ ଲୋକମାନଙ୍କ ଆଗରେ ମୁଁ ମୋର ପୂର୍ତ୍ତି କହୁନି ଆଜ୍ଞା, ମୋ ବିଷୟରେ ଯେତିକି ଜାଣିବା ଦରକାର କେବଳ ସେତିକି କହୁଛି । ଶୁଣିଲେ ସାର୍, ମୋ ଷ୍ଟାଫ୍‌ର ମୋ ପ୍ରତି ଖୁବ ଖାତିର୍ । ମୁଁ ସେମାନଙ୍କ ପାଇଁ ଯାହା କରିଛି, କେହି କିମିତି କରିବେନି ।"

"କଣ କରିଛ ଶୁଣେ ।"

"ମୋ ଷ୍ଟାଫ୍ ସପ୍ତାହ ଶେଷରେ ଦରମା ପାଆନ୍ତି । ଅଭାବବେଳେ ମୁଁ ତାଙ୍କୁ ଆଡ୍‌ଭାନସ୍ ମଧ୍ୟ ଦିଏ । ସପ୍ତାହରେ ଦିନେ ଛୁଟି କଲୁ ପୂରା ମଜୁରି ସେମାନେ ପାଆନ୍ତି । ଦେହ ପାଇଁ ଭଲମନ୍ଦ ହେଲେ ମୁଁ ବି ତାଙ୍କୁ ଔଷଧ ଖର୍ଚ୍ଚ ଦିଏ । ଲୁଗାପଟା ସଫା ସୁତୁରା କରିବାକୁ ହପ୍ତାକୁ ମୁଣ୍ଡାଏ ସାବୁନ ଦିଏ ।"

"ବହୁତ ଦେଉଛ ସତ୍ୟ ସୁନ୍ଦର, କାମ ବି ସେହି ପରିମାଣରେ ପାଉଥିବ । ଲାଭ ତ ବହୁତ ହେଉଥିବ ।

"ଲାଭ ଯେ ନହେଉଛି ତା ନୁହେଁ, ତେବେ ତାହା ବାଣ୍ଟି ନେବାରେ ମୋର ବ୍ୟକ୍ତିଗତ ଲାଭ ବହୁତ ହେଉଛି ।"

"ମାନେ ?"

"ମାନେ, ମୋତେ ଲୋକବାକ ଖୋଜିବାକୁ ପଡ଼େନି । ଲୋକମାନେ ମୋ ପାଖରେ ବନ୍ଧା ହୋଇ ରହିଥାନ୍ତି । ସବୁ ଲାଭ ଖାଇଲେ ଲୋକଙ୍କର ଈର୍ଷା

କ୍ରୋଧ ଓ ଲୋଭର ଉତ୍ପତ୍ତି ଏତେ ବଢ଼ି ଯାଆନ୍ତି ଯେ ସବୁବେଳେ ମନସ୍ତାପ କରିବାକୁ ପଡ଼ନ୍ତା । ସେଥିରୁ ମୋତେ ରକ୍ଷାମିଳିଛି । ଏଥିପାଇଁ ଯେଉଁ ଶାରୀରିକ ଶକ୍ତିର ଖର୍ଚ୍ଚ, ଅର୍ଥବ୍ୟୟ, ମନସ୍ତାପ ପ୍ରଭୃତି କରିବାକୁ ପଡ଼ନ୍ତା, ସେ ସବୁ କରିବାକୁ ପଡ଼ୁନି ।"

"ଭାରି ଭଲ ବୁଦ୍ଧି ଟାଏ କରିଛ ସତ୍ୟସୁନ୍ଦର, ପଢ଼ିଛ କଣ ?"

"ଏଇ ମେଟ୍ରିକ ଯାଏ ପଢ଼ିଛି ଆଜ୍ଞା, ପରୀକ୍ଷା ଦେଇ ଫେଲ୍ ହୋଇଗଲି । ଜୀବନରେ ସେଇ ଗୋଟିକ ଫେଲ ନ ହେଲେ ଆଉ ସବୁ କଥାରେ ପାଶ୍ । ଅଭାବ, ଅନଟନ ଭିତରେ ଯେଣ୍ଣି ହୋଇ ଯାହା ସେତକ ହେଉଛି ।"

"ଏବେ ତ ଅଭାବ ନାହିଁ । ପରୀକ୍ଷାଟା ଦେଇଦେଉନ !"

"ଦେଇ ଦେବାରେ କିଛି ଅସୁବିଧା ନାହିଁ ଆଜ୍ଞା, ଦେଲେ ନିଶ୍ଚୟ ପାଶ କରିବି । କିନ୍ତୁ ଆଉ ଟିକେ ଅସୁବିଧା ହୋଇଯିବ । ସେଇଥି ପାଇଁ ଡରୁଛି ।"

"ଅସୁବିଧା ହୋଇଯିବ ? ପରୀକ୍ଷାରେ ପାଶ୍‌କଲେ ଅସୁବିଧା ହୋଇଯାଏ ?"

"ସେ ଅସୁବିଧାଟା କ'ଣ ଏଇଟା ମୋର ବ୍ୟକ୍ତିଗତ କଥା । ଏଇ ଦେଖନ୍ତୁ ଯୋଉଁଦିନ ମେଟ୍ରିକ ପାଶ୍ କରିଯିବି ସେଦିନ ମନରେ ଗୋଟାଏ ଅହଂଭାବ ସୃଷ୍ଟି ହେବ । ଭାବିବି ମେଟ୍ରିକ ପଢ଼ି ମିସ୍ତ୍ରୀ ହେବି, ଲୋକେ ବି ସେଇଆ କହିବେ । ମନଟା ଚାକିରିଆଡ଼କୁ ଧାଇଁବ, ଯିଅନ ଚାକିରି ବି ତ ମିଳିବନି, ମିଳିଲେ ବି ପେଟ ପୂରିବନି, ଖାଲି ହନ୍ତସନ୍ତ ହେବା କଥା । ଯେଉଁ କରଣୀ ମୋତେ ବିପଦ ବେଳେ ପେଟକୁ ଦାନା, ଅଣ୍ଟାକୁ କନା ଦେଇଥିଲା ସେଇ କରଣୀ ପ୍ରତି ମୋର ମୋହ ତୁଟିଯିବ । ମୁଁ ତାକୁ ଧୋକାଦେଇ ପାରିବନି ଆଜ୍ଞା । କଲମ ଆଉ କରଣୀ ଭିତରେ ବିବାଦ ଲାଗିବ । ମୁଁ କଣ କରଣୀ ଛାଡ଼ି ପାରିବ ।"

"କାହିଁକି ବେଙ୍ଗଲ, ମାଡ୍ରାସ, କେରଳର ମାଟ୍ରିକବାଲା ରିକ୍ସା ଚଲାଉଛନ୍ତି, ବି. ଏ. ବାଲା ପାନ ଦୋକାନ କରୁଛନ୍ତି । ତମେ ମିସ୍ତ୍ରୀ କାମ କଲେ କ୍ଷତି କଣ ? ତା'ପରେ ତମେ ତ ଠିକାଦାର ହୋଇଗଲଣି, ଏଣିକି କରଣୀ ଧରିବାଟା ତମର ସଉକ, ଲୋକେ କାମ କରିବେ ତମେ ବତେଇବ । ପାଠୁଆ ମିସ୍ତ୍ରୀର କାମ ଅପାଠୁଆ ଲୋକଠୁ ନିଶ୍ଚୟ ବେଶି ପସନ୍ଦଦାୟକ ହେବ ।

"ଠିକ୍ କହିଲେ ଆଜ୍ଞା, ତାହେଲେ ପରୀକ୍ଷା ଦେଇ ଦେବି, ଆପଣ ମଝିରେ ମଝିରେ ଟିକିଏ ସାହାଯ୍ୟ କରିବେ । ଆମର ଏଇ କୁଲିମାନଙ୍କର କେତେଟା

ପିଲା ଭଲ ପଢ଼ନ୍ତି । ସାହାଯ୍ୟ ଅଭାବରୁ ଆଗେଇ ପାରିଲେନି, କାମ ଧାମ କରି ବାପା ମା'ଙ୍କୁ ସାହାଯ୍ୟ କରନ୍ତି । ତାଙ୍କ ଭିତରୁ ଦୁ' ଜଣଟା ପିଲାଙ୍କୁ ମୁଁ ପଇସା-ପତ୍ର ଦେଇ ପଢ଼ାରେ ଲଗେଇଛି । ଆସନ୍ତାକୁ ମେଟ୍ରିକ ପରୀକ୍ଷା ଦେବେ । ତାଙ୍କ ସାଥିରେ ବସିପଡ଼ନ୍ତି ନହେଲେ । ବାପ-ପୁଅ, ମା'-ଝିଅ ତ ଏକାବେଳେ ପରୀକ୍ଷା ଦେବାକୁ ଯାଉଛନ୍ତି, ମୋତେ ଲାଜ ମାଡ଼ିବ କାହିଁକି ?"

"ଭାରି ଖୁସିହେଲି ସତ୍ୟସୁନ୍ଦର । ତୁମେ ପାସ୍ କରିଗଲେ ମୋର ଗୋଟାଏ ବଳସ୍ମୁ ହୋଇଯାଆନ୍ତା ।"

"ଠିକ୍ ଅଛି ଆଜ୍ଞା, ପଢ଼ିବି, ପରୀକ୍ଷା ଦେବି, ପାସ କରିବି, ଆପଣଙ୍କର ନାଁ ରହିବ । ଠିକ୍ ସମୟରେ ମୁଁ ଋଣ ସୁଝିବି ଆଜ୍ଞା । କେବେ କହନ୍ତୁ, କେବେଠୁ ଆପଣଙ୍କ ଘର କାମ ଆରମ୍ଭ କରିବା । ଗୋଟାଏ ଭଲ ଦିନ ଦେଖି ଲେଆଉଟ୍ କରିବା । ଶିଳ୍ପ ଶାସ୍ତ୍ର ଦେଖି ଶୁଭାଶୁଭ କହିବି । ଓଭରସିଅର ଦରକାର ନାହିଁ । ମାପଚୁପ୍‌ରେ ମୋତେ କେହି ବଟେଇବେନି । ଯେ ପୋଥି ବାଇଗଣ ଖାଇଛନ୍ତି, ମୁଁ ବାଡ଼ି ବାଇଗଣ ଖାଇଛି । ଏଇ ହାତରେ ଶହ ଶହ ଘର କରିଛି ?"

"ତା ହେଲେ ତୁମେ ଲେଆଉଟ୍ କରିବ ?"

"ନିଶ୍ଚୟ ଆଜ୍ଞା, ପ୍ଲାନ୍‌ଟା ହାତରେ ଆସିବେ, ଆସିବେ କାହିଁକି, ମୁଁ ନିଜେ ଯାଇ ଘରେ ପହଞ୍ଚିବି । କାଲି ତ ଶୁଭ ଶୁକ୍ରବାର, ତିଥି ତୃତୀୟା, ସୋମ, ବୁଧ, ଶୁକ୍ର ଏଗୁଡ଼ିକ ଗୃହାରମ୍ଭ ଆଉ ଗୃହ ପ୍ରବେଶପାଇଁ ଭାରି ଭଲ ଦିନ । ପ୍ଲାନ ଆପ୍ରୁଭ୍ ହୋଇଯାଇଛି ତ ।

"ହଁ, ସେ ସବୁ କାମ ସରିଛି ?"

"କେତେ କଣ ଖର୍ଚ୍ଚ ବାର୍ଚ୍ଚ ହେଲା ?"

"ଅନ୍ତତଃ ତିନି ଶହ ଟଙ୍କା ।"

"ମୁଁ ଦେଖୁଛି, ଆପଣ ସବୁଥିରେ ଭାଗ୍ୟବାନ । ଏତେ କମ୍ ପଇସାରେ କରେଇ ନେଲେ ! ଆଜି କାଲି ସବୁ ସୁଦ୍ଧା ପାଞ୍ଚଶହ ଟଙ୍କାରୁ କମରେ ପ୍ଲାନଟା ଆପ୍ରୁଭ୍ ହେଉନି । ଗୋଟାଏ ଭଲଲୋକ ହାତୁଡ଼ରେ ବୋଧହୁଏ ପଡ଼ିଗଲେ, ନହେଲେ ଏତେ କମ୍‌ରେ କମିଶ ହୋଇଥାନ୍ତା ।"

"ଠିକ୍ କହିଲ ସତ୍ୟସୁନ୍ଦର । ଭଲ ଲୋକଗୁଡ଼ାକଙ୍କର ବାସନା ପବନରେ ଚହଟୁଥାଏ । ଭଲ ମଣିଷ ଭଲ ମଣିଷର ଗନ୍ଧ ବାରି ବାରି

ବୋଝହୁଏ ତା ପାଖରେ ପହଞ୍ଚିଯାଏ । ଏଇ ସିମିତ ତମେ ମୋ ପାଖରେ ପହଞ୍ଚିଛ ।"

"ମୋର ସେଇ ବିଶ୍ୱାସ ଆଜ୍ଞା, ଆପଣ ନିଶ୍ଚୟ ଭଲଲୋକ ହୋଇଥିବେ । ତେବେ ନିଜେ କରୁନା ଆଉ କାହାଦ୍ୱାରା କରାଇଲେ ?"

"ମୁଁ ନିଜେ ପ୍ରତ୍ୟେକ ଘରକୁ ଯାଇ କାମ କରୁଛି, ଅନୁରୋଧ କରୁଛି, ପଇସାପତ୍ର ବି ଖର୍ଚ୍ଚ କରୁଛି । ତେବେ କାମ ସରିବାକୁ ବରଷେ ଲାଗିଗଲା । ଦଉଡ଼ି ଦଉଡ଼ି ନେଳମ ହୋଇଗଲି ।"

"ପ୍ଲାନର ଜଣେ ଠିକାଦାରଙ୍କୁ ଧରେଇ ଦେଲେନି । ସିଧା ପାଞ୍ଚ ଶହ ଧରେଇ ଦେଇ ଘରେ ବସିଥିଲେ ସାତ ଦିନରେ ପ୍ଲାନ ଆପ୍ରୁଭ ହୋଇ ଆପଣଙ୍କ ଟେବୁଲରେ ଆସି ପହଞ୍ଚି ଯାଇଥାନ୍ତା । ଏତେ ଝମେଲା କାହିଁକି ? ଆପଣତ ଅଫିସ ଲୋକ, ନିଶ୍ଚୟ ଏ ସବୁ ଧନ୍ଦା ଭିତରେ ଥିବେ, ଜାଣିଥିବେ, ପଇସା ନହେଲେ କୋଉ କଥା ହେଉଛି ?"

"ମୁଁ ତାର ଧାର ଧାରେନା ନନ୍ଦସୁନ୍ଦର । ଅବଶ୍ୟ ଶୁଣିଛି; କିନ୍ତୁ କଳ୍ପନା କରିପାରେନା ସେ ସବୁ କାମ ଚାଲିଛି କେମିତି ।"

"ଦିନ ଦି'ପହରେ ଚାଲିଛି । ଡକେଇ ବଜେଇ ଚାଲିଛି, କୋର୍ଟ କଚେରି, ଅଫିସ, ଗିର୍ଜା, ମସଜିଦ୍, ମନ୍ଦିରରେ ବି ଚାଲିଛି । ଘରେ, ବାହାରେ, ପରିବାରରେ ବି ଚାଲିଛି । ନଚାଲିଛି କୋଉଠି ? ହେଲେ ସବୁଠୁ ଅଫିସ୍‌ମାନଙ୍କରେ ବେଶି ।"

"ତମେ କେମିତି ଅଫିସ କଥା ଜାଣିଲ ?"

"ମୁଁ ଆଜ୍ଞା ଇମିତି ଜଣେ ଠିକାଦାରଙ୍କ ହାବୁଡ଼ରେ ପଡ଼ି ଗୋଟାଏ ଅଫିସ୍‌ରେ ଦି'ଚାରିମାସ ପାଇଁ କାମ କରିଥିଲି ।"

"ମାନେ ?"

"ମାନେ ଜଣେ ଚତୁର୍ଥଶ୍ରେଣୀ କର୍ମଚାରୀ ଏଇ ଧନ୍ଦା କରନ୍ତି । ସେ ଛୁଟିରେ ରହି ପୂରା ଦରମା ପାଆନ୍ତି । ଅଫିସରଙ୍କୁ ଧରି ତାଙ୍କ ଜାଗାରେ ମୋପରି ବେକାର ଲୋକଙ୍କୁ ଦି'ଚାରିମାସ ପାଇଁ ବସେଇ ଦେଇ ଅମଳରୁ ବି ଅଧା ପଇସା ନିଅନ୍ତି ।'

"ତମର ଲାଭ କଣ ହୁଏ ?"

ଲାଭ ଏତିକି ଯେ ଖାଇବା ଖର୍ଚ୍ଚଟା ଉଠିଯାଏ, ତାଛଡ଼ା ଅଫିସରମାନଙ୍କର ବୋଲହାକ କରି, ବଡ଼ ହାକିମଙ୍କ ପିଲାଛୁଆ କାମ, ହାଟ ବାଟ, ବାଡ଼ିବଗିଚା

ଗାଈ, କୁକୁର କାମ, ଲୁଗାପଟା ସଫା ସୁତୁରା କରି ମନ ନେଇଥିଲେ ଯେତେ-ବେଳେ କାମ ଖାଲିଥୁଏ, ସେତେବେଳେ ମିଳିଯାଏ ।”

“ଛାପରେ ତମେ ରଜା ··ନା କଣ ?”

‘ନୂଆ ନୂଆ କେତେଦିନ ବଡ଼ ହାକିମଙ୍କ ପାଖରେ ହେଲେମେଲେ ହେଲାବେଳକୁ ନୂଆ ଲୋକ ଜୁଟି ଯାଆନ୍ତି, ଆମେ ଅନ୍ୟ ଅଫିସରଙ୍କ ପାଖକୁ ଯାଉ, ସେଠାରେ ନିୟମ ମୁତାବକ କାମ, ନହେଲେ ଚତୁର୍ଥ ଶ୍ରେଣୀ କର୍ମଚାରୀ ସଙ୍ଘ ପକ୍ଷରେ ମହାବଳ ବାପପଣ ଛଡ଼ା ହୋଇଯିବ । ଚାକିରିରେ ଥରେ ପଶିଗଲେ କୋଉ ପ୍ରମୋସନ ନା ଡିଗ୍ରେଡ଼େସନ, ସି· ସି. ଆର, ଫିସିଆର ତ ଆମର ନାହିଁ ତେଣିକି ଆମେ ଆମର ଗଭର୍ଣ୍ଣର । ହେଲେ ଆଜ୍ଞା ! ସେଇ ଯୋଉ ଅସ୍ଥାୟୀ ପିରିଅଡ଼ଟା ଭାରି ଦୁଃଖଦାୟକ । ଗର୍ଭବତୀ ସ୍ତ୍ରୀଠୁ ବି ଅଧିକ ଦୁଃଖ ।’

“ଓହୋ···କାମଧାମ ଟିକିଏ କରିବ, ଚାକିରୀ ଖଣ୍ଡେ ପାଇବ, କଷ୍ଟ କ’ଣ ?”

“ଆଜ୍ଞା, କାମ କଲେ ତ ବାଧନ୍ତାନି, ଏଇ ଯୋଉ ନୀଚ କାମଗୁଡ଼ାକ ବେଶି ବାଧେ । କୁକୁର ମଇଳା ସଫା କରି ପକାଇବା, ତା ଝାଡ଼ାନେଇ ପ୍ରତମାସରେ ପରୀକ୍ଷା କରେଇବା । ତାଙ୍କୁ ଗାଧୁଆ ପାଧୁଆ କରିବା, ଗୁହାଳ ପୋଛିବା, ଗାଧୁଆ ଘର, ପରିସ୍ରାଖାନାକୁ ନଡ଼ିଆ କତା କମ୍ବା ଶିଉଳି ଘସାରେ ପ୍ରତିଦିନ ଘଷି ସଫା କରିବା, ଲୁଗାପଟା ଧୋଇବା, କାଚିବା, ଛୋଟ ପିଲାର କନାପଟା ଧୋଇବା, ମା’ଙ୍କ ଅଜାଣତରେ ବାବୁଙ୍କ ପାଇଁ ଲୁଚେଇ କରି ମଦ ଆଣିବା, ଆଉ ବାବୁଙ୍କ ଅଜାଣତରେ ମା’ଙ୍କ ପାଇଁ ଲୁଣି ଶୁଖୁଆ, ଗୁଗୁଲି, ମୋଦକ, ନାଲି ତ୍ରିକୋଣ ଚିହ୍ନଥିବା ଡବା, ସାନଛୁଆ କହିବ ତୁ ଘୋଡ଼ା ହ ମୁଁ ତୋ ଉପରେ ବସିବି । ଆଣ୍ଠେଇ କରି ଘୋଡ଼ା ହୋଇ ତାକୁ ଘର ବାରଣ୍ଡାରେ ବୁଲାଇବା, ତା’ଠୁ ବଡ଼ ପିଲା ପାଇଁ ବଜାରରୁ ଖଟା ପୁଡ଼ିଆ କିଣି ଆଣିବା, ତାଠୁ ବଡ଼ ପୁଅ ଝିଅଙ୍କ ପାଇଁ ଷ୍ଟୁଡ଼ିଓକୁ ଯାଇ ବିଭିନ୍ନ ଭଙ୍ଗୀର ଫଟୋଦରୁ ଆଣି ଲୁଚେଇ କରି ଦେବା, ବାବୁ ଆଉ ମା’ଙ୍କ ଭିନ୍ନ ଭିନ୍ନ ବାବୁଙ୍କ ଗାଡ଼ିରୁ ବେହୋସ ଅବସ୍ଥାରେ ଟେକିଆଣି ଘରେ ଶେଯରେ ଶୁଆଇବା, ମୁହଁରୁ ମଦ-ଫେଣ ପୋଛିବା, ଅଣ୍ଟାର ଅସନ୍ତାଳ ଲୁଗାପଟାକୁ ପୁଣି ଭିଡ଼ିଭାଡ଼ି ସଜେଇ ଦେବା, ଆଜ୍ଞା ଇମିତି ଆଉ କେତେ ଭିତର ଗୁମର କାମ ଯାହା କି ପାଟିରେ ଧରି ପାରୁନି, ସେସବୁ କରେଇବା ଇତ୍ୟାଦି, ଇତ୍ୟାଦି, ଇତ୍ୟାଦି । ମୋତେ ଆଜ୍ଞା ସେ ସବୁ ପୋଷେଇଲାନି । ମୁଁ ଛାଡ଼ି ପଳେଇ ଆସିଲି । ବଡ଼ ହାକିମଙ୍କର ଯାହା ତ ‘କାମ, ତାଛଡ଼ା ତାଙ୍କ ଚାମଚାମାନଙ୍କର କାମ ନକଲେ ଚାକିରି ଗୋଲ । ଆଜ୍ଞା

କଣ କହିବି, ମୋପରି ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀ ଭାଇ ସ୍ଥାୟୀ ଭାବରେ ଏମିତି ଥାଏ । ତାକୁ ବଗିଚାର ମାଳିଭାବରେ ବ୍ୟବହାର କରାଗଲା, କୁହାଗଲା ଫୁଲ-ଗଛର ଯତ୍ନ ବଡ଼ କଥା ନୁହେଁ, ଘାସରେ ପାଣି ପକାଇ ତାକୁ ବଢ଼ାଇବୁ । ପ୍ରତିଦିନ ବସ୍ତାଏ ଘାସ ନେଇ ଗାଈ ପାଇଁ ଘରେ ଦେବୁ । ସେ ସେଇଆ କଲା, ପାଣି ପକାଇ ଘାସ ବଢ଼ାଇ ଯୋଗାଇଲା । ଫୁଲଗଛ ସବୁ ଯତ୍ନ ଅଭାବରେ ବଢ଼ିଲେନି, ଫୁଲ ଫୁଟିଲାନି । ଖରାଦିନେ ସେ ବେଶି ପାଣି ପାଇଲାନି, ଘାସ କମିଗଲା, ବାବୁଙ୍କ ଗାଈ କ୍ଷୀର କମେଇ ଦେଲା, କାମରେ ଅବହେଳା କଲାବୋଲି ତାକୁ ଚାକିରିରୁ ସସ୍‌ପେଣ୍ଡ କରାଗଲା ପୁରା ଗୋଟାଏ ବର୍ଷ । ଆଜ୍ଞା ଏଇଆ ତ ଅଫିସ୍ ଧନ୍ଦା, ମୋତେ କଣ ଭଲ ଲାଗିଥାନ୍ତା···ମୁଁ ପଳେଇ ଆସିଲି । ଏଇ କରଣୀକୁ ଆଶ୍ରା କଲି । ବେଶ୍ ଖୁସିବାସିରେ ଅଛି ।

"ସତ୍ୟ ସୁନ୍ଦର, ତମର କମ୍‌ଦିନ ଜୀବନ ଭିତରେ ବହୁତ ଅଭିଜ୍ଞତା । ଯାହା ସବୁ କହୁଚ ସେ ଅନ୍ୟେ ନଭୋଗିଲେ ସେ ବିଶ୍ୱାସ କରିବେନି ।"

"ବୁଝିଲେ ଆଜ୍ଞା, ଏ କଥାଗୁଡ଼ାକ ସହରର ମଜା । ଚାକିରିଆ ମାନେକେ କିଏ ନ ଜାଣେ । ଆପଣ ତ ଜଣେ ବଡ଼ ବାବୁଙ୍କ କଥା ଶୁଣିଲେ ଆହୁରି ଆଶ୍ଚର୍ଯ୍ୟ ହୋଇଯିବେ । ମୁଁ ଯୋଉ ସେକ୍ସନ୍‌ରେ କାମ କରୁଥିଲି ସେ ବଡ଼ବାବୁଙ୍କୁ କୋଟି କୋଟି ନମସ୍କାର । ହେ, ବିଧାତା ପୁଣି ଇମିତି ମଣିଷ ଗଢ଼ିଛନ୍ତି । ଆପଣଙ୍କ ସମୟ ନଷ୍ଟ କରୁଚି, କଣ କାମଧାମ କରିଥାନ୍ତେ ।"

"ନାଇଁ ମ, କାମ କଣ, ଏଠି ଇମିତି ଟିକିଏ ସଫା କରୁଥିଲି । କହ··· ଟିକିଏ ଶୁଣିବା । ଭାରି ବଢ଼ିଆ ବଢ଼ିଆ କଥା କହୁଚ ।"

"ବଢ଼ିଆ କଣ, ସତ କଥା କହୁଚି । ଆମର ବଡ଼ବାବୁ ବାରଟା ପୂର୍ବରୁ କେବେ ଅଫିସକୁ ଆସନ୍ତିନି । ମଝିରେ ମଝିରେ କମିତି ଆଗରୁ ଆସି ଛକ ପକେଇ ଦିଅନ୍ତି···ସମସ୍ତଙ୍କୁ ଚମକେଇ ଦିଅନ୍ତି । କର୍ତ୍ତବ୍ୟପରାୟଣତା, ସମୟାନୁବର୍ତ୍ତିତା ଉପରେ ଚମତ୍କାର ଭାଷଣଟିଏ ଶୁଣାନ୍ତି । ତା'ପରେ ନିଜର ପତ୍ନୀ, ପିଲା, ପିଚକା, କୁକୁର, ଗାଈ, ପୋଷା ବିରେଇ ପ୍ରଭୃତି କଥା ଘଣ୍ଟେ ଅଧଘଣ୍ଟେ ବିତିଯାଏ । ତା'ପରେ ଆରମ୍ଭ ହୁଏ ଦରବାର । ବହୁ ଲୋକଙ୍କୁ ବହୁଭାବରେ ସାହାଯ୍ୟ କରିବାର ଅଭିନୟ । ଜଣେ ଜଣେ ଲୋକ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରନ୍ତି, ଚା ଜଳଖିଆ, ପାନ ଆସି ଟେବୁଲ୍ ଉପରେ ଜମାହୁଏ । ସେ ଆସନ୍ତି ଭୋଗ ପାଆନ୍ତି । ବହୁ ପ୍ରତୀକ୍ଷା ପରେ ବାବୁ ନିଜେ ଉଠନ୍ତି ଲୋକଙ୍କ କାମଧାମ ବୁଝିବେ ବୋଲି । ସାଧାରଣ କାମ ସବୁ କୁହାପୁଛାକରି କରାଇ ଦିଅନ୍ତି ନଚେତ୍ ଆସି କହନ୍ତି, ମୁଁ ତାଙ୍କୁ କହି

ଆସିବ । ତମେ ଯାଅ, ଜଳଖିଆ ଫଳଖିଆ ଟିକଏ ଦେଇ କାମଟା କରେଇନେବ । ଏଇ ଦରବାରରେ ବିବାହ ପ୍ରସ୍ତାବ ସବୁ ପଡ଼େ, ପାତ୍ରପାତ୍ରୀ ଯୋଗାଡ଼ ପାଇଁ ବରାଦ ଦିଆଯାଏ, ସରୁ ଚାଉଳ, ଘିଅ, ମୁଗ, ବିରି. ଜମିପାଇଁ ଖତ, କାଠ, ସିମେଣ୍ଟ ପ୍ରଭୃତିର ବରାଦ ହୁଏ । ସଧାନ କରିବାପାଇଁ ଗୃହ ଖଣ୍ଡାଯାଏ । ଜମି-ବାଡ଼ି ଘରଜିନିଷ କିଣା ବିକା କରିବା ପାଇଁ ମଝିରେ ମଝିରେ ଗ୍ରାହକ-ମାନଙ୍କର ପିଲାପିଲିକାମାନଙ୍କ ଭଲ ମନ୍ଦ କଥା ପଚାରି ଖବର୍ ତାଗିଦ କରାଯାଏ । ଉପସ୍ଥିତରେ ତାଙ୍କ ସ୍ତ୍ରୀର ଆକାଶ ଛୁଆଁ ପ୍ରଶଂସା ଓ ସେ ଟିକ୍ ପାଶହାତ ହେବାପରେ ତାଙ୍କର ଚରିତ୍ର ସଂହାର ଏଇଟା ନିତିଦିନିଆ କଥା । ଗହଣ ଭିତରେ ବିଭିନ୍ନ ଲୋକଙ୍କର ପାରିବାରିକ ଜୀବନର ମନଗଢ଼ା ଗୂଢ଼କଥା ସବୁ ପଡ଼େ, ଆଲୋଚନା, ତର୍କ ବିତର୍କ ହୁଏ । ଏଇ ହରିହାଟ ଭିତରେ କେଉଁ କର୍ମଠ କିରାଣିବାବୁ ତାଙ୍କର ଫାଇଲ ପତ୍ର ଧରିଲେ ଚଟକିଣି ସେ କହନ୍ତି, ଶୁଣୁନା · ଅମୁକ ବାବୁ, କେଡ଼େ ମଜା କଥା, କାମ ବେଶୀ କରନା, କଲେ ବେଶି ହଇରାଣ ବେଶି ହନ୍ତସନ୍ତ । କାମ ଛାଡ଼ିଦେଉ·· ଛାଡ଼ିବ, ଶୁଣୁନା । ସେ ବିଚରା ବଡ଼ ବାବୁଙ୍କ କଥାରେ ଫାଇଲ ବନ୍ଦକରି ଇଚ୍ଛା ବିରୁଦ୍ଧରେ ହୁଁ ହାଁ କରନ୍ତି । ସେ ଗପରେ ମାଡ଼ିଗଲେ ଏ ଫାଇଲ ଧରନ୍ତି ।

“ଆଚ୍ଛା, ଅଫିସରମାନେ କିଛି କହନ୍ତିନି, କାମାଧାମ କମିତ ହୁଏ ?

“ଅଫିସରମାନଙ୍କୁ ପରା କାବୁକରି ରଖିଥାନ୍ତି । ତାଙ୍କ ଭାଷାରେ ସେଗୁଡ଼ାକ ମୁଣ୍ଡରେ କିଛି ନାହିଁ, ଇଡ଼ିୟଟ୍ ଗୁଡ଼ାକ । ତାଙ୍କୁ ଯିମିତ ମୋଡ଼ି-ଦେଲେ ସିମିତ ହୋଇଯିବେ । କିନ୍ତୁ କାମ ଗୁଡ଼ାକର ଚିଠି ସବୁବେଳେ ହଜେ, ସେ ତାଙ୍କ କଥାରେ ଚଳେନି, ବାଧାଦିଏ, ତାର ଫାଇଲ ଗାପ୍ ହୋଇଯାଏ ଯେ ଅଉ ମିଳେନି । ସକାଳୁ ଉଠି ଅଫିସରଙ୍କ ଘରକୁ ଯାଇ ତାଙ୍କର ବ୍ୟକ୍ତିଗତ ସୁବିଧା ଅସୁବିଧା ବୁଝି ଆସନ୍ତି, ତାପରେ ଇଏ ଯାହା କହନ୍ତି, ସବୁ କଥାରେ ସେୟା । ଅଫିରଙ୍କ ପୁଅପାଇଁ ପାତ୍ରୀ, ଝିଅ ପାଇଁ ପାତ୍ର, ଘର ପାଇଁ ଭଡ଼ାବାଲା ଠିକ୍ କରିବା, ଅଫିସ୍ ପଇସାରେ ତାଙ୍କ ଗାଡ଼ି ମରାମତି କରିବା, ଅଫିସରଙ୍କ ଘର ତିଆରି ପାଇଁ ସିମେଣ୍ଟ ଯୋଗାଡ଼ କରିବା, ତାଙ୍କର ପଦୋନ୍ନତି କିମ୍ବା ବଦଳି ବନ୍ଦପାଇଁ ଏମ୍. ଏଲ୍. ଏ. ମାନଙ୍କୁ ଲଗାଇବା, ମନ୍ତ୍ରୀଙ୍କ ପାଖରେ କଥା ପହଞ୍ଚାଇ ତାର ଫଇସଲା କରିବା ତାଙ୍କର ପ୍ରଧାନ କାମ । ଅଫିସର, ମା, ଝିଅ, ପୁଅ ସେ ସମସ୍ତଙ୍କର ବିଶ୍ୱସ୍ତ ବ୍ୟକ୍ତି । ସମସ୍ତେ ନିଜ ନିଜର ଭିତର ଗୋପନ କଥା ତାଙ୍କୁ କହି କାମ କରାଇନିଅନ୍ତି । ଦରବାରରେ ଯେଉଁମାନେ ପହଞ୍ଚନ୍ତି, ତାଙ୍କ ଗହଣରେ, ସବୁ କଥାର

ଆଲୋଚନା ହୁଏ । ସମସ୍ତେ ପେଟପୂରା ହସନ୍ତି, ମନଭରି ଆତ୍ମପ୍ରସାଦ ପାଆନ୍ତି, ତାଙ୍କଦ୍ୱାରା କିଛି କିଛି ବି କାମ ଧାମ ହୁଏ ।

"ଆଚ୍ଛା ସତ୍ୟସୁନ୍ଦର ତାଙ୍କୁ ଏଥିରୁ ଫାଇଦା ମିଳେ କଣ ?"

"ସେଇ 'ଫାଇଦା'ଟି ମିଳେ, ଅଫିସରଙ୍କ ନାଁରେ ଫାଇଦା ଉଠାନ୍ତି ।

"ଅଧେ...ଅଧେ, ତାଙ୍କର ଅଧେକୁ ସ୍ୱାଙ୍କର ଅଧେ ।" ତା ଛଡ଼ା ଆତ୍ମପ୍ରସାଦ, ହାକିମି, ବଡ଼ପଣିଆ ସବୁତ ମିଳେ, ନ ମିଳେ କଣ ?"

"ନା ନା...ସବୁ ଅଫିସର କଣ କରପ୍ଟେଡ୍ । ସୁଶିତ ସଚ୍ଚୋଟ, ସାଧୁ, କର୍ମଠ ଆଉ ଷ୍ଟ୍ରିକ୍ଟ ଅଫିସର ବି ତ ଆସୁଥିବେ । ସେତେ-ବେଳେ କଣ ହୁଏ ? ଏ ଗୁଳି ତ ଚାଲୁ ନଥିବ ।

"ସେ ଗୋଟିଏ ଏଣ୍ଡ୍ରୁଅ ଆଣ୍ଡା, ଯେ କୌଣସି ପରିସ୍ଥିତିରେ ନିଜର ରୂପ ପରିବର୍ତ୍ତନ କରିପାରନ୍ତି । ଖାପ୍ ଖୁଆଇ ନେବାର କାଇଦା ତାଙ୍କୁ ଇମିତି ମାଲୁମ ଯେ ସ୍ୱୟଂ ଈଶ୍ୱର ବି ଆସିଲେ ତାଙ୍କୁ ପାଲରେ ପକେଇ ଦେବା ଆଦୌ କଠିନ ନୁହେଁ । ଲୁଗାପିନ୍ଧା ଅଫିସର ହୋଇଥିଲେ ସେ ଧୋତି ଜାମା ପିନ୍ଧନ୍ତି, ପେଣ୍ଟ ପିନ୍ଧା, ଟାଇଭିଡ଼ା ହୋଇଥିଲେ ପ୍ୟାଣ୍ଟ ପିନ୍ଧନ୍ତି, ଚିତକଟା ହୋଇଥିଲେ ସେ ବି ଚିତା କାଟନ୍ତି । ଗୁରୁଭାଇବାଲା ହୋଇଥିଲେ ନିଜେ ସାଙ୍ଗେ ସାଙ୍ଗେ ଦୀକ୍ଷା ନେଇଯାଆନ୍ତି । ଅଫିସର ବୋତଲବାଲା ହୋଇଥିଲେ ସେ ତାଙ୍କର ଏଜେଣ୍ଟ ବନି ଯାଆନ୍ତି, ଧାର୍ମିକ ଲୋକ ହୋଇଥିଲେ ଭଜନ କୀର୍ତ୍ତନ, ପୂଜା ଧୂଳା, ଦାନ ଦକ୍ଷିଣାର ବ୍ୟବସ୍ଥା କରନ୍ତି ଓ ନିଜେ କରନ୍ତି । ଅଫିସର ଭାଷଣବାଲା ହୋଇଥିଲେ ତାଙ୍କ ପାଇଁ ସଭା ସମିତି, ଶ୍ରୋତା ଯୋଗାଡ଼ କରନ୍ତି । ରେଡ଼ିଓବାଲାଙ୍କୁ ହାତ କରି ତାର ପ୍ରଚାର କରନ୍ତି । ସମ୍ବାଦ-ପତ୍ରବାଲାଙ୍କୁ ହାତ କରି ଲେଖା ବାହାର କରନ୍ତି । ମୋଟ ଉପରେ ଯୋଉ ଦେବତା ଯିମିତି ପୂଜାରେ ସନ୍ତୁଷ୍ଟ, ସେ ତାର ଯୋଗାଡ଼ କରିବାରେ ଧୁରନ୍ଧର । ଫୁଲ, ଚନ୍ଦନ, ବନ୍ଦନ, ବନ୍ଦନା, ଚୁମ୍ବନ, ମୋହନ, ସ୍ତୁତି, ପୂଜା, ପାଠ ଓ ଭୋଗ ରାଗ ଯିଏ ଯେଉଁଥିରେ ସନ୍ତୁଷ୍ଟ ସେ କାମରେ ଧୁରନ୍ଧର । ସେ ଆଣ୍ଡା ଚୁକରି ନାଟକର ଅଲରାଉଣ୍ଡ ହିରୋ, ଗୋଟିଏ ପରିପୂର୍ଣ୍ଣ ମଣିଷ ।

"ଚମତ୍କାର...ଚମତ୍କାର ସତ୍ୟସୁନ୍ଦର; ତମେ ମିସ୍ତ୍ରୀ ନ ହୋଇ ଜଣେ ଉପନ୍ୟାସ ଲେଖକ ହୋଇଥିଲେ ଭାରି ବଢ଼ିଆ ହୋଇଥାନ୍ତା । ଲୋକଚରିତ୍ରକୁ ଏତେ ବିଶ୍ଳେଷଣ କରିଛ ।"

"ଆଉ ଆପଣମାନେ କ'ଣ କରିଆନ୍ତି ? ଆମେତ ଲେଖକ ହେବୁ ତାରଣୀ ଘଟିବ କିଏ । ମୁଁ ତ ଆଜ୍ଞା ଗଦ୍ୟଭ ଲୋକ, ମୋ ଗପ ଆରମ୍ଭକଲେ ଯଦି ଜଣେ ଲୋକ ପଛକୁ ଥିବ ଖାଲି ଗୋଟିଏ କଥା କହିବାକୁ "ତା ପରେ କଣ ହେଲା" ତା' ହେଲେ ସେ ଗପ ଛୁଣ୍ଡି ବନ୍ଦ ରହିଥିବ । ମୋ କଥା ତ ଏତେ ଶୁଣିଗଲେ, ଆପଣ କୋଉ ଡିପାର୍ଟମେଣ୍ଟରେ ଚାକିରି କରନ୍ତି ?

"ମୁଁ ଠିକାଦାରି କରେ, ପଲିଟିକ୍ସ ବି କରେ ।"

"ତା ହେଲେ ଆପଣ ତ ସେଇ ଲାଇନର ଲୋକ, ମୁଁ କଣ ଏତେ ବଖାଣୁଛମ । ଆପଣଙ୍କ ପାଖରେ ଲୋକବାକ ତ ଥିବେ । ସେ'ତ ସବୁ କରିବେ, ମୁଁ କଣ ମଝିରେ ମେଣ୍ଢାଟିଏ ପଶୁଛି । ବୁଝିଲେ ଅଜ୍ଞା ଗଦ୍ୟଭ ଲୋକଗୁଡ଼ାକ ଇମିତି ସବୁଠେ ଅପଦସ୍ଥ ହୁଅନ୍ତି । ଯାଉଛୁ ଆଜ୍ଞା ! ତଥାପି ମନେ ରଖିଥିବେ, ଦରକାର ହେଲେ ଡକାଇବେ । ଆରେ, ମୋର ଧାରଣା ଥିଲା, ଆପଣ କଲେଜ୍ ଫଲେଜର ମାଷ୍ଟର ଫାଷ୍ଟର୍ ହୋଇଥିବେ ।"

"ମୁଁ ଘରର ଠିକାଦାର ନୁହେଁ, ଅଫିସ ସବୁକୁ ଜିନିଷପତ୍ର ଯୋଗାଏ । ତମେ ଯଦି କାମ କରିବ ତା ହେଲେ କରିବ, ମୋର ଆପତ୍ତି ନାହିଁ । କାଲି ବସାକୁ ଆସ, ପ୍ଲାନ ଦେଖିବ, କଥାବାର୍ତ୍ତା ହେବା । ମୋ ପ୍ଲଟ ନମ୍ବର Z-280 ।

"ନିଶ୍ଚୟ ଯିବି ଆଜ୍ଞା, ପକେଟରେ କିଛି ଟଙ୍କା ଥିଲେ ଅଡ଼ଭାନସ୍ ଦିଅନ୍ତୁ । କାଲି ବରାଦ କରିବି, ଶନିବାରେ ଯାଇ କୋଲାମାନଙ୍କୁ କହିବି, ସେମାନେ ଜାଅଁ ଖୋଲିବେ, ଘରେଥିବା ହତିଆର ପକାଇବ, କ୍ରାଟୁକଙ୍କୁ ମଧ୍ୟ କିଛି ପଇସା ଦେଇ ଜିନିଷପତ୍ର କଣା କଣି କରିବ ।"

"ଆଗ ପ୍ଲାନ ଦେଖ, ତା' ପରେ ଶୁଭଦିନ ଦେଖି କାମ ଆରମ୍ଭ-କରିବା ।"

"ଆଜ୍ଞା ଶୁଭଦିନ ଦେଖିବେ କଣ, ସବଶୁଭ ଦଶହରା, ଆଉ ଦିନ ପାଞ୍ଚଟା ରହିଲା । ଦିନ ଅଳପକୁ କାମ ବେଶୀ । ଜାଗାଟା ପରିଷ୍କାର ହେବ, ଲୋକମାନେ ଏଇଠେ ବାଇଗଣ କରିଥିଲେ, ସେ ପଟାଳି ଗୁଡ଼ିକ ଥଳ କରାଯିବ । ଜମୀକୁ ତାକ ଚଉହଦ ଠିକ୍ କରିବାକୁ ହେବ । ଏଇ ଦିନ କେଇଟା ମୁଁ ଆପଣଙ୍କ କାମରେ ଲାଗିବି । ଆଡଭାନସ ଦେଇଦିଅନ୍ତୁ, ମୁଁ କାମରେ ଲାଗିଯାଏ । ଆପଣ ଏତେ ଘାଣ୍ଟି ହେବାର କିଛି ନାହିଁ ।

"ଲୋନ୍ ପାଇଁ ଆପ୍ଲାଇ କରିଛୁ ସତ୍ୟସୁନ୍ଦର, ହେଇଟା ମିଳିଯାଉ କାମ କରିବା, ପାଖରେ ତ କିଛି ନାହିଁ କରିବା କଣ !"

"ଠିକ୍ ଅଛୁ, ହେଲେ ଆପଣଙ୍କ ସୁବିଧାକୁ ଶୁଭଦିନ ତ ଅପେକ୍ଷା କରିବନି । ମୁଁ କହୁଥିଲି ଶୁଭଟା ଦେଇଥାନ୍ତେ, କାମଟା ସୁରୁ ହୋଇ ଯାଇଥାନ୍ତା, ତାପରେ ଲୋନ୍ ଫୋନ୍ ପାଇଁ ଆଗେଇଥାନ୍ତେ । ଆପଣ ଟିକଏ ମୋତେ ଚହ୍ନେଇ-ଦେଲେ ସେ ବାବୁଟି କିଏ, କାହାଦ୍ୱାରା କାମ ହେବ । ମୁଁ ମୋର ବାଟ କରିବି କିମିତି ଶୀଘ୍ର ସବୁ ହବ, ଆପଣ ସେ ସବୁ ଧନ୍ଦା ଭିତରେ ପଶି ପାରିବେନି । ପଲିଟିକସ୍ କରୁଛନ୍ତି ବୋଲି ସିନା କହୁଛନ୍ତି, ହେଲେ ମୋ ମନ ମାନୁନି, ଆପଣ ତ ସେ ଲାଇନ୍‌ର ଲୋକପରି ମାଲୁମ୍ ହେଉନାହାନ୍ତି । କଥାବାର୍ତ୍ତା ରଙ୍ଗଢ଼ଙ୍ଗ ତ କହୁନି । ମୁଁ ଭାବୁଚି ନିଅଁଟା ଆଗ ଖୋଳିଦେବା; ଅଳ୍ପ ଟଙ୍କା ତ ଲାଗିବ । କିଛି ପଥର, ବାଲି, ସିମେଣ୍ଟ ଆଣି ନିଅଁଟା ପକାଇଦେବା, ସ୍ୱା ଭିତରେ ଲୋନ ପାଇଁ ଲାଗିଥିବା, ଯଦି ଆସିଗଲା ଚଟାପଟ୍ କାମ ଅଗେଇ ଯିବ । ନ ଆସିଲେ ନିଅଁଟା ତ ପଡ଼ିଯାଇଥିବ, ତେଣିକି ଯେତେ ବିଳମ୍ବ ହେଲେ ବ୍ୟସ୍ତ ହେବାର କିଛି ନାହିଁ । ଆପଣ ଭାବୁଚନ୍ତି ଟଙ୍କା ହବ, ତାପରେ କାମ ଅରମ୍ଭ କରିବେ ଏଇଟା ସମ୍ଭବପର-ନୁହେଁ । କାମ ଚାଲିଥିବ, ଯୋଗଡ଼ ବି ଚାଲିଥିବ ।"

"ଆଚ୍ଛା ସତ୍ୟସୁନ୍ଦର, ତା'ହେଲେ ପ୍ଲିନ୍ଥ ପକେଇ ଦେବା, ପାଞ୍ଚହଜାର ହେଲେ ଚଳିଯିବଟି ?"

"ଖୁସିରେ, ଖୁସିରେ ଆଜ୍ଞା, ଅଣ୍ଟ ନଅଣ୍ଟକୁ ମୁଁ ଅଛି, ବନ୍ଦୋବସ୍ତ କରିଦେବି ପଥର, ବାଲି ଯୋଗଡ଼ବାଲା ପରେ ପଇସା ନେବେ । ଶୁଭକାମ ଅଟକେ ନାହିଁ, ଆପେ ଆପେ ସବୁ ଯୋଗାଡ଼ ହେଇଯିବ ।"

"ଆଚ୍ଛା ତମର ନିହାତି କେତେ ଟଙ୍କା ହେଲେ ଚଳିବ ?"

"ଟଙ୍କାଏ ହେଲେ ଚଳିବ; ପାଞ୍ଚ ଟଙ୍କା ହେଲେ ଚଳିବ; ନୂଆ କାମର ବଇନା ହେଲେ ହେଲା । ତା'ପରେ ଆଡ୍‌ଭାନ୍‌ସ୍ ଯେତିକି ଦେବେ, କାମକୁ ଦେଖି ବିଚାର କରନ୍ତୁ । ଯେତିକି ଚୂନାକୁ ସେତିକି ପିଠା; ସେଥିରେ କଣ ଅଛି । ହଁ, ସାର୍-ଆଜିଠୁ ଗୋଟିଏ ଖର୍ଚ୍ଚ ଖାତା କରନ୍ତୁ । ଫୁଲ ସିନ୍ଦୂର କିଣାଠୁ ଆରମ୍ଭ କରି ଘରର ଯାବତୀୟ ଖର୍ଚ୍ଚ ସେଥିରେ ଲେଖାଯିବ ।"

"ବାସ୍, ଭଲ କଥାଟିଏ କହିଲ, ଖାତାଟିଏ ନିଶ୍ଚୟ କରିବି, ଆଉ କ'ଣ କରାଯିବ ?"

"ଆପଣ ତ ଏ ଦୁନିଆର ସ୍ରୋତ ସବୁ ଜାଣିଛନ୍ତି, ମୁଁ କ'ଣ କହିବି ! ଆଜିର ଏ ମଣିଷ କ'ଣ ମଣିଷ ହୋଇ ରହିଛି ! ଜାଲୁଆର · ଜାନୁଅର ଆଜି ପାଲଟି ଗଲାଣି । ଘର, ପରିବାର, ବାହାର, ଧର୍ମ, ସମାଜ ସବୁଠେ ଅନ୍ୟାୟ ଅନୀତି, ତାହାକୁ ବିଶ୍ୱାସ ନାହିଁ । ମନେରଖନ୍ତୁ, ଯାହାକୁ ପଇସା ଦେଲେ ବି ରସିଦ ରଖନ୍ତୁ । ସେଇଟା ଭବିଷ୍ୟତରେ ବହୁତ କାମଦେବ । ମଣିଷ ଜୀବନଟା ତ ଗୋଟିଏ ଖର୍ଚ୍ଚର ହିସାବ ଖାତା, ଆପଣ ତାକୁ ଠିକ୍ ଭାବରେ ସାଇତି ନ ରଖିଲେ ଟିକିଏ ଟିକିଏ କଥାରେ ଠକିଯିବେ । ସେତିକି କପାଳରେ ଖାଲି କରମାରିବା ସାର ହେବ ।"

"ଠିକ୍ କହିଲ ସତ୍ୟସୁନ୍ଦର, ମଣିଷଠୁ ବଳି ହିଂସ୍ର, ଅବିବେକୀ, ଦୁସ୍ୱର ଆଉ ଅଧିକ କେହି ନୁହେଁ । ଆଚ୍ଛା ତମେ ପଚିଶ ଟଙ୍କା ଆଡ୍‌ଭାନସ୍ ନେଲେ ଚଳିବ ।"

"ନିଶ୍ଚୟ ଚଳିବ ଆଜ୍ଞା, ଆଉ ଦଶ ପଚିଶ ଟଙ୍କା ଯାହା ଦରକାର ପଡ଼ିବ, ମୁଁ ମୋ ହାତରୁ ଦେଇଥିବି, ଟଙ୍କାପାଇଁ କାମ ବନ୍ଦ ରହିବନି, ଥିଲେ କଣ ଦେଇ ନଥାଆନ୍ତେ ! ଆପଣତ ଇମିତି ଗୋଟିଏ ଲୋକ ଯେ ଯାହାର ଯାହା ଦି' ପଇସା ପାଇବାର କଥା ଯେ ତା' ନ ପାଇବା ଯାଏ ଆପଣଙ୍କ ମନ ଠିକ୍ ରହିବନି, ମୋ ପଇସା କ'ଣ ବୁଡ଼ିଯାଉଛି ! ଆଚ୍ଛା ଦିଅନ୍ତୁ ।"

"ସମରେନ୍ଦ୍ର ହସି ହସି ପଚିଶ ଟଙ୍କା ହାତକୁ ତା'ର ବଢ଼ାଇ ଦେଲେ । ସତ୍ୟସୁନ୍ଦର ଟଙ୍କାଟା ପକେଟରେ ପୂରେଇ ବାବୁଙ୍କୁ କହିଲା, 'ଆସନ୍ତୁ ଯିବା, ଆପଣ ସିଆଡ଼େ ଯିବେ, ମୁଁ ଆଗରୁ ବାଟ ଭାଙ୍ଗିବି । ମୁଁ ତ ନିତି ଏଇ ବାଟରେ ନଅଟାରେ ଯାଏ ପାଞ୍ଚଟାରେ ଫେରେ । କାଲି ବସାକୁ ଯିବି ।

"ସତ୍ୟସୁନ୍ଦର ବାଟ ଭାଙ୍ଗି ଚାଲିଗଲା, ସମରେନ୍ଦ୍ର ଆଗକୁ ମୁହାଁଇଲେ । ବାଟ ମଝିରେ ହଠାତ୍ ମନେପଡ଼ିଲା, 'ରସିଦ୍‌ତ କାଢ଼ି ରଖିଲିନି, ଏତେ ସମସ୍ତ ଗପସପ ହେଲା । ଅଥଚ ତାର ଗାଁ, ଘର, ସାଙ୍ଗିଆ ଓ ଅନ୍ୟାନ୍ୟ ପରିଚୟ କିଛି ରଖିପାରିଲିନି ।" ନିଜର ବୋକାମି ପାଇଁ ମନେ ମନେ ଭାରି ବ୍ୟସ୍ତ ହେଲେ । ଭାବିଲେ ସେ ଯଦି କାଲି ଆସିବ ରସିଦ୍ ରଖିନେବେ ।

ସେ ଘରକୁ ଫେରିଲେ, ସୌମ୍ୟାକୁ ସବୁ କଥା କହିଲେ । ସୌମ୍ୟା ହସି ହସି କହିଲେ, "ତମକୁ ସମସ୍ତେ ଠକନ୍ତି ବୋଲି ଯେଉଁ ସୁନାମ ତମର

ଅଛୁ, ସେଇଟା ଗିବ କୁଅଡ଼େ ।" ସମରେନ୍ଦ୍ର ଟିକଏ ଅପ୍ରତିଭ ହୋଇ ହସିଲେ । ଲଜ୍ଜିତ ଗଳାରେ କହିଲେ, "ସେଇଟା ସତରେ ଗୋଟାଏ ବଡ଼ ଦୁର୍ଗୁଣ ମୋର । ଲୋକଙ୍କୁ ଅବିଶ୍ୱାସ କରିବା ଶିଖି ପାରିଲିନି । ତେବେ ତା'ର କଥା ବାର୍ତ୍ତାରୁ ମୁଁ ଯାହା ଅନୁଭବ କରୁଛି, ସେ ଠକିବନି । ମୋର ଧାରଣା ଲୋକଙ୍କୁ ଅବିଶ୍ୱାସ କରିବା ଅପେକ୍ଷା ବିଶ୍ୱାସ କରିବାରେ ଲାଭ ଅଧିକ ।

"ସେଇଟା ତ ସାଇକୋଲଜିକାଲ, ସେ ସବୁବେଳେ ଠକାମିରେ ପଡ଼େ, ଏଇପରି ଏକ ଦର୍ଶନ ତାକୁ ମନୋବଳ ଦିଏ । ଆଶ୍ୱାସନା ବି ଦିଏ । ଜୀବନ ପ୍ରତି ଏ ପ୍ରକାର ମନୋଭାବ ବେଶ୍ ଅଭିନନ୍ଦନୀୟ । ତେବେ ଏଥିରେ ଯାତନା ଅଧିକ ।"

"ପ୍ରାକ୍ଷବିକ କିନ୍ତୁ ଯାତନା କୋଉଁଥିରେ କମ୍ ମୁଁ ବି ବୁଝି ପାରୁନି ସୌମ୍ୟା, ଜୀବନଟା ତ ଯାତନାର ଏକ ନିର୍ଯ୍ୟାସ । କିଏ ରକ୍ଷାପାଇଛି, କାହାକୁ ଶାନ୍ତି ମିଳିଛି ! ଭୋଗ, ତ୍ୟାଗ, ଅନଶନ, ପ୍ରାଚୁର୍ଯ୍ୟ-କୋଉଥିରେ ଯାତନା ନାହିଁ ମୋତେ କହି ପାରିବ କି ? ତେବେ ବିଭିନ୍ନ ଅବସ୍ଥାରେ ଯାତନାର ବୈଷମ୍ୟ ଭିନ୍ନ ଭିନ୍ନ । କେତେବେଳେ ତାହା ସ୍ୱାଦୁଯୁକ୍ତ, କେତେବେଳେ ତିକ୍ତ, କେତେବେଳେ ପ୍ରତିକ୍ରିୟାବିହୀନ ତ ଆଉ କେତେବେଳେ ମିଶ୍ର ।

"ମରତେ ଜନ୍ମ ପାଇ କେ ଅଛୁ କହ
ଯାତନା ଜାଳୁନାହିଁ କା ମନ ଦେହ ?

"ଓଃ ଚମତ୍କାର କମ୍ପୋଜିସନ, ସାଙ୍ଗେ ସାଙ୍ଗେ କବିତା । ମୁଁ କିନ୍ତୁ ଦେଖୁଛି ତମେ ବଡ଼ ଭାବପ୍ରବଣ ହୋଇଉଠ । ଗ୍ରେଟ ଗ୍ରେଟ କଥାରେ ଏତେ ଟଚି ହେଲେ ଚଳିବ ।"

ଲେଖକ ପାଇଁ ସେ ଟିକିଏ ଗ୍ରେଟିଆ କଥା ଭାରି ଦାମିକା । ସେଇ ଅବିଶ୍ୱାସ ବିଶ୍ୱାସର ରୋମନ୍ଥନ କରି ମୁଁ କୂଳ କିନାରା ପାଉନି । ସେଇଥିପାଇଁ ବିଶ୍ୱାସଟା ମୋ ପାଖରେ ସହଜରେ ଗ୍ରହଣୀୟ ହୋଇଯାଇଛି । ମୋର ଗୋଟାଏ କାହିଁକି ବଦ୍ଧମୂଳ ଧାରଣା, ମନମଧ୍ୟରେ ଅବିଶ୍ୱାସଟା ସୃଷ୍ଟି ହେଲେ ଦୂର ଯାସପର ବଳି ବିସ୍ତାର କରେ । ଅବିଶ୍ୱାସ କରିବାର ପ୍ରବଣତା ମଣିଷ ଭିତରେ ସୃଷ୍ଟି ହୋଇଯାଏ, ତେବେ ଏହା ଥରେ ସୃଷ୍ଟିହେଲେ ଥାନ ଅଥାନ, ଯୋଗ୍ୟ, ଅଯୋଗ୍ୟ, ଭଲ ମନ୍ଦ, ପାତ୍ର ଅପାତ୍ର କିଛି ବିଚାର କରେନି, ଶେଷରେ ନିଜ ପ୍ରତି ବି ଅବିଶ୍ୱାସ ଆରମ୍ଭ ହୋଇଯାଏ । ମଣିଷ

ଦୂର୍ବଳ ହୋଇଯାଏ, ସେଇଥିପାଇଁ କୁହାଯାଏ, "Faith cures the malady of life and makes it strong and radiant ;"

"ମୁଁ ଅସ୍ୱୀକାର କରୁନ, ତେବେ ଆଦର୍ଶ ଓ ବାସ୍ତବତା ଭିତରେ ଗୋଟାଏ କମ୍ପ୍ରୋମାଇଜ୍ ମୁଁ ଗ୍ରହେଁ । ହସି ହସି କହିଲେ ସୌମ୍ୟା । ଦରଫୁଟା କଣା କଢ଼ିର ହସ ଅଧା ଛଡ଼ା, ଅଧାଭିଡ଼ା ।"

"ସୌମ୍ୟା, ମଣିଷର ମନ ଦୁର୍ଭେଦ୍ୟ ଏକ ଘଞ୍ଚ ଅରଣ୍ୟ । ସେଠାରେ ନାନା ଧାରଣାର କଣ୍ଟା ଝୁଞ୍ଚ, ଲତା ଗୁଳ୍ମ, କ୍ଷୁଦ୍ରାଦପିକ୍ଷୁଦ୍ର ବନ୍ୟବନ୍ତ ବୃକ୍ଷରାଜି ଅଛନ୍ତି । କାମନାର ବହୁ କୃଷ୍ଣସର୍ପ ତା' ମଧ୍ୟରେ ବିଚରଣ କରୁଛନ୍ତି । ହିଂସା, କ୍ରୋଧ, ଈର୍ଷାର ହିଂସ୍ରଜନ୍ତୁଗୁଡ଼ାକ ରଣ ତାଣ୍ଡବ ମଧ୍ୟରେ ମାତିଛନ୍ତି । ମୋର ଧାରଣା ବିଶ୍ୱାସର ଅଗ୍ନି ଉତ୍ସବ ତା' ମଧ୍ୟରେ ଜ୍ୱଳିଲେ ଏ ଗୁଡ଼ାକର ଉତ୍ପାତ କମିଯାଆନ୍ତା ।

"କିନ୍ତୁ ବହୁ କଳାମୟୀ କୁରଙ୍ଗୀ ବି ତା ମଧ୍ୟରେ ଅଛନ୍ତି । ପ୍ରଣୟ-ପିପାସୀ ପକ୍ଷିଯୁଗଳ ବି ନୀଡ଼ ରଚନା କରିଛନ୍ତି, କୁଳାୟ କୋଳରେ ପକ୍ଷୀ ଶାବକମାନଙ୍କର କାକଳି ଗୁଞ୍ଜନ ଉଠୁଚି, ମଧୁ ମକ୍ଷିକାର ମଧୁଚକ୍ର ବି ଅଛି, ପୁଷ୍ପିତ ପୁଷ୍ପର ବାସ ବିଳାସ ବି ରହିଛି । ଯେହି ଅଗ୍ନିଦାହ ଏମାନଙ୍କୁ ସ୍ପର୍ଶ କରିବନି ନା କଣ ।"

"ବିଶ୍ୱାସ ଅଗ୍ନିର ଦହନ ଶକ୍ତି ଅଦ୍ଭୁତ; ଏହା କେବଳ ମନର ମ୍ଳାନିମାକୁ ଦହନ କରେ, ଶରୀରକୁ ସ୍ପର୍ଶ କରେନା, ପ୍ରଣୟକୁ ପଲ୍ଲବିତ କରେ, ସ୍ନେହ, ଶ୍ରଦ୍ଧା ସଦ୍‌ଭାବନାକୁ ପରିପକ୍ୱ କରେ ।"

"କିନ୍ତୁ ମୁଁ ଦେଖୁଚି ଏ ସଂସାରଟାରେ ବିଶ୍ୱାସ ମିଥ୍ୟା, ଅବିଶ୍ୱାସ କେବଳ ସତ୍ୟ । ଅବିଶ୍ୱାସର ତରଙ୍ଗାୟିତ ସମୁଦ୍ରରେ ବିଶ୍ୱାସର ତରଣୀ ବୁଡ଼ିବାକୁ ପଡ଼ିବ ।"

"ଅସ୍ୱୀକାର କରୁନ ସୌମ୍ୟା, ସେଇ କ୍ଷୁଦ୍ର ତରଣୀ ଭିତରେ ବିଶ୍ୱାସର ଯେଉଁ ବିରାଟ ସମୁଦ୍ରଟି ରହିଛି, ତାହା କୌଣସି ଦକ୍ଷ ନାବିକର ସ୍ପର୍ଶ ପାଇଲେ ଅବିଶ୍ୱାସ ସମୁଦ୍ରକୁ ଜୟ କରିପାରିବ ।" ଏଠାରେ ଏକକ ଭାବରେ ନାବିକ କିମ୍ବା ନୌକାର ଅସ୍ତିତ୍ୱ ବିଚାର କରାଯାଇ ପାରେନା । ଏଥିପାଇଁ ସହଯୋଗ ଦରକାର ।"

“ମୁଁ ତ ଯେଇ କଥା କହୁଚି, ସେଇ ସଂସ୍କୃତର ଅଭାବ ହେଲେ ନୌକାଟିର ସଲିଳ ସମାଧି ନିଶ୍ଚୟ । ଯେଉଁ ଲୋକଟିକୁ ନିର୍ବିଘ୍ନରେ ଏତେ ଟଙ୍କା ବଢ଼ାଇ ଦେଲେ, ତାର ଯଦି ତମ ସହିତ ମାନସିକ ସଂହତି, ଆଦର୍ଶଗତ ସାମଞ୍ଜସ୍ୟ ନରହେ, ତା' ହେଲେ ପରିସ୍ଥିତି କ'ଣ ହେବ ବୁଝୁଚ ତ । ସବୁଶ ଟଙ୍କା ପାଇଁ କହୁନି, ସେ ମନୋଭାବ ପାଇଁ କହୁଚି ।

ସମରେନ୍ଦ୍ର ହସିଲେ । ବାତାୟନ ଭେଦକରି ଝୁଲୁଝୁଲୁଆ ପବନଟା ଘର ଭିତରେ ମଲ୍ଲୀଗନ୍ଧ ପରଷୁଥିଲା । ଆକାଶର ବିସ୍ତୃତ ନୀଳିମା ଆଡ଼କୁ ଚାହିଁଲେ ··ଏ କ'ଣ ବିଶ୍ୱାସର ପ୍ରଲେପ ନୁହେଁ ! ଆଦିମ ଯୁଗରୁ ଏଇ ପ୍ରଶାନ୍ତିମାର ପ୍ରଲେପ, କାହିଁତ ଫିକା ପଡ଼ୁନି । ନା···ନା···ବିଶ୍ୱାସ ସତ୍ୟ, ଅବିଶ୍ୱାସ ମିଥ୍ୟା ··ମିଥ୍ୟା ।

□□□

# ୨

"ରଥ ଆପଣେ ଅଛନ୍ତି ?"

"କିଏ ?"

"ଏ...ମୁଁ ଆସିଚି, ଟିକିଏ କାମଥିଲା · ବାହାରକୁ ଆସନ୍ତୁ ।"

"କବାଟ ଖୋଲିଲା, ଝିଅଟିଏ ହସିହସି ପଚାରିଲା, "ମଉସାଙ୍କୁ ଖୋଜୁଛନ୍ତି !"

"ହଁ...ସେ କଣ ନାହାନ୍ତି କି ?"

"ଅଛନ୍ତି ସେ ଭଙ୍ଗ ବାଟୁଛନ୍ତି ।"

ହଠାତ୍ ରୁକ୍ଷ ଗଳାରେ ଏକ କମ୍ପନ ଶୁଣାଗଲା, "ମିନୁ ! ତୁ କଣ କାହାକୁ କହୁଚୁ, କହ ଦାଣ୍ଡଘରେ ବସନ୍ତୁ, ସେ ପୂଜାରେ ବସିଛନ୍ତି ।"

ସମରେନ୍ଦ୍ର ପାଇକେଲଟି କାନ୍ଥକୁ ଆଉଜେଇ ଦେଇ ଦାଣ୍ଡଘରେ ଯାଇ-ବସିଲେ । ଖଣ୍ଡିଏ ଗ୍ରେଟିଆ ଚୌକି ପଡ଼ିଚି । ଗୋଡ଼ ଘୁରଟା ଶିଶୁକାଠ, ହାତ ଧଇଟା ଅସନ, ପଟାଟା କ୍ରୁରୁମ । ଗୋଟାଏ ହାତ ହଲହଲ ହେଉଚି । ସେ ସାବଧାନ ହୋଇ ବସିଲେ । ଭାବିଲେ, ପିଲଟା ବୋଧହୁଏ ଜାଣିନି, ଭଙ୍ଗ ବାଟୁଛନ୍ତି ବୋଲି କହିଦେଲା । ପୁରୋହିତେ ପୂଜାରେ ଥିବେ । କୌତୂହଳ ଭିତରେ ସାରା ଘରକୁ ସେ ଲକ୍ଷ୍ୟକଲେ । ଘରଟି ଲମ୍ବପ୍ରସ୍ଥ ଖୁବ୍ ମପାଚୁପା । ବୋଧହୁଏ ପୁରୋହିତେ ଏଇଘରେ ଶୁଅନ୍ତି, କାନ୍ଥର ଗୋଟିଏ କୋଣରେ ବିଛଣାପତ୍ର ଗୁଡ଼ାଇହୋଇ ରହିଛି । ଚୂନ ଧଉଳା କାନ୍ଥର ଗୋଟିଏ ଅଂଶରେ ମୁଣ୍ଡର ତେଲ ଚକଟା ଚିହ୍ନ ଓ ଠିକ୍ ତାର ବିପରୀତ ଦିଗରେ ଆରକାନ୍ଥରେ ପାଦ ଓ ଅଙ୍ଗୁଳିର ଚିହ୍ନ । ବୋଧହୁଏ ସେ ଶୋଇଲା ବେଳେ ମୁଣ୍ଡ ଓ ପାଦ କାନ୍ଥରେ ବାଜି ବାଜି ଏ ଦାଗ ରହିଯାଇଛି । କାନ୍ଥ ଦେହରେ ବି ପାନପିକର ଧାର କେତେ

ଜାଗାରେ ଲମ୍ବିଛି । ବୋଧହୁଏ ନଅନ୍ତରେ ପୁରୋହିତେ ଉ ଚିନପାଶ ଏଇ କାନ୍ଥରେ ପକାଇ ଦିଅନ୍ତି ।

ସମରେନ୍ଦ୍ର ସେଇ ଦାଗଗୁଡ଼ାକୁ ଗୃହି ମନେ ମନେ ଭାବୁଥାନ୍ତି । "ଛୁଇଁ ଦେଲେ ଚିହ୍ନ ରହିଯାଏ", ଏହା ସଂସାରର ଏକ ନିୟମ, ମନକୁ ଯେତେ ଭାବନା ଛୁଏଁ, ସେ ସବୁ ତା' ଭିତରେ ଗାର କାଟିଦେଇ ଯାଏ। ବସ୍ତୁକୁ ଛୁଇଁଦେଲେ ସ୍ପର୍ଶ ଚିହ୍ନ ରହିଯାଏ ।

ଗୁଆପୋକ ଗୁଡ଼ାକ ଚୌକି ସନ୍ଧିରୁ ବାହାରି କାମୁଡ଼ିବା ଆରମ୍ଭ କଲେଣି । ସମରେନ୍ଦ୍ର ଅତିଷ୍ଠ ହେଲେଣି, ଚୌକିଟି ବଦଳାଇ ଦେବାର ବି ସୁବିଧା ନାହିଁ । ଆଖି ପଡ଼ିଲା ତେଲଚିକଟା ତକିଆ ଉପରେ । ଆସରନ୍ତି ଦାଗର ସୂ ତ ବହନ କରିଚି । ମନେହୁଏ, ପୁରୋହିତେ ନିଦ୍ରାମଗ୍ନ ଥିବାବେଳେ ତାଙ୍କ ପାଟିରୁ ବହି ଆସିଥିବା ପାନବୋଲ ଓ ଗୁଆପୋକର ରକ୍ତ ଚିହ୍ନ ଲାଗିଛି । ତକିଆତଳେ ଚଲମଟିଏ ଅଧାଲୁଗ୍ନ ଅବସ୍ଥାରେ ଅଛି । ସମସ୍ତେ ଶୋଇଲାପରେ ପୁରୋହିତେ ବୋଧହୁଏ ନିଭୃତରେ ଏ ଘରେ ଚଲମ ଟାଣନ୍ତି । ଏଇଥିପାଇଁ ବୋଧହୁଏ ଦାଣ୍ଡଘରଟି ତାଙ୍କର ବାନପ୍ରସ୍ଥାଶ୍ରମରେ ପରିଣତ ହୋଇଛି ।

ସେଇ ଝିଅଟି ପୁଣି ଥରେ ଆସିଲା । ରବନସନ୍ ବାର୍ଲିଡ଼ବାର ଖୋଲରେ ଦୁଇଖଣ୍ଡ ପାନ, ପାଖକେ ଗୁଣ୍ଡି । ସେ କହିଲା, "ଆଜ୍ଞା, ପାନ ଖାଆନ୍ତୁ । ମୁଁ ପୁଣି ଚା' ଆଣିବି ଯେ, ଷୀରନାହିଁ ଯେ ମାଉସୀ ପେଡ଼ାଟାଏ ଗୋଳେଇ ଚା'ରେ ପକାଉଥିଲେ ।"

"ବାଃ···ତୁ ଭାରି ବଢ଼ିଆ ଝିଅଟାଏ, ମୋ ଲାଗି ଏତେ କାମ କରୁଚୁ, ଯା' ଘରେ କହିଦେବୁ ମୋ ଲାଗି ଚା' କରିବେନି, ମୁଁ ଖାଏନି ।"

ପିଲାଟି ହସିହସି ଖୁବ୍ ଆତ୍ମୀୟତାର ସ୍ୱରରେ କହିଲା, ବାବୁ ! ସତରେ କ'ଣ ମୁଁ ବଢ଼ିଆ ପିଲା । ମାଉସୀ ତା'ହାଲେ ମୋତେ ଜାଣିପାରୁନାହାନ୍ତି, ସବୁବେଳେ କହୁଛନ୍ତି, "ରୁଟା ବୋକାଟା, ଭଲବୁଦ୍ଧି କିଛି ନାହିଁ ।" ଏଇ ଦେଖନା, ମୁଁ କହିଦେଲି ମଉସା ଭାଙ୍ଗ ବାଟୁଛନ୍ତି ବୋଲି । ଦେଖିଲାବେଳକୁ ଚନ୍ଦନ ପେଡ଼ରେ ଚନ୍ଦନ ଘୋରୁଥିଲେ ଠାକୁରଙ୍କ ଘରେ । ଅନ୍ଧାରୁଆ ଘରଟା ତ, ଜଣାଗଲାନି । ଭାଙ୍ଗବଟା ଶିଳଟା ଚନ୍ଦନ ପେଡ଼ି ପାଖରେ ବି ଅଛି ।

"ମିନୁ, ତୁ ମୁଁଆଡ଼େ ଗଲୁ ସିଆଡ଼େ ଲାଗିଲୁ...ନେ ନେ ଖା'ନେ । କାଲେ ବୋକୀ, ପାନଟିକ ଆଗେଦେଇ ଦେଲୁକ, ଖା'ସିନା ଆଗ ଦେଇଥାନ୍ତୁ, କେବେ ଶିଖିବୁ !

ମାଉସୀ ! ବାବୁ ଖା' ଖାଅନ୍ତି ନ···ଖା' ଦରକାରନାହିଁ ।

ଏତକବେଳେ ପୁରୋହିତେ ଠାକୁରଙ୍କ ଘର ଭିତରୁ ବାହାର ଆସି ତୁଳସୀ ଚଉରାରେ ପାଣି ଦେଇ ସୂର୍ଯ୍ୟଙ୍କୁ ସ୍ତୁତି ଆବୃତ୍ତି କଲେ

ଓଁ ଜବାକୁସୁମ ଶଙ୍କାଶଂ କାଶ୍ୟପେୟ ମହାଦ୍ୟୁତଂ
ଧ୍ୱାନ୍ତାରି ସର୍ବ ପାପଘ୍ନ ପଣ ତେତୋସ୍ମି ଦିବାକରଂ ।

କାମସାର ସେ ଆସି ପହଞ୍ଚିଲେ ।

"ଆଜ୍ଞା ନମସ୍କାର ।"

"ଅଟସ୍ମାଭର ଶତ ଜୀବନ୍ତରସ୍ତୁ ।"

"ଆଉ, ଆପଣ କଣ ପୁଣି ଚାଲିଆସିଲେ, ମୁଁ ତ ଜବାବ ଦେଇଛି, କଷ୍ଟସ୍ତ ଆପଣଙ୍କ କାମଟା ତୁଲାଇବ, ଆସିଲେ କାହିଁକି ?"

"ଆପଣ କହୁଥିଲେ ନା ନିଜେ ଯାଇ ପାରିବେନି ବୋଲି, କାହାକୁ ପଠେଇବାକୁ କହୁଥିଲେ, ନିଜେ ଯିବେ ବୋଲି ଅନୁରୋଧ କରିବାକୁ ଚାଲିଆସିଲି !"

"ଘର ଶୁଭ ପକାଇବାଟା ଅତି ମାମୁଲି କାମ, ଯିଏ ଯିବ ସେ ଚଳେଇବ । ସେଥିରେ କଣ ଅଛି ଯେ ଆପଣ ଏତେ ବ୍ୟସ୍ତ । ବିବାହ, ବ୍ରତ, ଦୁର୍ବଳକାମ ଗୁଡ଼ାକ ତୁଲାଇବା ଭାରି କଷ୍ଟ । ମୋର ଜଣେ ଛାତ୍ରକୁ କହୁଛି, ସେ ଯାଇ କାମ କରିଦେବେ । ଆପଣ ଇଆଡ଼େ ଆସିବା ଭିତରେ ହୁଏତ ସେ ପହଞ୍ଚିଯିବେଣି । ତାଙ୍କର କଣ୍ଠ ଖଣ୍ଡିକ ଯେମିତି ମଧୁର, ଉଚ୍ଚାରଣ ସେମିତି ସ୍ପଷ୍ଟ । ସଂସ୍କୃତ ଟୋଲରେ ଆଚାର୍ଯ୍ୟ ଶେଷବର୍ଷରେ ପଢ଼ୁଛନ୍ତି । କିଛି ଅସୁବିଧା ହେବନି । ମୁଁ ତ ଆଗରୁ ଜଣକୁ ଜବାବ ଦେଇଛି ବିଶ୍ୱଘର କାମ ଚଳେଇବାକୁ । କିଛି ଭାବବେନି ।

ସମରେନ୍ଦ୍ର ମନ ଦୁଃଖରେ ଫେରିଲେ । ଭାବୁଥାନ୍ତି, ସମାଜରେ ଏଇ ନିଷ୍ଠାବାନ ବ୍ରାହ୍ମଣଙ୍କ ଆତ୍ମ୍ୟାଗର ବି କମ ନୁହେଁ । ଭଙ୍ଗା ସାଇକେଲର

ପେଣ୍ଡାଲଟିରେ ବହୁତ ଧୂନରୁ ତେଲ ଧୂଆଁ ଯାଉଥାଏ, ତା ଭିତରୁ ଏକ କର୍କଶ ସ୍ୱର ଭାସି ଆସି ମନର ଭାବନା ସହିତ ମିଶି ଯାଉଥାଏ । ଘରକୁ ଫେରିଆସି ଶୁଣିଲେ ପୁରୋହିତେ ଜାଗାଠିକୁ ଗଲେଣି । ସମରେନ୍ଦ୍ର ପୂଜା ଜିନିଷ ନେଇ ଏକ ନିଃଶ୍ୱାସରେ ଛୁଟିଲେ, ମାହେନ୍ଦ୍ରବେଳ ଉଚ୍ଛୁର ଯିବ । ଏକ ନିଃଶ୍ୱାସରେ ଚାଲିଲେ ଠିକ୍ ସମୟରେ ପୂଜା କାମ ଆରମ୍ଭ ହେଲା । ଶୁଭ ପଡ଼ିଲା । ପୂଜା ଶେଷରେ ଦେଖାଗଲା କେହି ଜଣେ ଝାଲନାଲ ହୋଇ ସେଇଆଡ଼କୁ ଦଉଡ଼ୁଛି ।

"ବାବୁ ଟିକିଏ ରହନ୍ତୁ, ମୁଁ ଯାଉଛି···ଯାଉଛି ··!" ନିକଟରେ ଆସି ପହଞ୍ଚିଗଲା ।

"ଏଁ ଏ କ'ଣ କଲେ ବାବୁ ! ପୂଜା ପାଖରେ ମିସ୍ତ୍ରୀର କରଣୀ କାହିଁ ? ନୂଆ କରଣୀ ପୂଜା ହୋଇଥାନ୍ତା, ସେଇଥିରେ ଘର କାମ କରା-ଯାଇଥାନ୍ତା । ଅସଲ ଶୁଭ ତ ବିଗିଡ଼ି ଦେଲେ, ଆଉ କ'ଣ ରହିଲା ।" ମୋତେ ତ ଆପଣ ଆଡଭାନ୍ସ ଦେଇଥିଲେ, ମୁଁ ତ ସବୁ ଯୋଗାଡ଼ କରିଥିଲି, ଖବରଟାଏ ବି ଦେଲେନି, କାମ କରିଗଲେ । ଯାହା ହେବାର ତ ହେଲାଣି, ଚାଲନା, ମୋର ଏ କରଣୀଟି ପୂଜା କରିଦେଲି ।"

ପୁରୋହିତେ ବାବୁଙ୍କ ମୁହଁକୁ ଚାହିଁଲେ ନିର୍ଦ୍ଦେଶ ପାଇଁ । କିଛି ବି ଇଙ୍ଗିତ ମିଳିଲାନାହିଁ । ସେ ନୀରବରେ ଛିଡ଼ାହୋଇ ରହିଲେ ।

"ଛିଡ଼ାଟା ହୋଇଛ କ'ଣ ମ ! କରଣୀଟା ନେବ ତ, ପୂଜାକରିଦେବ ! ବିନା କରଣୀରେ ଶୁଭ ପଡ଼ିବାର କୋଉଠେ ଦେଖିଛ ! କେବେକୁ ଶିଖିବ, ବାମ୍ଭଣ ପିଲା ହୋଇଥିଲେ ସିନା ଏ ସବୁ ମାଲୁମ ଥାଆନ୍ତା । ଆରେ ନିଅନା···ବଢ଼ାଅ । କରଣୀରେ ସିନ୍ଦୂର ଲଗାଅ, ଅକ୍ଷତ, ଫୁଲ ବରକୋଳି ପତ୍ର ଦେଇ ପୂଜାକର । କୁହ "ହେ ବିଧାତାର କରଣୀ, ତମ ସୃଷ୍ଟି ମଙ୍ଗଳମୟ ହେଉ ।" ଶ୍ଳୋକରେ କୁହ, ମୁଁ ତ ଜନ୍ମରୁ ମେଟ୍ରିକଯାଏ ପଢ଼ିଛି, ଅନୁବାଦ କରି କରିପାରିବି ।"

"ବାବୁଙ୍କ ଇଙ୍ଗିତ ପାଇ ପୁରୋହିତେ କରଣୀଟାକୁ ତା ହାତରୁ ଆଣି ଥୋଇଲେ । ପୂର୍ବାଭିମୁଖୀ କରି ପୂଜାକଲେ । ପୂଜା ଶେଷହେଲା । ସମରେନ୍ଦ୍ର ସତ୍ୟସୁନ୍ଦରର ମୁହଁକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଥାନ୍ତି; କିନ୍ତୁ ପ୍ରତିବାଦ କରିବାର ଶକ୍ତି ସତେ ଯେପରି ସେ ହରାଇଛନ୍ତି, ଯେପରି ଅନୁଭବ

ଝଟଲ । ତାଙ୍କ ମନ ଭିତରେ ଗୋଟାଏ ପ୍ରବଳ କମ୍ପନ ସୃଷ୍ଟି ହେଉଥିଲା । ଗଛଟା ଝଡ଼ ପବନରେ ଦୋହଲି ଗଲେ ତା ଭିତରେ ବସା ବାନ୍ଧି ରହୁଥିବା ପକ୍ଷୀଗୁଡ଼ାକ ଯେପରି ଆର୍ତ୍ତ ଚିତ୍କାର କରନ୍ତି, ତାଙ୍କ ମନର ଯନ୍ତ୍ରଣାଯୁକ୍ତ ଭାବନାଗୁଡ଼ାକ ସେଇପରି ଭିତରେ ଆର୍ତ୍ତ ଚିତ୍କାର କରୁଥିଲେ ।

"ଆଚ୍ଛା, ବାବୁ ସତ୍ୟସୁନ୍ଦର, ମୋତେ କହିଦେଇ ଗଲ ସେ ··ଗଲ, ମନ୍ଦିରେ ଆଉ ଦେଖା ସାକ୍ଷାତ ନାହିଁ, ବାସନାବାଉ ପୁଣି କମିତ ଚାଲି-ଆସିଲ !"

"ଆଜ୍ଞା, କଥାଟା ଠିକ୍ କୈଲଟା । ଆପଣ ଭଳିଆ କାର୍ଯ୍ୟବ୍ୟସ୍ତ ଯେ ଏତେଦିନ ପରେ ଆପଣଙ୍କ ସାକ୍ଷାତ ମୋ ଭାଗ୍ୟରେ ଜୁଟିଲା । ମୁଁ କ'ଣ କମ୍ ଥର ଘରୁ ·ଫେରିଚି । ଯେତେବେଳେ ପଚାରିଲେ ବାବୁ ନାହାନ୍ତି, ଟୁର୍ ରେ ଯାଇଛନ୍ତି, ବଜାରକୁ ଯାଇଛନ୍ତି, ଗାଁକୁ ଯାଇଛନ୍ତି, ଏଇମିତି ସବୁ ବେଳେ ଶୁଣିବାକୁ ପାଏ । ସକାଳେ ଏଇବାଟେ ଯାଉଥିଲି, ଦେଖିଲି ନାଗାଁଟା ସଫା ସୁତୁରା ହେଇଚି, ଭାବିଲି ଆଜିତ ଶୁଭଦିନ ଅଛି, ବାବୁ ବୋଧହୁଏ ଶୁଭ ପକାଇବେ । କାମକୁ ନ ଯାଇ ଘରକୁ ଫେରିଲି । ପୂଜା ଜିନିଷ ଯୋଗାଡ଼ କରି ବ୍ରାହ୍ମଣଙ୍କୁ ଡାକି ଏଇ ଲାଗର ପସର ହେଇ ଦଉଡ଼ୁଚି । ସେମାନେ ଚାଲି ଚାଲି ଆସୁଚନ୍ତି । ସବୁ ତ ସରିଗଲାଣି, ଯାଏ ; ତାଙ୍କୁ ବିଦା କରିଦିଏ ।"

"ପୁରୋହିତେ ଦକ୍ଷିଣା ନେଇ ଚାଲିଗଲେ । ସତ୍ୟସୁନ୍ଦର ବାବୁଙ୍କ ମୁହଁକୁ କୌତୂହଳ ଦୃଷ୍ଟିରେ ଚାହିଁ ପୁରୋହିତଙ୍କ ଯିବା ବାଟକୁ ଲକ୍ଷ୍ୟ କଲା । ତା' ପରେ ଗଲା ସଫାକରି କହିଲା, "ଆଜ୍ଞା, ମୁଁ ଦେଖିଲି ଆପଣ ଜଣେ ସଂସ୍କାରବାଦୀ ଲୋକ, ନିଜେ ବ୍ରାହ୍ମଣ ହେଲେ ବି ସେ ସଂକୀର୍ଣ୍ଣ କଣ୍ଟଆଣପଣ ନାହିଁ । ମୁଁ ଭାରି ଖୁସି ହେଲି ଆଜ୍ଞା, ବଡ଼ ଲୋକର ବଡ଼ ବେଭାର । ଏସବୁ ଉଠାଇ ଦେବା ବି ଦରକାର । ଯିଏ ବ୍ରହ୍ମଜ୍ଞ ରଖିପାରିଲା ସିଏ ବ୍ରାହ୍ମଣର କାମ କରୁ, ଜାତି ସାଙ୍ଗେ କିଛି ଯାଏ ଆସେ ନାହିଁ ।"

"କାହିଁକି କ'ଣ ହେଲା କି ସତ୍ୟସୁନ୍ଦର ?

"ସେ ଯେଉଁ ପିଲାଟା ଆସିଥିଲା ଭାରି ବଢ଼ିଆ ପିଲା । ଦଶ ପାଞ୍ଚ ଜାଗାରେ କାମ ଚଳେଇଲାଣି । ସ୍ୱର ଉତ୍ତମ, ଉଚ୍ଚାରଣ ସ୍ପଷ୍ଟ, ହେଲେ

ବାଭୁଣିଆ ଆଦବ୍ କାଇଦା ଠିକ୍ ଜାଣୁନ । ଜାତରେତ ପୁଣି ଗୋଟାଏ ଲକ୍ଷଣ ଅଛୁ ।"

"ଅଚ୍ଛା, ସେ ପିଲ କ'ଣ ବ୍ରାହ୍ମଣ ନୁହେଁ । ପଇତା ପକେଇଚ, ଚନ୍ଦା ଚନ୍ଦନ କରଚ । ବ୍ରାହ୍ମଣ ପିଲପର ତ ମାଲୁମ ହେଉଚ ।"

"ନାଁ ଆଜ୍ଞା, ସେ ମାଳି ପିଲ, ବ୍ରତହୋଇଚ, ବ୍ରାହ୍ମଣେର ସବୁ ଗନ୍ଧ କାନ୍ତ ରଖିଚ । ପ୍ରତିଦିନ ଠାକୁର ପୂଜା ନକଲେ ପାଣି ଛୁଇଁବନ, ତର୍ପଣ ନକଲେ ଭାତ ଖାଇବନ । ସଂଧ୍ୟା ହେଲେ ଗାୟତ୍ରୀ ପଢ଼େ । ବଷ୍ଟ, ବ୍ରତ କାମରେ ଠିକ୍ ଭାବରେ କାମକରେ । ଗୋଟେ ବଷ୍ଟଘର କାମରେ ସେ ଯାଇଥିଲ, ମନ୍ତ୍ର ପଢ଼ାରେ ବ୍ରାହ୍ମଣ ପୁରୋହିତ ହଟିଗଲ ପଛକେ ସେ ହଟିଲନ । ପାଠ ପଢ଼ିଛଟି, ଖାଣ୍ଟି ସଂସ୍କୃତ । ଆଜକାଲି ଗାଉଁଲି ପୁରୋହିତ ମଥିରୁ ମଙ୍ଗଳ ପଢ଼ିଦେଇ ପର୍ ତାଳମାରି କାମ ବଢ଼େଇ ଦେଉଛନ୍ତି ।"

"ଆଚ୍ଛା, ତମେ କମିତି ଏତେକଥା ଜାଣିଲ ?"

"ଆଜ୍ଞା, ମୁଁ ଏ କ୍ୟାପିଟାଲର ଚଳନ୍ତି ଇତିହାସ । ମୁଁ ସ୍ବାର ଜନ୍ମ ଦେଖିଚ ତା କୁଆଁ କୁଆଁ ଶବ୍ଦ ଶୁଣିଚ । ଏବେ ତ ତାର ମୁବାକାଳ । କ୍ୟାପିଟାଲ୍ ଗଜାଣ ଲ ପର ପଢ଼ୁଚ । ମୁଁ ତାର ଅନ୍ଧ କନ୍ଦରେ କେଉଁଠେ କଣ ହେଉଚ ସବୁ ଜାଣେ ।"

"ଏ ପଲ ପୁରୋହିତଙ୍କିଣ ଶିଟିଲ କମିତି ?"

ଆଜ୍ଞା, ଜଗନ୍ନାଥ ଦାସେ ଭାଗବତ ଲେଟିଲେ ପିତି । ତାଙ୍କ ପରଠୁ ସଂସ୍କୃତ ପାଠ ବ୍ରାହ୍ମଣଙ୍କଠୁ ଇତର ଲୋକଙ୍କପାଖକୁ ଗୁଲି ଆସୁଚ୍ଛୁ । ଅଜକାଲ୍ ପର୍ ସଂସ୍କୃତ ଟୋଲ୍‌ରେ ବ୍ରାହ୍ମଣ ପିଲ କମ୍, ଇତର ଜାତିର ପିଲ ବେଶି, ହରିଜନ ପିଲଏ ବ ସଂସ୍କୃତ ପଢ଼ିଲେଣି । ଯୋଉ ବ୍ରାହ୍ମଣ ପଣ୍ଡିତେ ଆଗେ ନାକ ଟେକୁଥିଲେ, ସେମାନେ ଏବେ ଏମାନଙ୍କ ମୁଣ୍ଡରେ ବସେଇଛନ୍ତି ।

"କାରଣ ?"

"କାରଣ କଣ ଆପଣ ଜାଣୁନାହାନ୍ତି । ବ୍ରାହ୍ମଣ ପିଲଏ ତ ଆଉ ସଂସ୍କୃତ ପଢ଼ିଲେନ, ଟୋଲ ସବୁ ଉଠିଯିବାକୁ ବସିଲ । ପଣ୍ଡିତମାନଙ୍କ ହାଂଡ଼ି ଉଡ଼ିଯିବାକୁ ବସିଲ, ଜ୍ଞାନ ମର୍ଜି ମିଳିଲେ ସିନା ରହିବ । ମନ ବଦଳିଲ, ବୁଦ୍ଧି ଫିଟିଲ, ଏବେପର୍ ଗାଁ ଗାଁ ବୁଲି ପିଲ ଯୋଗାଡ଼ କରୁଛନ୍ତି । ଜାତି ଅଜାତିର ବିଚାର

କିଛି ନାହିଁ । ହରିଜନ ପିଲାଏ ବି ସଂସ୍କୃତ ପଢ଼ିଲେ, ପଣ୍ଡିତ ହେଲେ, ସେ ବି କର୍ମ କର୍ମଣି ଚଳାଇଲେଣି । ଜଗନ୍ନାଥ ଦାସ ବାଟ ଫିଟେଇ ଦେଇ ଯାଇଛନ୍ତି । ଯୁଗ ବଦଳି ଗଲାଣି । ମୋ ସାନ ବୁଦ୍ଧିରେ ମୁଁ ଯାହା ଦେଖୁଚି ଜାତିଫାତି ଆଉ କିଛି ରହିବନି, ସେଇ ଭାଗବତ ବାଣୀ ସତ୍ୟ ହେବ ।

"ସର୍ବେ ହୋଇବେ ଏକାକାର
ନ ଥିବ ବେଦର ବିଗ୍ଭର ।"

ଆପଣ ଯାହା ଭାବନ୍ତୁ ପଛକେ ମୋ ମନ ଏଥିରେ ଭାରି ଖୁସି । ଯା' ହାତରେ ଯାହା ହେବ ସେ କରୁ । ଏଇ ତ ଦେଖିଲେ ମାଳିପିଲା ବି ଶ୍ଳୋକ ପଢ଼ି କିମିତି ମଜାରେ ପୂଜା କାମଟା ବଢ଼ାଇଦେଲା ସେ ପାଟିରେ ବାହୁନି ତ ବାଜିଲାନି । ଆପଣ ତ ବାହ୍ମଣ ଲୋକ, ଅବଶ୍ୟ ଭୁଲଚୁକ କଣ ହେଲା ବୁଝି ନ ଥିବେ ।"

"ଆଚ୍ଛା, ସେ ମାଳିପିଲା ଲୋକଙ୍କୁ ଠକୁଚି କାହିଁକି ପଇତାଟାଏ ପକାଇ ।"

"ବ୍ରାହ୍ମଣମାନେ ପଇତା ପିନ୍ଧିବେ । ପଇତା ନ ପିନ୍ଧିଲେ ତା ମନରେ ବ୍ରାହ୍ମଣର ଭାବ ଆସିବ କିମିତି । ସେଇଥିପାଇଁ ସେ ବ୍ରତ ହେଲା, ଦୀକ୍ଷା ନେଲା । ଆପଣତ ବ୍ରାହ୍ମଣ ପିଲା, ଆପଣଙ୍କ ପଇତା ହେଲେ ଟିକିଏ ମଇଳା, ଗୁଡ଼ିବ ପେଚ୍ଛାଏ ବନ୍ଧା ଯାଇଛି, ଦେଖିଲେ ତା ପଇତା କେଡ଼େ ତୋଫା । ଗୋରା ଦେହକୁ କିମିତି ମାନୁଚି । ତାକୁ ଦେଖିଲେ ବ୍ରାହ୍ମଣ ବୋଲି କିଏ ନ କହିବ ।"

"ଠିକ କହିଲ ସତ୍ୟସୁନ୍ଦର, ଯାହାକୁ ଯୋଉ କାମ ଭଲ ଲାଗୁଚି ସେ ସେଇକାମ କରିନେଲେ ଏ ଜାତିଆଣ ଭେଦଭାବ ଉଠିଯାଆନ୍ତା । ଆମ ଦେଶଟା ଯଦି ଛାରଖାର ହେବ କେବଳ ଏଇ ଜାତିଆଣଭାବ ପାଇଁ । ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଚି, ଯୋଉ ଲୋକଗୁଡାକ ପାଠଶାଠ ପଢ଼ି ଯେତେ ଉପରକୁ ଉଠିଛନ୍ତି, ତାଙ୍କ ପାଖରେ ଏ ସଂକୀର୍ଣ୍ଣତା ସେତେ ବେଶି; କିନ୍ତୁ ଦେଖିଲାବେଳକୁ ପିଲାଝିଲାଙ୍କୁ ବାଦ୍‌ଦେଇ ପାରୁନାହାନ୍ତି ଯେ ଗୋଟିଏ ଘରେ ସବୁ ଜାତିର ପ୍ରତିନିଧି ପହଞ୍ଚିଛନ୍ତି । ଜାତି ଆମକୁ ଗୋଇଠା ମାରୁଚି; କିନ୍ତୁ ଆମେ ଜାତି ମୋହଟା ଛାଡ଼ିପାରୁନୁ, ତାକୁ ଜାବୁଡ଼ି କରି ଧରୁଚୁ ।"

"ଆଜ୍ଞା, ବିଲକୁଲ ଠିକ୍ । ହେଲେ ଦିନେ ଦିନେ ମୁଁ ଶୋଇଲାବେଳେ ଏଇ ଜାତିଆଣ କଥାଟା ଭାବେ । ମନରେ କଥାଟା ବହୁତ ଗୋଡ଼େଇ ତୋଡ଼େଇ

ହୁଏ । ଗୁଣକର୍ମ ଅନୁଯାରେ ଜ'ତ ଗଢ଼ାଯାଇଥିଲା । ଏବେ ସେଇ ଆଡ଼କୁ ମୁହେଁଇ ଲଣି । ତେବେ ଯିଏ ଯା ଘରେ ଯେ ବାହାହେଇ ପଡ଼ୁଛନ୍ତି ସେଇଟାକୁ ମୁଁ କାହିଁକି ଭିତରେ ପସନ୍ଦ କରିପାରୁନି ।"

"କାହିଁକି ? ଅସୁବିଧା କ'ଣ ?"

"ମୁଁ ଭ୍ରେଷ୍ଟ ବୁଦ୍ଧିରେ ଭାବୁଚି, ରକ୍ତଟା ଯିମିତି ମିଶି ଯାଉଛି, ସିମିତି ମିଶିବା ଉଚିତ ନୁହେଁ । ତା'ହେଲେ ସମାଜରେ ଭଲ ମଣିଷ ଉଚ୍ଚଜ'ତିଆ ମଣିଷ ବାହାରିବେ ନାହିଁ । ଏଇ ଦେଖନ୍ତୁ ଗୁଡ଼ପାଣି, ମହୁପାଣି, ଚିନିପାଣି ସବୁ ତ ମିଠା; କିନ୍ତୁ ସମସ୍ତଙ୍କ ଗୁଣ କ'ଣ ସମାନ ? ଏକାଠି ମିଶିଗଲେ କାହାରି ଗୁଣ ରହିବନି । ଆଉ ବି ଦେଖନ୍ତୁ, ପିଇବା ପାଣିରେ ପିଇବା ପାଣି ମିଶିଲେ ବିଶେଷ କିଛି କ୍ଷତି ହେବନି; କିନ୍ତୁ ପିଇବା ପାଣିରେ ମଇଲା ପାଣି ମିଶିଗଲେ ହୁଏତ ମଇଲା ପାଣିର ରଙ୍ଗ ବଦଳି ଯିବ; କିନ୍ତୁ ତାକୁ ପି ଇ ହେବ କି ? ମୋ ବିଶ୍ବାସରେ ଜାତିଟା ଥାଉ, ଆଉ ନିଜ ଜାତି ଜାତି ଭିତରେ ବିବାହ ଚାଲୁ; କିନ୍ତୁ ଚଣ୍ଡାଳ ଯଦି ବ୍ରାହ୍ମଣର ଆଚରଣ କରି ବ୍ରହ୍ମଜ୍ଞ ରକ୍ଷିପାରିଲା, ଜ୍ଞାନ ପାଇପାରିଲା, ତେବେ ସେଇଟାକୁ ବାରଣ କରି ନ ଯାଉ ।"

"ତା' ହେଲେ ତମେ କହୁଚ ଯାହାର ରକ୍ତ ଶୁଦ୍ଧ ହେଇନି, ତା' ଭିତରକୁ ଶୁଦ୍ଧ ରକ୍ତ ପଶିବନି କି ତାହା ଶୁଦ୍ଧ କରିଯିବନି । ଯିମିତି ଚାଲିଚି ଚାଲିଥିବ ।"

"ଆପଣ ତ ଜାଣିବା ଶୁଣିବା ଲୋକ, ମୋଠୁ ବେଶି ଭାବିଥିବେ, ମୁଁ କ'ଣ ଅଧିକା ବୁଝେଇବି । ମଇଲା ପାଣିରେ ଭଲପାଣି ମିଶିଲେ ତାହା ମଇଲା ସିନା ହେବ, ଶୁଦ୍ଧ ହେବ କିମିତି । ଖାଲି ଆଖିକି ପାଣି, ସବୁପାଣି ସମାନ । ହେଲେ ତା' ଭିତରେ କ'ଣ ଅଛି ବିଗ୍ଭରିବାର କଥା । ମଇଲା ରକ୍ତରେ ପରିଷ୍କାର ରକ୍ତ ମିଶିଗଲେ ତାହା କଣ ପରିଷ୍କାର ହେଇଯିବ । ଗୋଟିଏ ଜାତିର ରକ୍ତ ପରିଷ୍କାର କରିବାକୁ ହେଲେ ତାକୁ ଉଠେଇବାକୁ ହେବ । ଯେ ଯେତେ ଉପରକୁ ଉଠିବ, ତାର ରକ୍ତ ସେତେ ପରିଷ୍କାର ।"

"ଓ—ତା'ହେଲେ ତମେ ସ୍ୱାସ୍ଥ୍ୟରକ୍ଷାର ଦୂଷିତ ରକ୍ତ ବିଶୁଦ୍ଧ ରକ୍ତ କଥା କହୁଚ ।"

"ସେକଥା କାହିଁକି କହିବି ଆଜ୍ଞା, କବିରାଜ, ଡାକ୍ତରୀ, ହୋମିଓପାଥି, ହାକିମି, କେତେ ଔଷଧ ବାହାରିଲଣି ରକ୍ତ ସଫା କରିବାକୁ । ଜାତିଆ ମଣିଷ କ'ଣ ତାକୁ ବ୍ୟବହାର କରୁନାହାନ୍ତି !"

"ଚମତ୍କାର କଥା ସବୁ କହୁଛ ସତ୍ୟସୁନ୍ଦର, ତମେ ଏକଥା ଟେକ୍ନୋଲଜି ଜାଣୁଛ କେମିତି । ଜଣେ ସାଧାରଣ ମିସ୍ତ୍ରୀ ଯଦି ଏ ପ୍ରକାର କ୍ରେନ୍ କରିପାରନ୍ତି ତା'ହେଲେ ତଳ ମନ୍ଦିର ଉପରକୁ ଉଠିବାକୁ ବେଶି ସମୟ ଲାଗିବନି । ତମେ ଟିକିଏ ସେମାନଙ୍କୁ ସାହାଯ୍ୟ କର । ଯାହାହେଉ ତମେ ଆସିଗଲ, ଭଲ ଲାଗିଲା । ତମ ବ୍ରାହ୍ମଣ ସାଙ୍ଗ ଆସିଥିଲେ, ଗଲେ କୁଆଡ଼େ ? ସେ ଯଦି ପୂଜା ଜିନିଷ ନେଇ ଆସୁଛନ୍ତି, ତାହେଲେ ଏଇଠିରେ ପୂଜା କରିଦେବା । ଠିକ୍ କଣ ?"

"ଭଲ ହୁଅନ୍ତା ଆଜ୍ଞା, ବ୍ରାହ୍ମଣର ପାଦଧୂଳି ଥରେ ପଡ଼ିଗଲେ ଭଲ, ମନରେ ଅବଶୋଷ ରହିବ କାହିଁକି ? ଥରକୁ ଦି'ଥର ପୂଜା, ଦି'ଥର ଭୋଗଖିଆ, ଠାକୁରଙ୍କର ଦି'ଥର ମନୋହି, ଦି'ଥର ସନ୍ତୋଷ, ବଢ଼ିଆ କଥା । ଶୁଭବେଳଟା ଉଣ୍ଡି ଗଲା । ଯାଉ, ଗଲେ କ୍ଷତିନାହିଁ, ଅଶୁଭ ବେଳେ ଶୁଭକାମ କଲେ ଅଶୁଭଟା ବି କଟିଯିବ । ମୁଁ ଅନୁମାନ କରେ, ସେମାନେ ବୋଧହୁଏ ପାଇଲେଣି । ଆଜ୍ଞା ଯାଇଦେଲଟା ଦେଖନ୍ତୁ ନା ।"

"କଉ ତମେ ଯେତେବେଳୁ ଆସିଲଣି ଏଥିଭିତରେ ସେମାନେ ପହଞ୍ଚି ସାରନ୍ତେଣି, ଏତେ ଡେରି କଣ ।"

"ମୁଁ ତ ଠିକ୍ ସେଇକଥା ଭାବୁଛି, ଆସିଥିଲେ ଏତେ ବେଳକୁ କାମଧାମ ଆରମ୍ଭ ହୁଅନ୍ତାଣି । ସନ୍ଦେହ ହେଉଛି ସେମାନେ ବୋଧହୁଏ ଫେରିଗଲେ ନା କ'ଣ । ଆମ ଏ ପୁରୋହିତଙ୍କୁ ଦେଖିଥିଲେ ଯେ କହିଥିବେ । ଆଚ୍ଛା, ଯାଇଦେଲ ଦେଲେ, ମୁଁ ଯାଏ ।"

ଆଉ ଯିବାର ଆବଶ୍ୟକତା ନାହିଁ ସତ୍ୟସୁନ୍ଦର । ଗଲେ ଫେରିବାକୁ ବହୁତ ବିଳମ୍ବ ହେବ । ପୂଜା ନ ହେଲା ନାହିଁ, ଥାଉ; ଥରେ ତ ହେଲାଣି ।"

"ନା, ଜିନିଷଗୁଡ଼ାକ କଣ ହେଲା, ଆଚ୍ଛା, ଆପଣ ଏଇଠି ବସିଥାନ୍ତୁ, ମୁଁ ଟିକିଏ ଆଗକୁ ଯାଇ ଦେଖେ ।"

ସମରେନ୍ଦ୍ର ଗୋଟିଏ ପଥର ଉପରେ ବସିଲେ । ସେ ତା'ର ଗଢ଼ବଧିକୁ ଲକ୍ଷ୍ୟ କରୁଥାନ୍ତି । ତାଙ୍କ ପାଖରେ ସତ୍ୟବାଦୀ ଏକ ବସ୍ତୁସ୍ଥ । ଘରଟିର ଶୁଭ ପଡ଼ିଲା ଜଣେ ଅବ୍ରାହ୍ମଣ ପୁରୋଧାଦ୍ୱାରା, ମନମଧ୍ୟରେ ସାମାଜିକ ସଂଶୟ ଓ ସଙ୍ଘାତ, ମାନସିକ ଦ୍ୱନ୍ଦ୍ୱ ଓ ଦୁର୍ବଳତା । କିନ୍ତୁ ଖରାପ ହୋଇଯିବ କି ? ପୁଣି ବୁଝିଲ ମନରୁ ଉତ୍ତର ଆସୁଥାଏ । "ଯେଉଁ ଜଳମଣ୍ଡା ଗଙ୍ଗୋଦ୍ଭ ଜଣାଇଛି ପୁରୋହିତ

ଅପେକ୍ଷା ଏହି ସମ୍ଭାରବାଦୀ ପିଲାଟିଦ୍ୱାରା ଶୁଭକାମନା ଜଣାଇ ନେବାରେ କ୍ଷତି କ'ଣ ? ଆଚରଣ ହିଁ ବ୍ରାହ୍ମଣ, କୁଳ ନୁହେଁ, ଗୋତ୍ର ନୁହେଁ । ଜୀବନଟା ଗୋଟାଏ ଷଣାପାଲ । ଗୁଲେନ୍ତୁଗୁଡ଼ାକ ପଞ୍ଜାକାଠି, ତା' ଉପରେ ଗଡ଼ୁଛି । ଇଏ ବି ଗୋଟାଏ ଗୁଲେନ୍ତୁ, ଦେଖିବା କଥାଟା କଣ ହେଉଚ, ମଣିଷ ମାଙ୍କେଇ ଅବସ୍ଥାର ଅଧୀନ ।"

ସତ୍ୟସୁନ୍ଦର ଫେରିଆସି କହିଲା, "ମୋ ସନ୍ଦେହ ଠିକ୍ । ସେମାନେ ଖବର ପାଇ ଫେରିଯାଇଛନ୍ତି ।"

ଯାତ୍ରା ହେବାର ହୋଇଛି···ବ୍ୟସ୍ତତାର କାରଣ ନାହିଁ, ମୁଁ ଆଉ ବେଶି ସମୟ ଅପେକ୍ଷା କରି ପାରିବିନି । ବାର ବାଜି ଗଲାଣି, ତମେ ଠାକୁରଙ୍କ ପାଖରେ ଭୋଗ ଚଢ଼େଇ ଦେଇ ପରେ ପିଲାମାନଙ୍କୁ ବାଣ୍ଟିଦେବ । ମୁଁ ଯାଏ, ତମ କରଣୀ ନିଅ ।"

"ଆଚ୍ଛା ଠିକ୍ ଅଛି, ଠାକୁରେ ଭୋଗ ପାଇଲେ ଗଲା, ମୁଁ ତ ବକ୍‌ସିସ୍ କିଛି ପାଇଲିନି । ହାତରୁ ଖର୍ଚ୍ଚ କରି ଆପଣଙ୍କ କାମ ପାଇଁ କରଣୀ କିଣିଲି, ସେଇଟା ଆପଣ କିଣିବା କଥା, ମିସ୍ତ୍ରୀକୁ ନୂଆ ଲୁଗା ପିନ୍ଧାଇ ବରଣ କରିବା କଥା । ଆପଣ ପାଞ୍ଚ ଜଣଙ୍କୁ ପଚାରନ୍ତୁ । ମିସ୍ତ୍ରୀ ଦିନ ତମାମ ଆପଣଙ୍କ ପାଖରେ ଅଟକିଲେ, କାମ କରିଥିଲେ ତ ପନ୍ଦର କୋଡ଼ିଏ ଟଙ୍କା ପାଇଥାନ୍ତା । ମୁଁ ତ ଏସବୁ ପାଇଁ ମଜୁରି ମାଗୁନି । ବକସିସ୍ ଆକାରରେ ସ୍ୱିବିଚନ୍ତ କିଛି ଦେବାର କଥା । ଆପଣଙ୍କ-ପରି ଏଡ଼େ ପଣ୍ଡିତ, ଏଡ଼େ ଦୟାଳୁ, ଏଡ଼େ ବସ୍ତ୍ରବନ୍ତ ଲୋକଙ୍କୁ ମୁଁ ପୁଣି ବତେଇବ କ'ଣ । ଲକ୍ଷେ ଟଙ୍କାର ଘରଟାଏ କରିବେ, ଯିଏ ଏ ମନ୍ଦିରଟିକୁ ଗଢ଼ିବ, ତାଙ୍କୁ ଦଶ ପଚିଶ ଦେଇଦେଲେ କ୍ଷତି କିଛି ନାହିଁ । ଘିଅ କୋଉଠି ପଡ଼ିବ ନା ମୁଗ ପଇତରେ ପଡ଼ିବ ।"

"ଏକାଥରକେ ଦଶପଚିଶ ଟଙ୍କା ! ତମେ କଣ ସତ୍ୟସୁନ୍ଦର ପଇସାକୁ ଗୋଡ଼ି ପଥର ବୋଲି ଭାବୁଚ କି ? ଆଡଭାନସ୍ ପଚିଶଟଙ୍କା ଦେଇଚ, ପୁଣି ପଚିଶ ।

"ଘର କାମରେ ଆଜ୍ଞା ପଇସାଗୁଡ଼ାକ ସତରେ ଗୋଡ଼ି ପଥର, ଆଉ ଗୋଡ଼ି ପଥର ଗୁଡ଼ାକ ସତରେ ପଇସା । ଏ ସତ୍ୟକୁ ଆପଣ ବଦଳେଇ ପାରିବେନି କି ମୁଁ ବି ବଦଳେଇ ପାରିବିନି । ତେବେ ଏଇ ମାମୁଲି ହିସାବଟା ଦେଖନ୍ତୁ-

ନାହାନ୍ତି, ଏଇ ଧରନ୍ତୁ କରଣୀ ଦଶଟଙ୍କା, ଲୁଗାପାଇଁ କୋଡ଼ିଏ ଟଙ୍କା, ଗାମୁଛାଟିଏ ଆଠଟଙ୍କା ଆଉ ଦକ୍ଷିଣା ନହାତ କମ୍‌ରେ ତ ଦଶଟଙ୍କା । ଏ ତ ଅଠଚାଳିଶ ଟଙ୍କା ହୋଇଗଲା । ପଚାଶ ଅଠଚାଳିଶ ଭିତରେ କେତେ ଫରକ । ଅଡ଼ଭାନସ୍ ହିସାବ ନଥିଲୁ, ଭୋଗରାଗ ଦଶଟଙ୍କା, କଳା ଦଶଟଙ୍କା, ମଜୁରି ସାତଟଙ୍କା, ଦଉଡ଼ି ପାଞ୍ଚ ଟଙ୍କା, ଗଜ୍‌ଗା ଆଠ ଟଙ୍କା, ପୂଜା ସାମଗ୍ରୀ ଦଶଟଙ୍କା । ପୁରୋହିତଙ୍କୁ ମୋ ହାତରୁ ଆଉର ପାଞ୍ଚ ଟଙ୍କା ଆଡ଼ଭାନସ୍ ଦେଇଛ ।"

"ହିସାବରେ ପାଠୁଆ ମିସ୍ତ୍ରୀ କ'ଣ ପଛେଇ ଯିବ, ହିସାବ ଅନୁସାରେ କୋଉ କାମଟି ହେଲା ?"

"ଆଜ୍ଞା, ସବୁ ହେଲା, ଖାଲି ଆପଣଙ୍କର ଯୋଗାଯୋଗଟା ଠିକ୍ ହୋଇଥିଲେ କାମ ବଳିପଡ଼ିଥାନ୍ତା । ନହେଲା କଣ···ଶୁଭ ବେଳଟାରେ ଆପଣ ଓ ମୋ ଭିତରେ କେତେଟା ପଇସା ପାଇଁ ଟଣା ଓଟରା ଭଲକଥା ନୁହେଁ । ଏ ସବୁ ମନ ଖୁସିର କଥା ଯା ମନ ଯେତେ ତା ପ୍ରଭୁ ତେତେ । ନୂଆ ଲୁଗାଖଣ୍ଡେ ପାଇଥିଲେ କୁଞ୍ଚ ହଲେଇ ହଲେଇ ରାସ୍ତାରେ ବୁଲିଥାନ୍ତି, ଆପଣଙ୍କ ବାନା ଉଡ଼ନ୍ତା । ନୂଆ କରଣୀଟା ହାତରେ ଧରିଥିଲେ ଲୋକେ ଜାଣିଥାନ୍ତେ ଲକ୍ଷ୍ମୀ ଠାକୁରାଣୀ ମିସ୍ତ୍ରୀ ହାତରେ ବଜେ କରୁଛନ୍ତି । ବକ୍‌ସିସ୍ ପାଇଥିଲେ ନୂଆ ଯୋତାହଲେ କିଣିଥାନ୍ତି, ଗୋଡ଼ ତ ସିମେଣ୍ଟ ଖାଇ ଯାଇଛି । କିଛି ନ ଦେବେ ନାହିଁ, ମୋ ମନରେ ଦୁଃଖ ନାହିଁ, ଯା ବୋଲି ଶୁଭକାମଟା ଗ୍ରହଣ କରିବେ ନାହିଁ । ଚିରା ଯୋ'ତା, ଫଟାଲୁଗା, ଭଙ୍ଗା କରଣୀରେ ହେଲେ ବି ଆପଣଙ୍କ କାମ ଚଳେଇବି । ସେ ସବୁ ଆଉ ଜଣେ ବାବୁଙ୍କ କାମରୁ ପାଇଥିଲି ।"

"ତୁମକୁ କଥାରେ ଜିଣିବା ବଡ଼ କଷ୍ଟକର ସତ୍ୟସୁନ୍ଦର ।"

"ମୋତେ ଏକା ନୁହେଁ ଆଜ୍ଞା, ମିସ୍ତ୍ରୀ ମାନେଇ ଏଇଆ, ଆପଣ ତାଙ୍କୁ କଥାରେ ଜିଣି ପାରିବେନି । ଯେଉଁଟା ତାଙ୍କର ବ୍ୟବସାୟ, ହାତର କରଣୀ ପାଟିର କଥା ସେମାନଙ୍କ ପେଟପାଟଣା ଚଳଉଛି । କୌଣସି ଗୋଟିଏ ଅଭାବ ହୋଇଗଲେ ବ୍ୟବସାୟ ଚଳିବନି । ମୁଁ ତ ହେଲେ ଦି' ଅକ୍ଷର ପଢ଼ିଛି, ଯେଉଁ ମିସ୍ତ୍ରୀ ସି ଅକ୍ଷର ବର୍ଜିତ, ସେ ଆପଣମାନଙ୍କ ପରି ଉଚ୍ଚ ପଢ଼ୁଆ, ବାବୁଭାୟା, ଇଞ୍ଜିନିଅର, ଓଭରସିଅରଙ୍କୁ ବି ପାଠ ପଢ଼େଇବ । ମୁଁ ତ ହେଲେ ଜାଗିରୁଛି କଥାବାର୍ତ୍ତା କରୁଛି ।"

"ଯାହା ହେଲେ ବି ତମେ ସବୁ ସାଧାରଣ ଲୋକଙ୍କଠୁ ଟିକିଏ ଅଲଗା । ମୁଁ କ'ଣ ମିଛ କହୁଚି ସତ୍ୟସୁନ୍ଦର ।"

"ବିଲକୁଲ୍ ଠିକ୍ କହୁଛନ୍ତି; ମୋ ମନକଥାଟା ଛଡ଼େଇ ନେଇ କହୁଛନ୍ତି ଆଜ୍ଞା ! ମିସ୍ତ୍ରୀମାନେ ସାଧାରଣ ଲୋକଙ୍କଠୁ ନିଶ୍ଚୟ ଅଲଗା । ବାଲି, ଚୂନ, ଇଟା, ପଥର, ସିମେଣ୍ଟ ସେମାନଙ୍କର ସାଥୀ । କେତେଟା ହାତଗୋଡ଼ ମିଶିକି, ଯିଏ ପିଠିରେ କାନ୍ଧରେ, ମୁଣ୍ଡରେ, ଇଟା, ପଥର ଲଦି ସକାଳୁ ସନ୍ଧ୍ୟାଏ ଖଟି ଖଟି ସାଧାରଣ ମଣିଷକୁ ରାଜ-ପ୍ରାସାଦର ମାଲିକ କରାନ୍ତି, ସେମାନେ ତାଙ୍କ ହାତ ହତିଆର । ଆଉ କେତେଟା ରେଜା ବି ତାଙ୍କର ଗୁହାଳର ରହିଥାନ୍ତି, ଯା'ହାର ସଂସାର ନାହିଁ, ଜୀବନ ଅଛି; କିନ୍ତୁ ଜୀବନଟାରେ କିଛି ମିଠା ନାହିଁ କି ସ୍ୱାଦ ନାହିଁ । କେବଳ ଖଟିବା ପାଇଁ ବଞ୍ଚିବା । ଆମେ ସେଇମାନଙ୍କର ନେତା । ତାଙ୍କର ପ୍ରତିନିଧି । ନିଶ୍ଚୟ ଅଲଗା ମଣିଷ ।"

"ତେବେ ମୋର ଧାରଣା ମିସ୍ତ୍ରୀମାନେ ସେମାନଙ୍କୁ ଯେତେ ଶୋଷଣ କରନ୍ତି, ମାଲିକ ସେତେ ବୋଧହୁଏ କରି ପାରେନି । କିଛି ମିଛ କହୁଚି ?"

"ସେଇଟାକୁ ଶୋଷଣ କୁହାଗଲେ ଚଳିବ ? ସାରା ଜୀବନ ଯେ ଆମେ ସେମାନଙ୍କୁ ତୋଷଣ କରୁଚୁ ସେ କଥା ତ କାହିଁ କହୁ ନାହାନ୍ତି ।"

"ତମେ ଜଣେ ଓକିଲ ହୋଇଥିଲେ ଭାରି ବଢ଼ିଆ ହୋଇଥାନ୍ତା, ସତ୍ୟସୁନ୍ଦର । ତମକୁ ମିସ୍ତ୍ରୀ କିଏ କଲା କିଏ ?"

"ସେ ଦୁର୍ଯୋଗରୁ ଭଗବାନ ରକ୍ଷା କରିଦେଇଛନ୍ତି ସାର !

"ଓକିଲମାନେ ଘର ଭାଙ୍ଗନ୍ତି, ଆମେ ଘର ତିଆରି କରୁ, ସେମାନେ ଲୋକଙ୍କୁ କନ୍ଦାନ୍ତି ଆମେ ଲୋକଙ୍କୁ ହସାଉ, ସେମାନେ ଶୋଷଣ କରନ୍ତି, ଆମେ ତୋଷଣ କରୁ; ସେମାନେ ନିଜେ କଳାକନା ପିନ୍ଧି ଲୋକଙ୍କୁ କଳାକନା ପିନ୍ଧାନ୍ତି ଆମେ କିନ୍ତୁ ଚିରା କୋଚଡ଼ା ପିନ୍ଧି ଲୋକଙ୍କୁ ଧଳା ଘରେ ମଣ୍ଡଣି କରାଉ । କହନ୍ତୁ ନାହାନ୍ତି ଓକିଲ ହୋଇ ଏତେ ପାପ କରିଥାନ୍ତି କାହିଁକି ?"

"ଚମତ୍କାର···ଚମତ୍କାର ସତ୍ୟସୁନ୍ଦର । ଆଚ୍ଛା ଆଚ୍ଛା ନିଅ, ଏଇ ତିରିଶ ଟଙ୍କା ନିଅ । ବେଶି ଦେଇ ପାରୁନି, ଏତିକରେ ଚଳାଅ ।"

"ସତ୍ୟସୁନ୍ଦର ହାତ ବଢ଼ାଇ ହସି ହସି ପଇସାତକ ଆଣି ପକେଟରେ ପୁରାଉ ପୁରାଉ କହିଲା, "ଆଜ୍ଞା ଏ ତିରିଶ ଟଙ୍କା ନୁହେଁ, ମୋ ପାଇଁ ତିନିଶହ ଟଙ୍କା,

ଆଉ ଦଶ ହଜାର ଟଙ୍କାର ଆତ୍ମସନ୍ତୋଷ, ଦଶଲକ୍ଷ ଟଙ୍କାର ସମ୍ମାନ ମିଳିଗଲା । ଆପଣଙ୍କ ସ୍ନେହଦୃଷ୍ଟି ଥିଲେ ମୋତେ ପଇସା ଅଭାବ ହେବନି । ତେବେ କାଲିଠୁ ମାଟି ଖୋଳା ଆରମ୍ଭ କରିବା ।"

"ସତ୍ୟସୁନ୍ଦର ପ୍ରଣାମ କରି ମହା ଆନନ୍ଦରେ ବିଦାୟ ନେଲେ । ସମରେନ୍ଦ୍ର ସେଇ ବିଚିତ୍ର ମଣିଷଟିକୁ ଚାହିଁରହିଲେ । ନିଁଟି ସତ୍ୟସୁନ୍ଦର ଅଥଚ ନିଛକ ନିର୍ମଳ ମିଥ୍ୟାକୁ ଏଡ଼େ ସୁନ୍ଦର ଭାବରେ କହି ଜାଣିଛି ଯେ ତାହା ମଧୁର ସତ୍ୟ ପରି ପ୍ରତିଧ୍ୱନିତ ହେଉଛି । ମିଥ୍ୟାକୁ ସତ୍ୟପରି କହି ଜାଣିବା ଗୋଟାଏ କଳା । କହି ନ ଜାଣିଲେ ସତ୍ୟ ବି ମିଥ୍ୟାପରି ପ୍ରତିଧ୍ୱନିତ ହୁଏ ।"



## ୩

"କରେ ତମେ ସବୁ କଏ ?"

"ମୁଁ ତ ତମମାନଙ୍କୁ କାମରେ ଲଗାଇନ, ଲଗାଇଲା କଏ ?"

"କାହିଁକ, ବାବୁ ତ ଲଗେଇଛନ୍ତି, ସେ ଆମ କଥା ବୁଝିବେ, ତମେ ପୁଣି କଏ ?" ସେମାନଙ୍କ ଭିତରୁ ଜଣେ ଉତ୍ତର ଦେଲା ।

"ମୁଁ କଏ ! ମୋତେ ତୁମେ ଚହ୍ନିନା, କ୍ୟାପିଟାଲରେ କେତେ ବର୍ଷ କାମ ଧାମ କଲଣି ?"

ସେମାନଙ୍କ ଭିତରୁ ଜଣେ ଚଢ଼ିକ ଆସି ସାମନାସାମନି ଠିଆହୋଇ କହିଲା—

"ହଁ ହୋ ତମକୁ ନ ଚହ୍ନୁଚ କଏ, ତମେ ସବୁ ସବୁଠେ ଥାଅ ପୁଣି କୌଣସିଠେ ନଥାଅ ।"

"ଖର ତ ବଢ଼ି ବଢ଼ି କଥା କହୁଚୁ ?"

"କେବେକୁହେଁ, ଠିକ୍ କଥା କହୁଚ, ଆଚ୍ଛା "ସପୁର ଖାଇନା" ତମର ଯେ ଧଡ଼ଧଡ଼ି ସାଇକଲ ଖଣ୍ଡିକ କ'ଣ କଲ ! ସେ ଖଣ୍ଡକ ଥିଲା ତମର ସାହା ଭରସା, ତମର ଶିଷ୍ୟ । ଆଚ୍ଛା କହିଲ—ତମକୁ ସେ କୋଉ-କାମ ପାଖରେ ହାଜର କରୁ ନଥିଲା, କୋଉ କାମରୁ ଫେରାଇ ଆଣୁନଥିଲା ! ବୁଝିଲ ଖାଇନା, ଶୁଭଟା ତ ଗୁଡ଼ଦେଲ, ତମକୁ ଦାନାପାଣି ଝଣ୍ଡିବଟି ?"

"ମୁଁ ଖିଆଲ କର ପାରୁନ ତୋ ନାଁଟା, କହିଲୁ କହିଲୁ ।"

"ଆଉ ହବନି ହବନି, ଏତେ ବେଗେ ମାନ ଅପମାନ ରାଗ ରୋଷ ସବୁ ଭୁଲିଗଲ ! ଦେଖିଲ, ତମ ଭଳିଆ ନଛଳିଆ ଲୋକ ଏ ବ୍ରହ୍ମାଣ୍ଡରେ

ମିଳବେନ । ହଇ ହୋ ! ନୂଆପାଳି ଗାଁ ଦାଣ୍ଡରେ ତମ କରଣୀ ଆଉ ମୋ ବେଲଗ୍ଭର ଯୋଡ଼ି ଲଢ଼େଇ ହୋଇଥିଲା, ସେଇଟା କଣ ଭୁଲି ଯିବାର କଥା ।''

''ଓହୋ, ଆରେ ତୁ ଶାମା କରେ ? କେତେ ଦିନ୍ରୁ ଯାଇଚୁ, ହନୁହାଡ଼ ଦେଖା ଯାଉଚ, ଶର୍ଚ୍ଚିବ କମିଛ, ବହୁତ ଦିନରୁ ତ ଭେଟଘାଟ ହୋଇନ ! ଆଚ୍ଛା ତୁ ଏ କାମଟା ନେଇଚୁ ନା କ'ଣ ? ଏମାନେ କଣ ତୋ ଲୋକ ! ତୁ ଠିକା ନେଇଚୁ ?''

''ହଁ, ହଁ, ମୁଁ ବାବୁଙ୍କଠୁ ଠିକା ନେଇଚ, ଆଉ ତମେ କଣ ଏକାମଟା ମୁଣ୍ଡେଇଚ !''

ହଁରେ ଶାମା, ମୁଁ ବ ଠିକା ନେଇଚ, ଶୀଘ୍ର ଶୀଘ୍ର ମାଟି କାମ ସାର, ଯୋଡ଼େଇ ଆରମ୍ଭ କରିବା । ଏଠୁ ମାଟିକାମ ସରିଲେ ମୋତେ ପଗ୍ଭରିବୁ, ଆଉ ଦ' ଜାଗାରେ କାମ ହେବ ।'' ସତ୍ୟସୁନ୍ଦର ଶାମାର କାନପାଖକୁ ଯାଇ ଫିସ୍ ଫିସ୍ କରି କ'ଣ ଗୁଡ଼ାଏ କହିପକାଇଲା, ସବୁତ ଶୁଣାଗଲାନ, ତେବେ ଏତକ ଶୁଭିଲା, ''ଶାମା, କହୁଚ ଖବରଦାର୍, ଆମ ଭିତରର କଥା-ଗୁଡ଼ାକ ମାଲିକ କାନରେ ଯିମିତି ନ ପଡ଼େ । ତମେ ଆମେ ସବୁଦିନଆ ମିସ୍ତ୍ରୀ ମଜୁରିଆର ସମ୍ବନ୍ଧ ଗେରସ୍ତ ଭଉଯାର ସମ୍ବନ୍ଧ ପରି । ସେଇକ୍ଷଣି ମୁହଁ, ଫୁଲଫୁଲି, ପୁଣି ସାଥେ ସାଥେ ଯୋଦ୍ଧତାକୁ ସେଇତା । ତୁ ପୁଣି ସେଇ କଥାଟା ଗଣ୍ଠି କରି ଧରିଚୁ । ଦହ ଦହକ ଅମେ ଏକାଠି ଚଳିବା, ମାଡ଼କଳି ହେବା, ପୁଣି ମିଳିମିଶି ଚଳିବା ନା ଆଉ । ସେ ବାବୁ ଫାବୁଗୁଡ଼ାକୁ ବିଶ୍ୱାସ ନାହିଁ । ତାଙ୍କ କାମଟି ଥିବାଯାଏ ଆମ ପଛେ ପଛେ ଗ୍ଭଇ ଭଳିଆ ଲାଗିଥିବେ, କାମ ସରିଗଲେ ବାସି ମୁହଁରେ ବ ପଗ୍ଭରିବେନ ।''

''ତାହ୍ ଠିକ୍ ସପୁର ଭଇନା, ''ମାଲିକ ଆଉମଜୁରିଆ ସମାନ ହେବେ କମିତ ?''

ସତ୍ୟସୁନ୍ଦର ତା ହାତକୁ ବଡ଼ ଦୟାସିଲ ବଢ଼େଇ ଦେଇ ତା କାନ ପାଖରେ ଖୁବ୍ ଆତ୍ମୀୟତାର ସହିତ କ'ଣ ସବୁ କହିଲା । କାନ୍ଧରେ ହାତ ପକାଇ, ପିଠି ଆପୁଡ଼େଇ ତା ପକେଟରେ ଟଙ୍କା କେତେଟା ଗୁଞ୍ଜିଦେଲା । ଝିକଏ ନେହୁର ହୋଇ କହିଲା—''ଭାଇ, ତୁ ଟିକଏ ସାହାପକ୍ଷ ନ ହେଲେ ସରିଯିବ ।''

ଶାମା କାମ ଉପରକୁ ଫେରିଯାଇ ତା' ଲୋକଙ୍କୁ କହିଲା କାମ ବନ୍ଦ କରିଦେବାକୁ । ବାବୁ ଆସୁ, ତା ସାମ୍ନାରେ ଗୋଟାଏ ପକ୍କା ଜବାବ ହେଉ, ତାପରେ କାମ ହେବ । ଲୋକଙ୍କ ଭିତରୁ ଜଣେ କଏ କହିଲା, "ଖୋଲା ଠିକାଦାରୀ କରିବ, ପଳିଲା ନାଟରୁ ଗୋଡ଼ ଫେରିକା, କଉ ଜବାବ ତ କରିନା, ଆମକୁ ଆସି ଝଟଉଚ କାହିଁକି ? କାମ ନକରୁ, ଆମ ମୂଲତ ଉଡ଼ି ଯାଉନା ।" ସମସ୍ତେ କୋଡ଼ି ଶାବଳ ଥୋଇଦେଇ ବସିଲେ । ବିଡ଼ି ଟାଣିଲେ, ଗପସପ ହସଖୁସି ଆରମ୍ଭ କରିଦେଲେ । ଶାମା ରାସ୍ତା ଆଡ଼କୁ ଚାହିଁଥାଏ, ବାବୁ କେତେବେଳେ ଆସିବେ ।

ସମରେନ୍ଦ୍ର ସୌମ୍ୟାଙ୍କୁ ନେଇ ରିକ୍ସାରେ ଆସୁଥାନ୍ତି । ମନରେ ଅଜସ୍ର ଆନନ୍ଦର ଧାସଫୁଲ । ସାରା ଜୀବନର ସ୍ୱପ୍ନ ସାର୍ଥକ ହେବାକୁ ଯାଉଛି । ନିବିଡ଼ ମଫସଲର କୋଉ ଅନ୍ଧାର ପୁରର ମଣିଷ ସେ, ଈଶ୍ୱରଙ୍କ ଆଶୀର୍ବାଦରୁ ରାଜଧାନୀର ହୃତ୍‌ପିଣ୍ଡରେ ଜାଗାଖଣ୍ଡିଏ ପାଇଛନ୍ତି । ଘର ଉଠିଲା ଘରଖଣ୍ଡିଏ କରିବେ । ପିତୃ ପୁରୁଷର ଝାଟିମାଟି ଘର ଏ ପୁରୁଷରେ ବଦାସ୍ତ ନେବ । ଭବିଷ୍ୟତ ବଂଶଧର ତାଙ୍କର ଯୋଗ୍ୟତାର ତାରିଫ୍ କରିବେ । ରିକ୍ସା ନିକଟତର ହେଲା । ଦେଖିଲେ କାମ ଚାଲୁନି, ଲୋକଗୁଡ଼ାକ ବସିଛନ୍ତି । ସତ୍ୟସୁନ୍ଦର ସେମାନଙ୍କ ଉପରେ ପାଟିକରୁଚ ।

"ହେଇବେ ଶାଳା ବେଇମାନ୍, ଏଠିକି ତମକୁ ପଠାଇଲା କିଏ ? ମୁଁ ଗୋଟାଏ ଆଡ଼େ କାମ ବନ୍ଦ କରିବି, ତମେ ଆସି ଆଉ ଗୋଟେ ଆଡ଼େ କାମ କରିବ ? ଏଇଟା କଣ ଗୋଟାଏ କଥାର କଥା । ଶଳା ତମମାନଙ୍କ ପାଇଁ ଏ ଲୋକ ମାଲିକ ପାଖରେ ବେଇଜ୍ଜତ ହେଇଯିବ ! କଥାରେ ଅଛି—"ଜାନ୍ ଯାଉ ମାନ୍ ଥାଉ ।" ହବେ ବସିଚ କ'ଣ, ଉଠ । ବାବୁ ତ ଆସିଲେଣି, ସେ ତାଙ୍କ କଥା ବୁଝିବେନି ।"

"ସତ୍ୟସୁନ୍ଦର ! ତମର ପୁଣି ଆଉ ଗୋଟାଏ କଣ ଅଭିନସ୍ତ ହେଲଣି । କାଇଁ ଏଯାଏ ତ ତମର ଦେଖା ସାକ୍ଷାତ ନଥିଲା । ମୁଁ ଆଶ୍ଚର୍ଯ୍ୟ ହେଉଚି, ତମେ କିମିତି ଠିକ୍ ସମୟରେ ସବୁ ଘଟଣାର ବାସନାଟା ପାଇଯାଉଚ ।"

"ପାଇବନି !! ଯିଏ ଦାୟିତ୍ୱ ମୁଣ୍ଡାଇଥାଏ ତାକୁ କ'ଣ ରାତିରେ ନିଦ ହୁଏ ନା ଦିନରେ ସ୍ୱୋକନ୍ଥୁଏ । ସବୁ ଆଡ଼କୁ ନଜର ନ ରଖିଲେ ଆମେ ଏତେ ଲୋକଙ୍କର କାମ ଚଳେଇବୁ କିମିତି । ଆଚ୍ଛା ବାବୁ, ଆପଣ ମୋତେ ଖବର

ଦେଲେନ, ପୁଣି ଆପଣ କମିଟି ଖୋଜି ଖୋଜି ମୋର ଲୋକଗୁଡ଼ାଙ୍କୁ ଆଣି କାମରେ ଲଗେଇଲେ । ମୋତେ ପଚରୁ ନାହିଁ କି ଉଚରୁ ନାହିଁ । ସେମାନେ ଆଜି ଗୋଟାଏ କାମକୁ ଯିବାକୁ ମୁଁ ବରାଦକରି ପଠେଇଲି, ଦେଖିଲି ବେଳକୁ କ'ଣନା ଆସି ଆପଣଙ୍କ କାମରେ ହାଜର । ସିଆଡ଼େ ସେ ମାଲିକ ଆଖି ଲାଲ୍ ଲାଲ କରି କାମ ଉପରେ ବସିଚି । ଜବାବ୍ ସବୁଠୁ ବଡ଼ କଥା । ଇଆଡ଼େ ଆପଣଙ୍କୁ ଦେଖିବି ନା ତାଙ୍କୁ ଦେଖିବି, ଏ ବାହା କାମୁଡ଼ିଲେ କାଟୁଚି, ସେ ବାହା କାମୁଡ଼ିଲେ କାଟୁଚି ।”

“ଆଚ୍ଛା, ସତରେ କଣ ଏମାନେ ତମ ଲୋକ ? ମୋତେ ତ ସେମାନେ କାହିଁ କିଛି କହିଲେନି । ଆଡ଼ଭାନସ୍ ନେଲେ, ଜବାବ ଛାଡ଼ିଲ, କାମ କଲେ, ତା ଭିତରେ ତମେ ପଶି ପୁଣି ଗୋଳମାଳ କରୁଚ କାହିଁକି ?”

ମାଲିକ ପାଖରେ ଗୋଳମାଳ କରିବାଟା ମୋ ଜାତକରେ ନାହିଁ ଆଜ୍ଞା ! ମୁଁ ଦି' ଅକ୍ଷର ପଢ଼ିଛି, ଆପଣ ମୋତେ ଏତେ ଅବିବେକୀ ବୋଲି କାହିଁକି ଭାବୁଛନ୍ତି । ସେ ଲୋକେ ମୋଠୁଁ ବି ଆଡଭାନସ୍ ନେଇଛନ୍ତି, ସେଇଟା ତାଙ୍କର ଦୋଷ ନା ମୋର ?”

ବୁଝିଲ ସପୁରନା, ଏଇଟା କାହାରି ଦୋଷ ନୁହେଁ, ଆମେ ବି ବାବୁଙ୍କୁ ମନା କରୁଥିଲୁ, ବାବୁ ଅତି ବାଧ କରିବାରୁ ଉପ୍ରୁଧି ବୁଝି ନପାରି ମୁଁ ହଁ ଟେ ମାରିଦେଲି । ଯେତେ ହେଲେ ଜଣେ ଭଦ୍ରଲୋକ, ତାଙ୍କ କଥା କଣ ଖର୍ଚି-ହେଉଛି !”

“ମୁଁ ତା'ହେଲେ ପୁରା ଅଭଦ୍ର...ଏ ବାବୁଙ୍କ ପାଖରେ, ସେ ବାବୁଙ୍କ ପାଖରେ ଶେଷରେ ତମ ପାଖରେ । କି ଓ ମୋଠୁଁ ବି ତ ଆଡଭାନସ୍ ନେଇଛ ।”

ହେଲା, ତମେ ଦି'ଇଟାଯାକ କାମ ତ ମୁଣ୍ଡେଇଛ, ଦି'ବାବୁଙ୍କ କାମ ଚଳେଇଦିଅ । ଆମେ ତ ଭୁଲରେ ହେଉ ଠିକ୍‌ରେ ହେଉ କାମ ବାବୁଙ୍କର ଷ୍ଟାଟ କରି ଦେଲୁଣି; ଆଜକି କରିଦେଉ, କାଲି ତାଙ୍କ କାମ କରି ଦିନ ଦି'ଇଟାରେ ତୁଟାଇ ଦେବା, ତିନି ଦିନ ବେଳକୁ ପୁଣି ଏ ବାବୁଙ୍କ କାମରେ ଲାଗି ଏକଦମ୍ ଖତମ କରି ଦେବା, ମୁଁ କଣ ନାକର୍ କଥା କହୁଚି ସପୁରାଇ ।”

“ନାକର୍ କାହିଁକି, ବେଶ୍ ଖାଣ୍ଟି କଥା କହୁଚ, ଯୋଉଥିରେ ସେ ବାବୁଙ୍କ ପାଖେ ଫଟୁଆ ହେବ, ସେ ଆଉ ମୁହଁ ଚାହିଁବେନି । ମୁଁ ତ କହୁଚି ବାବୁଙ୍କ

କାମଟା ତ ଶୁଭ ବେଳାରେ ସୁରୁ ହୋଇଯାଇଛି, ଏଥର ସ୍ୱାକୁ ବନ୍ଦକର, ଗୃହ ଆଉ କାମଟା କରିଦେଇ ପଦ୍ମବର୍ଦ୍ଧନ ଏଠିକି ଆସିବ ।

ସୌମ୍ୟା ଏ ଅଭିନୟରେ ବିବ୍ରତ ହୋଇ କହିଲେ, 'ଆଚ୍ଛା, ମିସ୍ତ୍ରୀବାବୁ, ତମେ ତ ପହିଲି କାମରୁ ଇମିତି ହଇରାଣ ହରକତ କଲଣି, କାମ ଶେଷହେବାକୁ ମଣିଷକୁ ସମ୍ପୂର୍ଣ୍ଣ ପାଗଳ କରି ଦେଇଥିବ ବୋଧହୁଏ ।"

"ବୁଝିଲେ ମା' ଘର ତୋଳାଟା ଗୋଟାଏ ବଲକୁଲ୍ ପାଗଳାମି କାମ । ମଣିଷ ପାଗଳ ନହେଲେ କଣ ଘରଖଣ୍ଡେ କରି ପାରିବ । ମୁଁ କଣ ପାଗଳ କରି-ଦେବି, ପାଗଳ କରିଦେବ ଘର, ଆପଣ ଆପେ ଆପେ ପାଗଳ ହୋଇ ଆମମାନଙ୍କୁ ଖାଲି ହଇରାଣ କରିବେ । ଘର ପାଗଳ ଲୋକଙ୍କର ମିସ୍ତ୍ରୀ ମଜୁରିଆମାନେ ପରି ଡାକ୍ତର । ହେଃ...ହେଃ...ହେଃ...ମା' ଆପଣ କଣ କହୁଚନ୍ତି !!"

ସୌମ୍ୟା ସ୍ୱାମୀଙ୍କ ମୁହଁକୁ ଚାହିଁ ରହିଲେ ତଟସ୍ଥ ହୋଇ । କଥାରେ କ'ଣ ଏମାନଙ୍କୁ ଜିଣିହେବ । ସ୍ୱୟଂ ଇଶ୍ୱରଙ୍କ ଜାଣିପାରି ନାହାନ୍ତି । ଏମାନଙ୍କର ଟାଇପ୍ ଏଇଆ, ତଥାପି ଏମାନଙ୍କୁ ନେଇ କାମ କରିବାକୁ ହେବ । ଆଉ ତ ଅନ୍ୟ କିଛି ବାଟନାହିଁ ।

ଆଚ୍ଛା ଠିକ୍ ଅଛି ସତ୍ୟସୁନ୍ଦର ! ଶ୍ୟାମସୁନ୍ଦର ତମେ ବି ତାଙ୍କର ଚେଲା । ତମ ପରି ସୁନ୍ଦର କମ୍ପାନୀକୁ ନେଇ ମୋ ପରି ଅସୁନ୍ଦର ଲୋକଟା କିଛି କରି-ପାରିବନି । ତମେ ଯଦି ସିବାର କଥା ଯାଅ, ମୋ ଆଡ଼ଭାନ୍ସଟା ଫେରାଇ ଦିଅ । ତେଣିକି ବନ୍ଦିପାଇଲେ ମୁଁ କାମ କରିବ ନ ହେଲେ ନାହିଁ ।"

ଶ୍ୟାମସୁନ୍ଦର ଗଳା ସଫାକରି କହିଲା, "ସମୁଝିନା, ଶୁଣୁଛନ୍ତି ଏ ଯାଏ ପୁଣି କଥାଗଲା । ତମେତ ଟଙ୍କା ପନ୍ଦରଟା ମୋତେ ଆଡ଼ଭାନସ୍ ଦେଇଚ, ନେଇଯାଅ, ମୁଁ ବାବୁଙ୍କ କାମରୁ ଆଦୌ ଗୋଡ଼ କାଢ଼ିବିନି । ସ୍ୱାକୁ ନର୍ଭା କରିବୁ, ତା'ପରେ ଯୋଉ କଥା । ଜଣେ ଭଦ୍ରଲୋକ, ତାଙ୍କ ସାଥିରେ ପୁଣି ଝଗଡ଼ା । ଆଜ୍ଞା, ତାକୁ ଟଙ୍କା ପନ୍ଦରଟା ଦେଲେ ସେ ନେଇ ପଳାଉ, ଆମ ମଜୁରିରୁ ପଛେ କାଟିଦେବ ।"

ସମରେନ୍ଦ୍ର ପକେଟରୁ ଟଙ୍କା ବାହାର କରି ସତ୍ୟସୁନ୍ଦର ହାତକୁ ବଢ଼ାଇ ଦେଲେ । ସେ ପକେଟରେ ଟଙ୍କାଟା ରଖୁରଖୁ କହିଲେ, "ଆଜ୍ଞା, ଆପଣ କାହିଁକି ମନଦୁଃଖ କରିବେ, ସେମାନେ କାମ କରନ୍ତୁ, ହେଲେ ଏଇଟା ସମାଧାନ ନୁହେଁ ।

ବୁଝିଲୁ ଶାମା, ବାବୁ ଥିଲେ ବୋଲି ଦିନା ମୋ ଟଙ୍କାଟା ଫେରାଇ ଦେଲୋକୁ ବଳ ପାଇଗଲୁ, ଯଦି ସେ ନ ଥାନ୍ତେ। ଏଣିକି ତୁ ତୋ ବାଟରେ। ଯାଏ ଲୋକ ଖୋଜେ, ଏତେବେଳକୁ ବା କୋଉ ଲୋକ ଥିବେ ଯେ। କିଛି ନ ହେଲେ ଜଣେ କୋଡ଼ି ଶାବଳ ଧରି ଖୁଞ୍ଚି ଦେଇଦେବ, ତମେ ନଗଲ ବୋଲି କାମ ଅଟକିବନି। ମୁଁ ଯାଉଛି ଆଜ୍ଞା। ନମସ୍କାର।"

ନମସ୍କାର...ଯାଅ!"

ଯୋଡ଼େଇ କେବେ ଆଜିମ୍ଭ ଦେଖିବ କିଛି ତ କହିଲେନି।"

ଶାମା ହସି ହସି କହିଲା, "ପାଗଳାଟା, କରେ ଖୋଳେଇ ସରିଲେ ମୁଁ ଯାଇ ଟଙ୍କେ କହି ଦେଇ ଆସିବିନି। ତୁ ତା'ପରେ ଆସି ବାବୁଙ୍କ ସାଥିରେ କଥାବାର୍ତ୍ତା ହୋଇ ଦିନ ଠିକ୍ କରିବୁନି।"

"ଆଜ୍ଞା ତା' ହେଲେ ମୁଁ ଆସୁଚି, କିଛି ମନେ କରିବେନି। "ଶ୍ରେଷ୍ଠାଣି ନାନା ବସ୍ତାନ୍ତି। ଶାମା..! ଦେଖ୍ କହୁଚି, ଠିକା କାମବୋଲି ବାଉଁଠିଆ ମାର-ଦିବନି। ଧାର ଠିକ୍ ରଖିବ, ସବୁକାମ ଠିକ୍ ଭାବରେ କରିବ, ତଳ ଉପର ସମାନ ଓସାର ରହିବ। ଖୁଣ୍ଟଟାଏ ପାଖରେ ରଖ, ସେଇଟା ପକାଇ ମାଟି କାଟିବ। ମନେରଖ, ସେଇଟା ଏ ମୁଣ୍ଡ ସେ ମୁଣ୍ଡ ଯିମିତି ପହଁଚି ଆସିବ। ପଥର ବସାଇଲାବେଳେ ଯିମିତି ପୁଣି ମାଟି କାଟିବାକୁ ନ ପଡ଼େ।"

ହଁ ମ କେତେ ବତଉଚୁ, ସତେ ଯିମିତି ମୋତେ ମାଟିକାଟି ଆସେନା, ଆମେଗୁଡ଼ାକ ଅନାଡ଼ି। ଆମେ ମାଟିର ପୋକ, ତମ ମିସ୍ତ୍ରୀଗୁଡ଼ାକର ଏଭଳି ବାହାପିଆ କଥା ନଚଳୁ। ସପୁରାଇ ଯିବୁ ତ ବଢ଼ିଜଣ୍ଡେ ଦେଇକରି ଯା'।

ଶାମ ଆଉ ସତ୍ୟସୁନ୍ଦର ଏକାଠି ବଢ଼ିଲାଗାଇଲାବେଳେ ତ୍ରିନ କଣ କ'ଣ ପଦେ କହିଦେଲା। ଶାମ ମୁଣ୍ଡ ହଲେଇ ତା ମୁହଁକୁ ଏମିତି ଗୋଟାଏ ଚାହାଣୀରେ ଚାହିଁଲା ଯେ ସେ ଖୁସି ହୋଇ ମୁହଁ ଫେରାଇଲା।

"ବାବୁ, ତା'ହେଲେ ଯାଉଚି, ଘରକାମ କଲେ ଟିକିଏ ଟିକିଏ କଥା ଧରିବେନି, ମାମୁଲି ଘଟଣାକୁ ନେଇ ରାଗିବେନି, ଅସୁବିଧା ଗୁଡ଼ାକୁ ମାନେଜ୍ କରିବେନି। ସବୁବେଳେ ଜୀବନଟାକୁ ଗୋଟାଏ ସମୁଦ୍ର ବୋଲି ଭାବିବେ। ଜୁଆର ଭଟ୍ଟା ସବୁବେଳେ ଲାଗିଚି, ଲାଗିଥିବ। ତାକୁ ଡରିଗଲେ, ଗର୍ଜନକୁ ଶୁଣି ଦବି ଗଲେ ଶାନ୍ତି ପାଇବେ କିମିତି? ବୁଝିଲେ ମା' ଆପଣ ତ ଜଣେ ଅଧ୍ୟାପିକା,

ସ୍ତର ମିସ୍ତ୍ରୀଟା ଆପଣଙ୍କୁ ବଢେଇବ କଣ । ମଣିଷ ପାଗଳ ନ ହେଲେ କଣ କିଛି କାମ କରିପାରିବ । ଘର ତ ଗୋଟାଏ ପାଗଳ ଗାରଦ, ତା'ପରେ ଆମ ସମସ୍ତଙ୍କ ଘର, ପାଗଳ ଗାରଦଠୁ କୋଉ ଗୁଣରେ ଭଲ । ଘରବାହାର ଯେତେ ଲୋକ ଅଛନ୍ତି, କା'ରୁଚି ସାଥିରେ କାହା ରୁଚି ମିଳୁଛି । ଆମେ ସବୁ ଏକାଘରେ ଚଳୁଚେ ସିନା, ହେଲେ ଜଣକ ମନ ଉତ୍ତର ମେରୁରେ ତ ଆଉ ଜଣକ ମନ ଦକ୍ଷିଣ ମେରୁରେ । ଏ ତ ଘର କଥା, ପର ଲୋକଙ୍କୁ ନେଇ କାମ କରିବା, ସମସ୍ତଙ୍କ ମନ କମିତି ସମାନ ହେବ !

ସୌମ୍ୟା ତା ମୁହଁକୁ ଆଶ୍ଚର୍ଯ୍ୟରେ ଚାହିଁଲେ । ଏତେ ଭଲ କଥା ଯୋଉ ଲୋକ କହିପାରେ ତା' କାମଧାମ, ବ୍ୟବହାର ପୁଣି ଏତେ ଖରାପ କମିତି ! ଭେରି କମ୍ପ୍ଲେକ୍ସ କ୍ୟାରେକ୍ଟର୍ । ମନନଶୀଳତା ପାଇଁ ହିଁ ସେ ମଣିଷ, ସେଇଟା କମିଗଲେ ମଣିଷ ଭିତରେ ପଶୁଟା ମାତାଲ୍ ହୋଇଉଠେ । ତା' କାମଟାକୁ ସିମିତି ବେତାଳିଆ, ବେଢ଼ଙ୍ଗିଆ ବୋଧହୁଏ କରିପକାଏ ।

"ତା ହେଲେ ତମେ ପଢ଼ିଚ ସତ୍ୟସୁନ୍ଦର ।"

ହଁ ମା' ମେଟ୍ରିକ୍ ଶେଷ କରିଚି, ଦିନରେ ମିସ୍ତ୍ରୀକାମ କରେ, ରାତିରେ ଟିଉସନ କରେ । ବାବୁଙ୍କୁ ମୁଁ ମୋ ବିଷୟରେ କେତେ କଥା କହିଚି । ଆଚ୍ଛା, ବାବୁ ଆପଣ କହନ୍ତୁ, ଗେଟି ମଗାଇବେ ନା ମୁଁ ମଗାଇବି ?

"ମୁଁ ଯୋଗାଡ଼ କରିବି ।"

"ଭାରି ଭଲ କଥା ଆଜ୍ଞା, ଏ ଯୋଗାଡ଼ଟା ସବୁଠୁ କଠିନ କାମ । ଯା'ହେଉ ରକ୍ଷା ମିଳିଗଲା । ପାଞ୍ଚ ମାଲିକର ପାଞ୍ଚ କାମ ତ ଧରିଚି । ଦିନ ତମାମ୍ ଜନମା ହେଇ ଜଣକ କାମ କରିପାରିବି କି ? ମୁଁ ଅସୁଚି ଆଜ୍ଞା, ମା' ଯାଉଚି, ନମସ୍କାର । ଯୋଗାଡ଼ ସରିଲେ ଖବର ଦେବେ ।

ସତ୍ୟସୁନ୍ଦର ଫେରିଗଲା ।

ସମରେନ୍ଦ୍ର ଓ ସୌମ୍ୟା ନିଜ ଜାଗା ଚାରିପାଖେ ବୁଲିବୁଲି ଦେଖିଲେ । ଲୋକମାନେ ମାଟି ଖୋଳିବାରେ ଲାଗିଗଲେଣି । ଭାରି ଖୁସି ଲାଗୁଚି । ମାଟି ମା'ର କୋଳରେ ଲୁଚିଯାଇ ସାରା ଜୀବନ ପାଇଁ ଆଶ୍ରୟ ନେବାର ଚେଷ୍ଟା । ଏତେ ଦିନକେ ମଫସଲିଆ ତାଲିକାରୁ ସହର ତାଲିକାକୁ ନାଁ ଟା ଉଠିବ । ବହୁଦୁ

ପାଣିଚାଆ ମଫସଲଆ ଶବ୍ଦ ଲିଭିଯିବ । ଏଣିକି ଭବିଷ୍ୟତ ପିଲାମାନଙ୍କର କୁଆଁ କୁଆଁ ଡାକ ମଫସଲ ଘରର ଗୁଲ ଛପର ତୁଳେବନି କ ଖଟି ଘର ଧୂଳି ମାଟିରେ ଉଠିବନି । କମାର ଘରର ଦଉଡ଼ି ଚୁଲ୍ଲୀରେ ନୂଆ ଚୁଆଡିର କାନ୍ଥ କଟା ଯିବନି କ ପୁରୁଣା ବଡ଼ା ନଆଁରେ ଚୁଆକୁ ସେକା ଯିବନି । ବୈତରଣୀ ଶାଣିତ ଧାରରେ କାନ୍ଥ କଟାଯିବ, ହୁଇରେ ତାଡ଼ିରେ ଚୁଆ ସେକାଯିବ । ଇଏ ବି ତ ଗୋଟାଏ ପଦୋନ୍ନତି । କଏ କେତେ ଆଗକୁ ଆଗେଇଲେଣି, ସେମାନେ କେତେକି ଆଗେଇବାରେ ଛଡ଼ ଜଣ ?

ହଠାତ୍ କାମ ବନ୍ଦ ହୋଇଗଲା । ଲୋକେ କୋଡ଼, ଶାବଳ ଥୋଇଦେଇ ଆସି ବସିଗଲେ । ସମରେନ୍ଦ୍ର ଦେଖିଲେ ହଳଲ ହାତଗୁଡ଼ାକ ଆଣ୍ଠୁ ଉପରେ ଝିଭିଜ କାଟି ଝଟଳ ହୋଇଯାଇଛି । ସେ ଭାବିଲେ ବୋଧହୁଏ କ୍ଳାନ୍ତ ମେଣ୍ଟାଇବାକୁ ସେମାନେ ଟିକିଏ ବସି ଯାଇଛନ୍ତି । ସମରେନ୍ଦ୍ର ମୁହଁ ବୁଲାଇ ପତ୍ନୀଙ୍କ ସହିତ ଆଳାପ ଆଲୋଚନାରେ ବ୍ୟସ୍ତ ହେଲେ । ଅଧ ଘଣ୍ଟାଏ ବିତିଗଲା ।

"କରେ ପିଲେ । ଲାଗ ଲାଗ, କାମରେ ଲାଗ, ଆଉ ଡେରି କରନା ।" ହସି ହସି କହିଲେ ସମରେନ୍ଦ୍ର ।

"ବାବୁ ଆମେ ଆଉ କାମ କରିବୁନି !"

"ଏ କ'ଣ କହିଲ, କାମ କରିବନି ? କ'ଣ ଅସୁବିଧା ହେଲା ?"

"ଆସୁବିଧା କଛି ନାହିଁ ଯେ ରେଟ୍ ପୋଷାଉନି, ଆମେ ଏତେ କମ୍ ରେଟ୍‌ରେ କାମ କରିପାରିବୁନି ।"

"କି ଆଶ୍ଚର୍ଯ୍ୟ ମଣିଷ ତମେ, ରେଟ୍ ଛିଡ଼ିଲା, ଜବାବ କଲ, ପୁଣି ଏତେବେଳେକୁ କଣନା କାମ କରିପାରୁବୁନି !"

"ଜବାବରେ ଟିକିଏ ବି ଭୁଲଭଟକା ନାହିଁ ଆଜ୍ଞା, ହେଲେ ସବୁ ମାଟି ରେଟ୍ ସମାନ ନୁହେଁ । ମାଟି, ମୋରମ, ପଥର, ସବୁ କିସମର ମାଟି ପାଇଁ କ'ଣ ସେଇ ଗୋଟିଏ ରେଟ୍ ! ଏଇ ତ ଅବକା ତଳକୁ ମୋରମ ପଡ଼ିଲାଣି, ତା'ପରେ ପଥର ପଡ଼ୁଚିନା କ'ଣ କହି ହେବନି, ମୋରମ କାଟିବା ରେଟ୍ ଅଲଗା ।"

"ତମେ ଗୋଟାଏ କଥା କହୁଚ, ମାଟି ଖୋଳିଲେ ତା ଭିତରେ ମୋରମ୍ ପଥର କିଛି ପଡ଼ିବନି ? ପାଞ୍ଚ ଲୋକଙ୍କୁ ପଚାରିଲ, ତମେ ଖାଲି ହଇରାଣ କରୁଚ ସିନା ।"

ଶାମା କହିଲା, "ହରିଗୁଣ ହରକତର ପ୍ରଶ୍ନ ଉଠୁନି ଅଜ୍ଞା, ମାଟି ରେଟ୍ ପଥର କାଟିବାପାଇଁ ଦେଲେ ଆମେ କାମ କରିପାରିବୁ ? ଆପଣ ଯିନା ବୁଝିବା କଥା, ପାଠ ପଢ଼ିଛନ୍ତି, ବସ୍ତୁର ଅଛୁ । ଏ ରେଟ୍‌ରେ କାମ କଲେ ଆଦୌ ପୋଷାଉନି ।"

ସମରେନ୍ଦ୍ର ବ୍ୟସ୍ତ ହୋଇ କହିଲେ, "ନା...ନା, ମୁଁ ଆଉ ଅଧିକ କିଛୁ ଦେଇ ପାରିବିନି । ଏଣିକି ତମେ କାମ କଲେ କର ନ କଲେ ନାହିଁ । ତମମାନଙ୍କର ଜବାବ୍ ଆଦୌ ଠିକ୍ ନାହିଁ । ତମେ ସବୁ ଭଲ ମଣିଷ ନୁହଁ । ଯାଅ...ଚାଲିଯାଅ ।

ସବୁ ଲୋକେ ଏକାବେଳେ ଉଠି ପଡ଼ିଲେ, ହାତ ହଲେଇ କହିଲେ, "ସେ ଧମକା ଧମକରେ ଦବିଯିବା ଲୋକ ଆମେ ନୋହୁ । ଏଇ ହାତ ଅଛି କେତେ କୋଡ଼ି ଶାବଲ ଗଲଣି । ଏଇ କ୍ୟାପିଟାଲ ବଣ ବୁଦାରେ ଭରିଥିଲା, ହାତୀ ବାଘଙ୍କ ବସାଘର ଥିଲା; ଆମେ ଏଇ ହାତରେ ତାକୁ ସଫାକରି ପାହାଡ ପର ମାଟି ଖୋଳି ଗୁରିଆଡ଼େ ମାଲ ମାଲ କୋଠା ଛିଡ଼ା କରିଛୁ । କେତେ ବାବୁଙ୍କ ନାଲି ଆଖି ଦେଖିଛୁ, କେତେ କଣ୍ଟ୍ରାକ୍ଟର ଠିକାଦାରଙ୍କ ଗର୍ଜନ ତର୍ଜନ ଶୁଣିଛୁ, କେତେ ହାକମ ହୁକୁମାଙ୍କ ଗାଳି ଫଜିତ୍ ହଜମ କରିଛୁ । ଆମର ଏଇ ଶାବଲ ମୂନ ବି କେତେ ବେଇଜତିଆ ଲୋକଙ୍କ ଦାନ୍ତ ଭାଙ୍ଗିଛି, ତମେ କ'ଣ ଧମକଉଚ ବାବୁ ! ଦେଖିଆ...ଦେଖିଆ କି ଭ କାମଟା କରିଦେବେ ।'

ସୌମ୍ୟା ବିବ୍ରତ ହୋଇ କହିଲା, "ବାବୁ ତମକୁ ଧମକେଇଲେ କିଏ, ନାଲି ଆଖି ଦେଖାଇଲା କିଏ ? ତମକୁ ତ ସେ କହୁଛନ୍ତି, ଆଉ କ'ଣ କଥା କହିବେନି !"

"ବୁଝିଲ ମା' କହି କାଣିଲେ କଥା ସୁନ୍ଦର, ବାନ୍ଧି କାଣିଲେ ମଥା ସୁନ୍ଦର । କଥାଟାକୁ କଥା ଭଳିଆ କହିଲେ ଯିନା ହବ, ମାଡ଼ ଭଳିଆ କହିଲେ ଚଳିବ ! ଅଧିକା ରେଟ୍ ଦେଇ ନ ପାରିଲେ ଆମ ପଇସା ଗୁଟେଇ ଦିଅ, ଆମେ ଚାଲିଯାଉ ।"

"ଠିକ୍ ଅଛି, ମାଟି ମାପକର, ପଇସା ତୁଟେଇ ଦେବା ।"

ହିସାବ ସରିଲା, ସମରେନ୍ଦ୍ର ପନ୍ଦର ଟଙ୍କା କାଟି ବାକି ପଇସାତକ ତାଙ୍କ ହାତକୁ ବଢ଼ାଇ ଦେଲେ । ଶାମା ପଇସାତକ ଗଣି ନେଇ କହିଲା, "ବାବୁ ଏତକ କ'ଣ ଆଉ ପଇସା କାହିଁ ?"

"ଆଉ କି ପଇସା, ହିସାବ କ'ଣ ଠିକ୍ ହେଲନି ?"

"ଆଉ ପନ୍ଦର ଟଙ୍କା !"

"କି ଆଶ୍ଚର୍ଯ୍ୟ କଥା, ତମେ କହିଲ, ଆଡଭାନ୍ସ ପନ୍ଦର ଟଙ୍କା ତାକୁ ଫେରାଇ ଦେବାକୁ, ପଛରେ କାଟିବ ବୋଲି କହିଲ, ପୁଣି କ'ଣ କହୁଚ ଟଙ୍କା ପାଇଁ ।"

"ବୁଝିଲେ ଆଜ୍ଞା, ଆମ ଆଡ୍‌ଭାନସ୍ ଆପଣ କାଟିକି ଦେବେ । ସେଇଟା ତାର ସେ ଦିନର ମଜୁରି । ଆମେ ଇଆଡେ ଆସି ଆପଣଙ୍କ କାମ କଲୁ ବୋଲି ସିଆଡ଼େ ତା କାମ ବନ୍ଦ ହେଲା, ତାର ଦିନକର ମଜୁରି ବୁଡ଼ିଲା, ଏ ପନ୍ଦର ଟଙ୍କାଟା ସେ ମଜୁରି ବାବଦକୁ କଟିଗଲା, ଆଡଭାନ୍ସ କଥା ଆମେ ବୁଝିବୁ ।"

ଇମିତି ଗୁଲବାଜି କରି କେତେ ଦିନ ଚଳିବ, ସେଇ କଥାଟା ସେତେବେଳେ କହିଲନି । ମୁଁ ଆଉ କାଣି କଉଡ଼ିଟାଏ ବି ଦେବିନି । ତମେ ଯାହା କରୁଚ କର । ମଶାପରି ପଶି ମୋ ରକ୍ତ ଶୋଷି ପକାଇବ ନା କ'ଣ ଖାଲି ପଇସା··ପଇସା···ପଇସା···ପଇସା ।

"ପଇସା ଦେବେ କି ନାହିଁ ?"

"ନାହିଁ···ନାହିଁ···ନାହିଁ ।"

"ଆମେ ଅଲବତ୍ ନବୁ···ନବୁ···ନବୁ । କାଣିଟିଏ ଛାଡ଼ିବୁନି, ହକ୍ ହାଡ଼ଭଙ୍ଗା ପରିଶ୍ରମ କରିଚୁ । ପଇସା ଦିଅ ନ ଦେଲେ ଛାଡ଼ିବୁନି ।"

"ଛାଡ଼ିବନି···ତମର ଏଡ଼େ ସାହସ, ପୋଲିସକୁ ଖବର ଦେବି ?"

"ବୁଝିଲେ ଆଜ୍ଞା, ଆପଣଙ୍କୁ ତ ଆମେ ଛାଡ଼ିବୁନି ସିଏବି କେମିତି, ଆମ ଭିତରୁ କିଏ ଯାଇ ମାମୁଁଙ୍କୁ ଡାକି ଆଣିଲେ ସେ ପଇସାଟା ଆପଣଙ୍କଠୁ ଆଦାୟ କରି ଦେଇ ଆମକୁ ଦେଇଦେବେ । ଆଗେ ସିନା ଲୋକଗୁଡ଼ାକ ମୂର୍ଖ ଆଉ ମେଣ୍ଢା ଥିଲେ, ଏବେ ପରା ଯୁଗ ବଦଳି ଯାଇଚି ।"

ଅମରେନ୍ଦ୍ର ସେମାନଙ୍କର ବ୍ୟବହାରରେ ଯେତିକି କ୍ଷୁବ୍ଧ ହେଲେ, ସେତିକି ଆଶ୍ଚର୍ଯ୍ୟ ହେଲେ । ଶ୍ରମିକ ଶ୍ରେଣୀର ଲୋକମାନେ ପ୍ରକୃତରେ ଆଜି ଜମ୍ବୁ ନୁହନ୍ତି, ହୁଏତ ଜରଖର ହୋଇ ପାରନ୍ତି । ମୂର୍ଖତା ଆଉ ଜରଖରତା

ଦ'ଟା ସମାନ ସମ୍ମାନ କଥା ନୁହେଁ । ସେମାନେ ଖୁବ୍ ସଚେତନ ହୋଇ ଉଠିଲେଣି । ତେବେ ଏ ସଚେତନତା ସ୍ୱେଚ୍ଛାଚାରିତାକୁ ଯଥେଷ୍ଟ ବଢ଼ାଇ ଦେଇଛୁ । ଦେଶପାଇଁ ଏହା କେତେ ଦୂର ମଙ୍ଗଳକର ତାହା ଇତିହାସ କହିବ । ସେ ଭାବିଲେ ଏ ଲୋକ ସେଉ ଭିତରେ ସୌମ୍ୟା ଜଣକୁ ଅପ୍ରସ୍ତୁତ ମନେ କରୁଥିବେ । ଏମାନଙ୍କଠୁ ରକ୍ଷାପାଇବା ଉଚିତ ।

ସୌମ୍ୟା ଅପ୍ରତିଭ ହୋଇ, "କହିଲେ ତାଙ୍କୁ କିଛି ଦେଇଦିଅ । ଏ ଲୋକ ଗୁଡ଼ାକୁ ଜିତିବା ବଡ଼ କଷ୍ଟ । ଏ ମାନଙ୍କଦ୍ୱାରା କାମ କରାଇବା ଏକ କାଳ । ଲୋକଗୁଡ଼ାକ କ'ଣ ଭାବିଲେ କେଜାଣି, ସେମାନଙ୍କୁ ଗ୍ରୁଣ୍ଡିଦେଇ ଚାଲିଆସିଲେ । କହିଲେ ବାବୁ, ଆମେ ଦୋକାନରୁ ଚା'ଖାଇ ଆସୁଚୁ, ତମେ ସଇପା ବାହାର କରୁଥା । ସେମାନେ ଚାଲିଆସିଲେ ।

"ମୋର ଧାରଣା, ସେମାନଙ୍କର ତ ଆଉ କିଛି ଆନନ୍ଦର ସୁଯୋଗ ନାହିଁ, ମାଲିକକୁ ଏଣ୍ଟମିତ ହଇରାଣ, ହନ୍ତସନ୍ତ କରି ସନ୍ତୁଳିତ କରିବାରେ ତାଙ୍କୁ ପାଭର୍ଷ୍ଟିକ୍ ପ୍ଲେଜର୍ ମିଳିଥାଏ । ତମେ ତ ଏ କାମକୁ ନୂଆ, ଏମାନଙ୍କ ସାଇକୋଲଜି ସହିତ ତମର ସମ୍ପର୍କ କମ୍ । ସାବଧାନ୍‌ରେ ତାଙ୍କ ସାଥିରେ ଚଳିବ । ଏଗୁଡ଼ାକ ମଣିଷ ନୁହନ୍ତି । ମୋ ବାପାଙ୍କଠୁ ମୁଁ ଜାଣିଚି ଘର କରିବାରେ କେତେ ଦୁଃଖ । ସେ ଏତେ ହରକତ ହେଲେ ଯେ କାମ ଅଧାହେଲାକୁ ତାଙ୍କର ବୟସ ଦଶବର୍ଷ ବଢ଼ି ଯାଇଥିଲା । ବ୍ଲଡ଼ ପ୍ରେସର ବାହାରିପଡ଼ିଲା । ପେଟରେ ଅଲସର ମଧ୍ୟ ହୋଇଗଲା ଖିଆ ପିଆ ଠିକ୍ ରହିଲାନି ବୋଲି । ସେ ଥିଲେ ଖୁବ୍ ଉଦାର, ଖୁବ୍ ସ୍ନେହଶୀଳ, ସହାନୁଭୂତିଶୀଳ । ଏଇ ଉଦାରତାର ଶୋଚନୀୟ ପ୍ରବୃତ୍ତି ତାଙ୍କୁ ପ୍ରତି ମୁହୂର୍ତ୍ତରେ କନ୍ଦେଇଚି, ପ୍ରତାରଣା କରିଚି । ସେ ଯେତିକି ଉଦାର ହୋଇଛନ୍ତି, ଲୋକେ ତାଙ୍କୁ ସେତିକି ବୋକା ବୋଲି ଭାବିଚନ୍ତି, ସେତିକି ହଇରାଣ ହୋଇଛନ୍ତି । ଶେଷରେ ତାଙ୍କୁ କାମ ବନ୍ଦ କରିଦେବାକୁ ହେଲା । ଦୀର୍ଘ ପାଞ୍ଚ ବର୍ଷଯାଏ କାମ କିଛି କରିଲେନି, ଜିନିଷ ପତ୍ର, ଇଟା ପଥର ବି ଚୋରି ହୋଇଗଲା, ଶେଷରେ ତାଙ୍କର ଜଣେ ବାଲ୍ୟ ବନ୍ଧୁ, ଯେ କି ଜଣେ କଣ୍ଟ୍ରାକ୍ଟର ସେ ବାପାଙ୍କୁ ସାହାଯ୍ୟ କଲେ ଓ ଘରଟି ଜଳେ କରାଇଦେଲେ । ତାଙ୍କ ଦୟାରୁ ମୁଣ୍ଡ ଗୁଞ୍ଜିବାକୁ ଆମକୁ ଆଶ୍ରୟଟିଏ ମିଳିଗଲା ।

"ମୁଁ ସବୁ ବୁଝିଚି, ଯେ ଯେତେବେଳେ ଯାହା ଦାବୀକରିବ, ତାକୁ ସେତେବେଳେ ତାହା ଦେଇଦେଲେ ଜଣଙ୍କର ମୁହଁ ସିନା ବନ୍ଦ ହୋଇଯିବ

ବନ୍ଧୁ ଲୋକଙ୍କର ମୁହଁ ଖୋଲିଯିବ । ହେଇ ଦେଖ, ରାସ୍ତା ଆରପାଖ ଗୁ ଦୋକାନରେ ବସି ଆମ ସାତ ପୁରୁଷ ଉଦ୍ଧାରୁଛନ୍ତି ।"

"ତାଙ୍କୁ ଡାକ, ଯାହାକିଛି ଦେଇଦଅ, କାମ ତୁଟିଯାଉ ।"

ସମରେନ୍ଦ୍ର ଇଚ୍ଛା ବିରୁଦ୍ଧରେ ଡ଼ାକିଲେ । "ଶାମା···ଓ ଶାମା ।" ଗୁ ଦୋକାନୀ କହିଲା, "ଆରେ ହେ, ବାବୁସବୁ ଡାକୁଛନ୍ତି, ଯାଉନ ଶୁଣି ଆସିବ ।" ଏତକ କହି କପ୍‌ରେ ଗୁ'ଛାଣି ଜଣ ଜଣ କରି ହାତକୁ ବଢ଼ାଇ ଦେଲା ।

"ଡାକୁଥାଉ, ଆମେ ଚା' ଗୁକର ହୋଇନୁ, ପଇସାଟା ଆମ ଗୋଡ଼-ତଳେ ସେ ଦେଇକରି ଯିବ । ବେଟା ଯିବ କୁଆଡ଼େ !"

ଏତକବେଳେ ଆଉ ଜଣେ କେହି ରାସ୍ତା ଉପରେ ସାଇକେଲରେ ବ୍ରେକ ଦେଇ ଓହ୍ଲାଇଲେ । ସମରେନ୍ଦ୍ରଙ୍କୁ ଲକ୍ଷ୍ୟକରି କହିଲେ ।

"ଆଜ୍ଞା ନମସ୍କାର ! ବୋଧହୁଏ ଏଇଟା ଆପଣଙ୍କ ପ୍ଲଟ ।"

"ନ ମ···ସ୍କାର, ଏଇଟା ମୋ ପ୍ଲଟ କଣ କିଛି ଦରକାର ଥିଲା କି ?"

"ମୁଁ ଭାରି ଆନନ୍ଦିତ, ମୁଁ ହେଉଛି ଆପଣଙ୍କର ଏଇ ଜାଗାର ପଡ଼ୋଶୀ ଶ୍ୟାମସୁନ୍ଦର ପଟ୍ଟନାୟକ । ଆପଣ ଆରମ୍ଭ କଲେଣି, ମୋ ପାଇଁ ଏହା ଏକ ପ୍ରେରଣା ।

"ପ୍ରେରଣା ନୁହେଁ ଆଜ୍ଞା, ପ୍ରତାରଣା କୁହନ୍ତୁ । ମୋତେ ଅନୁସରଣ କଲେ ମୁଁ ଯିମିତି ଏ ଲୋକଗୁଡ଼ାଙ୍କଦ୍ୱାରା ପ୍ରତାରିତ ହେଉଚି ଆପଣ ବି ସିମିତି ପ୍ରତାରିତ ହେବେ ।"

"ଓ, ସେଇଥିପାଇଁ କାମ ବନ୍ଦ କରିଦେଲେ ।"

"ମୁଁ କାମ ବନ୍ଦ କରିନି ଯେ, ସେମାନେ ବନ୍ଦ କରି ଗୁଲିଗଲେ । ରେଟ୍ ତୁଟିଲା, ଜବାବ ତୁଟିଲା, ଆଡଭାନସ୍ ନେଲେ, କାମ ଆରମ୍ଭ କଲେ ଠିକଏ ମୋରମ୍ ପଡ଼ିଲା ବୋଲି ଛୁଟି ପଳେଇଲେ । ଗଲେ ତ ଗଲେ, ତାଙ୍କ ପଇସା ମୁଁ କେଡ଼ା ଛାନ୍ତି ହିସାବକରି ଦେଇ ଦେଲି,, ସେମାନେ କହିବାରୁ ତାଙ୍କ ମିସ୍ତ୍ରୀକୁ ପନ୍ଦର ଟଙ୍କା ଦେଲି । ବର୍ତ୍ତମାନ ସେ ପଇସାଟା ଆଦାୟ କରିବାକୁ ଜୁଲମ କରୁଛନ୍ତି ।

ସେ ଲୋକ ଗୁଡ଼ାକ ସେଇଆ ଅଛନ୍ତି, ତାଙ୍କୁ ଚଳେଇବାକୁ ହେବ । ସବୁ ଲୋକଙ୍କ ମନ ନେଇ କାମ କରାଇବା ସହଜ କଥା ନୁହେଁ । ଦଳର ମୁଖିଆ ଲୋକଟାକୁ ଏକାକ ହାତ କରନ୍ତୁ, ଆର ଲୋକଗୁଡ଼ାକ ସାଥିରେ ଆଦୌ ସମ୍ପର୍କ ରଖନ୍ତୁନି । ହାନି ଲାଭ, ଭଲ ମନ୍ଦ ସବୁ ସେଇ ଲୋକକୁ କହନ୍ତୁ । ଅନ୍ୟ କେହି ପାଖକୁ ଆସିଲେ ତାଙ୍କୁ ମନା କରନ୍ତୁ, ତାକୁ କହନ୍ତୁ ତୋ ସାଥିରେ ମୋର କିଛି କଥାବାର୍ତ୍ତା ନାହିଁ । ତୁ ତୋ ଲୋକଙ୍କୁ କହ । ଏତିକି ଜଗିଲେ ନଖ କଥା କୁସ୍ତି କରିବନି, ସୁବିଧାରେ ତୁଟିଯିବ । ତାକୁ ଡାକନ୍ତୁ ସବୁ କଥା ଏଇଠେ ତୁଟାଇ ଦେବା ।

"ଡାକୁଚ ଯେ ସେ ସବୁ ଶୁଣୁନି, ସେଇ ଚା' ଦୋକାନରେ ବସିଚ ।"

"ତା ନାଁ...।"

"ତା...ନାଁ ଶ୍ୟାମ ।"

"ଓ...ତା' ହେଲେ ତ ଏଇ ସାଥି ସାଥି ସବୁ ତୁଟିଯିବ । ଆପଣ ଥାଆନ୍ତୁ ମୁଁ ତାକୁ ଡାକି ଆଣୁଚ ।"

ଆଗନ୍ତୁକ ସାଇକେଲ ନେଇ ପହଞ୍ଚିଲେ ଚା' ଦୋକାନରେ ।

କଅଁ ଶାମ ଭାଇ, ମୋ ଦାଦାଙ୍କ କାମଟା ବନ୍ଦ କରି ଦେଇ କ'ଣ ପଳେଇ ଆସିଲ । ତମେ ଆଉ କାହାକୁ ପାଇଲନି ଶେଷକୁ ମଇଁଷଙ୍କ ପାଖରେ ଏଇଆ କଲ !

"ହେ...ହେ...ହେ...ଅଛନ୍ତି ନମସ୍କାର । ମଇଁଷ !! କିଏ ?

"ଖୋଦ ମୁଁ, ମୋ ନାଁ ଶ୍ୟାମସୁନ୍ଦର ପଟ୍ଟନାୟକ, ତମ ନାଁ ଶ୍ୟାମସୁନ୍ଦର, ମଇଁଷ ନୁହଁ ଆଉ କ'ଣ ।"

"ଦୋକାନୀ ଭାଇ, ବାବୁଙ୍କ ସ୍ପେସିଆଲ, ଚା'ଟାଏ ଦେଲୁ...ଗୁଲୁ ଦେବୁନି । ଆଚ୍ଛା ଅଛନ୍ତି,, ବାବୁ ଆପଣଙ୍କର ଦାଦା ! ଆପଣ ତ ଏଡ଼େ ବଢ଼ିଆ ଲୋକ, ଦାଦା ଏଡ଼େ ଆଡ଼ୁଆ ଲୋକ ହେଲେ କେମିତି ?"

"ନାଇଁ ମ, ଦା...ଦା ମୋଠୁ ବଢ଼ିଆ, ତା ଭିତରଟା ମିଠା ଜାମୁକୋଳି ପରି । ଗମ୍ଭୀର ଲୋକନା, ଯେତେ ବେଶି ଲୋକଙ୍କ ସାଥିରେ ମିଶି ପାରନ୍ତିନି ।

"ହୁଁ...ତା ହେଲେ ହୋଇଥିବ, କଥା କହୁଚନ୍ତି ସେ ମଥା ଝଟିଗଲା ପରି ।" ବୁଝିଲ ମଉସେ, ମୁଁ ଖାଲିଟା ଦାଦାଙ୍କ କାମ ଦେଖିଲଣି ମୋ କାମଟା ଆରମ୍ଭ କରିଦେବ । ଆସିଲି...ଦାଦା ଡାକୁଛନ୍ତି ।"

—ଆପଣଙ୍କ କାମ ?

ଆଃ...କଉ ସେ ଯାଖ ପ୍ଲଟଟା ମୋର । ଏକାବେଳେ କାମ କରିବୁ ।

"ତା' ହେଲେ ତ ଆପଣ ଖାଲି କମ୍ପାନିଆ' । ଦାଦା ପୁରୁଷ ଏକାଠି ଜନ୍ମି ଯାଇଛନ୍ତି ।" ଆଚ୍ଛା ପିଲେ ତମେ ସବୁ 'ଷ୍ଟୁ' ଖାଉଥା....ଦୋକାନିଭାଇ, ଟଙ୍କାଟାକର ଗୁଲୁଗୁଲା ତାଙ୍କୁ ସବୁ ଦବ, ମୁଁ ଆସୁଚି । ହିସାବକରି ପଇସା ଦେବ ।"

ଶାମା ଓ ଶାମବାବୁ କଥାବାର୍ତ୍ତା ହୋଇ ଆସୁଥାନ୍ତି । ସମରେନ୍ଦ୍ର ଓ ସୌମ୍ୟା ତାଙ୍କ ଆସିବା ବାଟକୁ ଚାହିଁ ରହିଥାନ୍ତି । ଏତେ ଅଳ୍ପ ସମୟ ମଧ୍ୟରେ କେତେ ଆତ୍ମୀୟତା । ଯେତିକି ନିକଟ ହେଉଥାନ୍ତି ସେତିକି କଥା ସ୍ପଷ୍ଟ ଭାବରେ ଶୁଣାଯାଉଥାଏ ।

"ତମେ ଯାହା କୁହ ପଛକେ ଏଇ ଶ୍ୟାମ ନାଁଟା ସାଥିରେ ମୋର ଆଦୌ ପଟେନା । ମୋ ମା ସିନା ଇମିତି ନାଁଟା ଦେଇଦେଲା, ହେଲେ ମୋତେ ଭାରି ଅଡୁଆ ଲାଗେ ।"

ଶାମା ଖୁବ୍ ଜୋରରେ ହସିଲା, କହିଲା, "ନିଜ ନାଁଟା ନିଜକୁ ଭଲ ଲାଗେନା । ବଢ଼ିଆ ନାଁଟା, ତାର ଦୋଷ କ'ଣ ରହିଲା ? ମୋତେ ଶ୍ୟାମ ବୋଲି ଡାକି ଦେଲେ ମୋ ମନଟା ଆଖିରେ କୁତ୍ସିମୋଟ ହୋଇଯାଏ । କହନ୍ତୁ ଆପଣଙ୍କୁ ବିରକ୍ତ ଲାଗୁଚି କାହିଁକି ?"

କଉ ସେଇ ନାଁଟା ପରି ସବୁ ନଟକୂଟର କାରଣ । ଗୋପପୁରକୁ ସେଇ ନାଁଟା ସାଜେ । ସବୁ ଶ୍ୟାମଗୁଡ଼ାକ ବଡ଼ ନଟକୂଟିଆ ।

ଶ୍ୟାମସୁନ୍ଦର ହସର ଗୋଟାଏ ବନ୍ୟା ଖେଳାଇ ଦେଇ କହିଲା, "ଆଉ ବାବୁ ତମେ ଆପଣ ?"

"ଓ ହୋ ମୁଁ ବୋଲି କ'ଣ କୋଉଠୁ ଆସିଲି । ଏଇ ଦେଖୁନା, ଦାଦାଙ୍କ ସାଥିରେ ନଟକୂଟ ଆରମ୍ଭ କରି ଦେଇ କାମ ଛାଡ଼ି ଦେଇ ପଳେଇଚ ! ଦେଖ ଦାଦା ଯୋଉ ରେଟ୍ ବୁଟାଇଛନ୍ତି ମୁଁ ତାଠୁ ଅଧିକା ପାଉଲଏ ବି ଦେବିନି ।"

"ଆଜ୍ଞା ପେଟ ପୂରବନି, ବାବୁ ଆମର ମାଟି, ମୋରମ୍ ପଥର-ପତ୍ରୁଥିପାଇଁ ଗୋଟାଏ ରେଟ୍ କରଛନ୍ତି ।"

ନାଁ...ନାଁ...ତା କମିତ ହେବ, ସୃଷ୍ଟିରେ କେହି ଏକାରେଟ୍‌ରେ କାମ କରବେ ନାହିଁ, ଶାମ ଭାଇଙ୍କୁ ଦୋଷ ଦେଇ ଲାଭ କ'ଣ ! ମାଟି ରେଟ୍ ଅଲଗା, ପଥର ରେଟ୍ ଅଲଗା, ମୋରମ କଥା ଅଲଗା । ମା'କୁ ଛୁଆ ନ ଗ୍ରୁଡ଼ାଇ ପର ମାଟିରୁ ମୋରମ ଗ୍ରୁଡ଼ବନି, ଯେ ରେଟ୍‌ଟା ସମାନ । କ'ଣ ମିଛ କହୁଛି ଶ୍ୟାମଭାଇ !"

"ନାହିଁ ଆଜ୍ଞା ମୋରମ ରେଟ୍ ଆଉ ଦଶଟଙ୍କା ଅଧିକ, ବାବୁ ସିନା ବୁଝିଲେନି, ଆପଣ କ'ଣ ବୁଝିବେନି ।"

ବୁଝିଲି ମଇଭେ, ଗୋପପୁରର ସେ ନଟକୂଟ କଥା ଏଠାରେ ପକାଅନି, ତୁମେ ଶ୍ୟାମ ମୁଁ ଶ୍ୟାମସୁନ୍ଦର, ଦହେଁ ସମାନ ଏକ ପ୍ରାଣ ଦ' ଶରୀର । ପବନରେ ଧୂଳି ରହିବନି, ପାଣିରେ ମଳି ରହିବନି, ମାଟିରେ ମୋରମ ରହିବନି, ଏଇଟା ଗୋଟାଏ କଥା ।

ଶାମବାବୁ ଶାମାକୁ ପାଖକୁ ଟାଣିନେଇ କାନପାଖରେ ଫୁସ୍-ଫାସ୍ କରି କ'ଣ କହିଲେ । ଶାମ ମୁଣ୍ଡ ହଲଉଥାଏ, କେତେବେଳେ 'ହଁ' କେତେବେଳେ 'ନାହିଁ' କେତେବେଳେ 'ଆଜ୍ଞା' ଆଉ କେତେବେଳେ ଦେଖିବା, ଏହିପରି କେତେକ ଖାପଛଡ଼ା ଶବ୍ଦ ମଧ୍ୟରୁ ଖୋପାରୁ ମଧୁଲ ଖସିଲାପରି ଖପ୍ ଖାପ୍ ଖସୁଥାଏ ଶ୍ୟାମବଦନର ଯାଟିରୁ । କିଛି ସମୟପରେ ଶାମର ପିଠି ଆପୁଡ଼େଇ ଆଗଲୁକ କହିଲେ ଶାମଭାଇ ମୁଁ ଦାଦାଙ୍କୁ କହୁଚି, ସେ ତମ ପାଉଣାଟା ଅଲଗା ଭାବରେ ଡାକ ନଇଡ ନଇତ ତୁଟାଇ ଦେବେ । ଯେତେ ହେଲେ ତମେ ମୁଖିଆ, ତମେ ଅଧିକା ଦ' ପଇସା ପାଇବନି ! ଆଜ୍ଞା ମଇଁଙ୍କୁ ଅଲଗା ଦ ଟଙ୍କା ଲେଖାଏଁ ହିସାବ ବାହାରେ ବକ୍‌ସିସ୍ ଦେବେ । ସେ ଲୋକଙ୍କୁ ନେଇ କାମ କରଉଛନ୍ତି ତ, ପାଇବା କଥା । ମୁଁ ବ୍ଝେଇ ଦେଇଚି, ସେ ଆଉ ପନ୍ଦର ଟଙ୍କା ଅଧିକ ମାଗିବେନି । ତାଙ୍କର ତ ପୁଣି ଧର୍ମ ଭୟ ଅଛି, ପିଲାକବିଲା ଅଛନ୍ତି । ଯାଅ...ଯାଅ ମଇଭେ କାମ ଆରମ୍ଭକର । ଦେଖ, ଦାଦାଙ୍କ କାମ ଠନଦନରୁ ଯିମିତି ବେଶି ଲାଗିବନି, ତା ପରେ ପରେ ମୋ କାମ ।

"ଆଜ୍ଞା ଦିନ ତିନଟା ବେଳକୁ ସବୁ ସଫା ହୋଇ ସାରିବଣି । ଦଶଜଣ ଲୋକ ଲାଗିଛନ୍ତି ।

ଶାମ ଲୋକଙ୍କୁ ଡାକିବାକୁ ଚା' ଦୋକାନ ଆଡ଼େ ଚାଲିଗଲା, ସମରେନ୍ଦ୍ର ହସି ହସି ଶ୍ୟାମବାବୁଙ୍କୁ କହିଲେ, "ତା' କାନରେ ଆପଣ କି ଶବ୍ଦ ତୋଳା ଫୁଙ୍କିଲେ ଯେ ଭୟଙ୍କର ରୋଗର ସାପାଟା ମୋଡ଼ିମାଡ଼ି ହୋଇ ପୁଣି ସେପଟକୁ ଫେରି ଆସିଲା । ଧନ୍ୟ ଆପଣ, ଆପଣଙ୍କ ପରି ଲୋକ ପକ୍ଷରେ ସବୁ କାମ କରିବା ସାଜେ ।

ଶ୍ୟାମବାବୁ ହସି ହସି କହିଲେ ଆପଣଙ୍କ ପରି ଲୋକଙ୍କୁ ହିମାଳୟରେ ରହିବା ସାଜେ, ଛାଡ଼ିଦେଇ ବାନପ୍ରସ୍ଥ କରନ୍ତୁ ତା ହେଲେ ଜାଣିବା ଘର ପାଇଁ ଆସନ୍ତୁ ନାହିଁ ।"

ସୌମ୍ୟା ଓ ସମରେନ୍ଦ୍ର ହସରେ ଝଲକାଏ ପବନକୁ ଚାଲିଗଲେ ! ଦୁଃଖ, ଗ୍ଲାନି ଓ ବିରକ୍ତିର ହଳଦିଆ ପତ୍ରଗୁଡ଼ାକ ସବୁଜ ମନର ଶାଖା ପ୍ରଶାଖାରୁ ଝଡ଼ିପଡ଼ିଲା । ଖୁବ୍ ହାଲୁକା ଲାଗିଲା ସେମାନଙ୍କୁ ।

ସୌମ୍ୟା ହସି ହସି କହିଲେ, "ଧନ୍ୟ ଆପଣ, ଏ ଘରକରଣା ବୁଦ୍ଧି କି'ଣ ସମସ୍ତଙ୍କ ପାଖରେ ଥାଏ ! ଆପଣ ଦେବଦୂତ ପରି ଠିକ୍ ସମୟରେ ପହଞ୍ଚି ଆମକୁ ରକ୍ଷା କରିଦେଲେ । ଏ ସବୁ ମଣିଷର ବ୍ୟକ୍ତିଗତ ଗୁଣ ।"

"ଏଇଟା ସାଧାରଣ କଥା । ମୋତେ ଆପଣ ଏତେ ଉପରକୁ ନେଇଗଲେ ! ମୁଁ ଭାରି ଖୁସି ଯେ ଆପଣମାନଙ୍କ ପରି ପ୍ରତିବେଶୀ ମୋତେ ମିଳିଛନ୍ତି । ନମସ୍କାର ଆଜ୍ଞା, ଆସୁଛି ।

"ନମସ୍କାର, ମଝିରେ ମଝିରେ ଆସିବେ ଆଜ୍ଞା ।"



## ୪

"ଅଚ୍ଛା, ସତ୍ୟସୁନ୍ଦର, ଏ ଲାଲ୍ ମେଟାଲ ଗୁଡ଼ାକ କାହିଁକି ମଗାଇଛ ? ମୁଁ ତ କହିଥିଲି କଳା ମେଟାଲ୍ ଯୋଗାଡ଼ କରିବାକୁ ।"

"ବୁଝିଲେ ଆଜ୍ଞା ମୁଁ ମିସ୍ତ୍ରୀ, ମାଲିକର ସବୁବେଳେ ଭଲ ଆଉ ମଙ୍ଗଳ ଦେଖେ, ଯୋଉଥିରେ କ୍ଷତି ହେବାର ଆଶଙ୍କା ଅଛି ମୁଁ ତା ଭିତରେ ପଶେନା । ଆପଣଙ୍କର ଦି' ପଇସା ଲାଭ ହେଲେ ଯିନା ଆପଣ ଦି'ପଇସା ମୋତେ ଦେବେ, କ୍ଷତି ପଡ଼ିଲେ ଦେବେ କଣ ?"

"ମୋର ଲାଭଟା କଣ କହିଚ ଶୁଣେ ।"

"ଶସ୍ତାରେ ଏ ମେଟାଲ୍ ମିଳୁଚି, ଅଯଥା ଖର୍ଚ୍ଚାନ୍ତ ହୋଇଥାନ୍ତେ କାହିଁକି ?"

"ମୋତେ ତମେ ପାଠ ଶିଖଉଚ, ହଇହୋ ଯେଉଁଗୁଡ଼ାକର ବଳ କେତେ, କଅଁରେ କଣ ସେଗୁଡ଼ାକ ବ୍ୟବହାର କରାଯାଏ, ସେହି ଫାଣ୍ଡାରେ ଯିନା ତାକୁ ବ୍ୟବହାର କରନ୍ତୁ । ମୁଁ ଦି'ମହଲାର ଫାଉଣ୍ଡେସନ୍ କଣ ଏଇ ମେଟାଲରେ ଦେବି ?"

ବୁଝିଲେ ଆଜ୍ଞା, ଆପଣ ଯିନା ନୂଆ କରି ଘର କରୁଛନ୍ତି, ହେଲେ ଏ ସାରା କାପିଟାଲଟା କ'ଣ କଳା ମୁଗନରେ ତିଆରି ହେଇଚି ? ଆମେ ଏଇ ହାତରେ ଖୁବ୍ ବଡ଼ ବଡ଼ ବିଲ୍ଡିଂ ଲାଲ ମେଟାଲରେ ସବୁ ଗଢ଼ିଚୁ । ଉପରକୁ ଉପର ମହଲା ମହଲା ଘର ଉଠାଇଚୁ । କଣ୍ଟ୍ରାକ୍ଟରମାନେ କଅଁରେ ଲାଲ୍ ମେଟାଲ ପକାନ୍ତି, କଳା ମେଟାଲର ପଇସା ନିଅନ୍ତି । ସେ ସବୁ ଏତେ ବଡ଼ ବଡ଼ ଘର ଯଦି କିଛି ଖରାପ ହୋଇନି, ଆପଣଙ୍କର ଏ କ ବୋଲି ଘରଯେ ଖରାପ ହେଇଯିବ । ଷ୍ଟିଙ୍ଗ୍ କରିନା ନାଁରେ ଆପଣ ଯେତେ ପଇସା ଖର୍ଚ୍ଚ କରିବେ ଏ ଘର ରାକ୍ଷସ ସବୁ ଖାଇଯିବ । ଉପ୍ପରି ପଇସା ତ ନୁହେଁ, ହକ୍ ଝାଳବୁହା ପଇସା । ତାକୁ ଅଯଥା ଅବ୍ୟାଦରେ ଖର୍ଚ୍ଚ କରିବେ କାହିଁକି ?

"ଆଚ୍ଛା, ଘିଅକୁ କେଉଁଠୁ ଆଣିଲ ?"

କାହିଁକି, ଝଡ଼ାନଦରୁ । ସେସ୍ତ ବା କୋଉ ମିଳୁଛି । ଦିନ ତମାମ ବୁଲି ବୁଲି ଶେଷରେ ଜଣେ ଖଣିବାଲାଠାରୁ ଏତକ ପାଇଥିଲି । ସବୁ ନାଲି ମେଟାଲ ଖରାପ ନୁହେଁ ଆଜ୍ଞା, ଚହ୍ନି କରି ଆଣି ଜାଣିଲେ ହେଲା । ବାଛୁକରି ଆଣିବାକୁ ପଡ଼ିଲାନା, ସମସ୍ତ ନେଲି । ଆପଣ ତ ପ୍ରଥମେ ନିଜେ ଯୋଗାଡ଼ କରିବେ ବୋଲି କହୁଥିଲେ, କରିଥିଲେ ଜାଣିଥାନ୍ତେ କାମଟା କେତେ କଷ୍ଟକର । ମୋ ଉପରେ ଯେତେବେଳେ ଭରସାପରେ ଛାଡ଼ିଦେଇଛନ୍ତି, ମୁଁ ଆପଣଙ୍କ ଭଲ ପାଇଁ ଯାହା କରୁ କରିବି । ଏଥର ସକାଳେ ଗାଡ଼ି ଯେ ସନ୍ଧ୍ୟାରେ ଫେରିଲି । ଡ୍ରାଇଭରଟା ଖପା, କୁଲିମାନେ ଖପା, ଡ୍ରାଇଭରକୁ ପାଞ୍ଚ, କୁଲିମାନଙ୍କୁ ଦଶଟଙ୍କା ଖାଇବା ପାଇଁ ଦେଲାକୁ ଟିକଏ ରକ୍ଷା ମିଳିଲା ।

"ଟ୍ରିପ୍‌ଟା କେତେ ଟଙ୍କା ?"

"ଅଢ଼େଇ ଶହ ଟଙ୍କା ଆଜ୍ଞା, ଟ୍ରକ୍ ଭଡ଼ା, କୁଲିଖର୍ଚ୍ଚ, ମେଟାଲ ଦାମ୍ । କଳାମେଟାଲ ଆଣିଥିଲେ ଡବଲ ପଡ଼ିଥାନ୍ତା । ନୋଟ୍ ଅଢ଼େଇ ଶହ ଲାଗ ।"

"ଆଚ୍ଛା ନିଅ, ପେମେଣ୍ଟ କରି ଦେବ ।"

"ଆଜ୍ଞା ଆଉ ପଇଁତିଶ ।"

"କାହିଁକି ?"

"କହିଲିପରା ସେମାନଙ୍କର ଖାଇବା ପାଇଁ ପନ୍ଦର, ମୋର ଦିନ ତମାମର ମଜୁରି ବେଶି ନୋହିବାର କଥା, ପନ୍ଦର, ଖାଇବା ଖର୍ଚ୍ଚ ପାଞ୍ଚ, ପଇଁତିଶ ଟଙ୍କା ହେଲାନି ! ଆପଣଙ୍କ ଡ୍ୟୁଟିରେ ଥିଲି, ମୋ ମଜୁରିଟା ପାଇବନି ।"

"ମୋତେ ତା'ହେଲେ ଏ ସବୁ ସହିବାକୁ ପଡ଼ିବ ।"

"ନିଶ୍ଚୟ, ଏଇଟା ମାମୁଲି କଥା, ଆପଣ ଆମ ପେଟ ଅଣ୍ଟା ନ ଦେଖିଲେ ଆପଣଙ୍କର ପାଞ୍ଚ ପଇସା ଲାଭ ପାଇଁ ଆମେ ବା କାହିଁକି ଖଟିହେବୁ ।"

"ଆଚ୍ଛା ନିଅ ।"

ସତ୍ୟସୁନ୍ଦର ପଇସାତକ ହାତକୁ ନେଇ ଖୁବ୍ ବିଶ୍ୱାସଭରା କଣ୍ଠରେ କହିଲା, "ଆଜ୍ଞା, ପଇସା ପଇସାର ହିସାବ; ଖାତାରେ ଲେଖୁଛନ୍ତି ନା ନାହିଁ ?

ଦେଖନ୍ତୁ, ଘର ଖଣ୍ଡେ କରିଛନ୍ତି ମାନେ, ଆପଣଙ୍କ ଉପରେ ବହୁ ଲୋକଙ୍କର ଦୃଷ୍ଟି, ଆପଣଙ୍କ ବସ୍ତାଘରକୁ ଅନୁମତି ଆଣିଲେଣି ନା ନାହିଁ।

"ଅନୁମତି! ବସ୍ତାଘର ଅନୁମତି ତ ଆଗ ଦରକାର, ସେଇମାନେ ତ ଆଗ ହଇରାଣ କରିବେ। ଏ ଯୁଗରେ ଆପଣ ଏତେ ସରଳ ହେଲେ ଚଳିବ! ଅଫିସରେ ବୁଝିକି କାଲି ଦରଖାସ୍ତ କରିଦେବେ। ତା'ଛଡ଼ା ଟିକିନିଖି ହିସାବ, ଖରଚର, କ୍ୟାସମେମୋ ସାଇତି ରଖିବେ। ପରେ କେହି ଯଦି କଥା ଉଠେଇବ ଯେ ଏ ଘରେ ହିସାବ ବାହାରୁ ତ ଯଥେଷ୍ଟ ଅଧିକ ଟଙ୍କା ଲାଗିଯାଇଛି, ସେତେବେଳେ ଏହି କାଗଜପତ୍ର ଆପଣଙ୍କୁ ଦାଖଲ କରିବାକୁ ପଡ଼ିବ। ମଣିଷକୁ ବାଘ ଶିଆଳ କାଟେନା ଯନ୍ତ୍ରଣା କାଟେ। ମୁଁ ଯେତେ ନୂଆ ବାବୁଙ୍କର କାମ କରିଛି ସମସ୍ତଙ୍କୁ ଠିକ୍ ସମୟରେ ଠିକ୍ କଥା କହେ।"

"ତମେ ଏସବୁ କ.ଣିଲ କିମିତି?"

"ମୁଁ ଏସବୁ ହଜାର ହଜାର ଲୋକଙ୍କର କାମ କରୁଚି। ସେମାନେ ପ୍ରଥମରୁ ଭୁଲ୍ କରି କିମିତି ହନ୍ତସନ୍ତ ହୁଅନ୍ତି, ମୁଁ ସବୁ ଦେଖିଛି। ସେମାନଙ୍କୁ ମଧ୍ୟ ବିପଦରୁ ରକ୍ଷାକରିଚି। ଆପଣଙ୍କର ଆହୁରି ଅନେକ କଥା ମୋଠୁ ଜାଣିବାର ଅଛି, ଯଥା ସମୟରେ କହିବ।

"ଆଜ୍ଞା ନମସ୍କାର।"

ମଟର ସାଇକେଲରୁ ଜଣେ ଯୁବକ ଓହ୍ଲାଇ ତାଙ୍କ ପାଖକୁ ଆସିଲେ।

"ଓ୍ୱେଲ୍ ସାର୍, ଆଇଆମ୍ ମିଃ ପଶୁପତି।"

"ଥ୍ୟାଙ୍କ୍ୟୁ, ଇଜ୍ ଦେୟାର ଏନି ଓ୍ୱାର୍କ ଉଇଥ୍ ମି।

"ପ୍ରମ୍ଲି ଏ କର୍ଟସି ଭିଜଟ୍ ସାର୍।"

"ଆଇ ଆମ୍ ଭେରି ଗ୍ରେଟ୍‌ଫୁଲ୍।"

"ମୁଁ ହେଉଛି ସେକ୍ରେଟେରିଏଟ୍ ର ଜଣେ ଅସିଷ୍ଟାଣ୍ଟ, ମାଇନିଂ ଡିପାର୍ଟମେଣ୍ଟରେ କାମକରେ। ଏଇ ନିକଟରେ ମୋର ଗାଁ। ଆପଣ ବୋଧହୁଏ ଘର ତିଆରି କରିବାରେ ଲାଗିଛନ୍ତି।"

"ହଁ, ଯାହା ତାହା କୁଡ଼ିଆ ଖଣ୍ଡେ ଠିଆ ହୋଇ ରହିଯିବ।"

"ତେବେ ଦୟାକରି ମୋତେ କ୍ୱାଟର ନମ୍ବର ଦିଅନ୍ତୁ, ମୁଁ ଆପଣଙ୍କୁ ଏ କାମରେ

ସାହାଯ୍ୟ କରିବ । ବୋଧହୁଏ ପ୍ଲାନ୍ ଆପ୍ରୁଭ କରିନଥିବେ । ମୁଁ ସେ ସବୁ କାମ କରାଇ ଦେବ । ଆପଣଙ୍କର କେତୋଟା ରୁମ୍ ଦରକାର, ଡବଲ ଷ୍ଟୋରିଡ଼ ହେବ ନା ସିଙ୍ଗଲ୍, କେବଳ ସେତକ ମୋତେ କହିଦେବେ । ମନ-ମୁତାବକ ପ୍ଲାନ୍‌ଟାଏ କରାଇ, ଅପ୍ରୁଭ କରାଇ ଧରାଇ ଦେବ, ଆପଣଙ୍କର ହାତ ଘୋଡ଼ ଲଗିବନି । ସେଇଟା ଆଜ୍ଞା କମ୍ ଝିନ୍‌ଝଟିଆ କାମ ନୁହେଁ, ଆପଣ କ'ଣ ଏତେ ଧାଁଧପଡ଼ କରିପାରିବେ ! ପାରିଲେ ବି ଆମକୁ ଯୋଉ କାମ ପନ୍ଦର ଦିନ ଲଗିବ, ଆପଣଙ୍କୁ ସେଇଟା ପନ୍ଦର ମାସ ଲଗିଲେ ବି ସରିବନି ।"

ସତ୍ୟସୁନ୍ଦର ହସି ହସି କହିଲା, "ଶୁଣିଲେ ଆଜ୍ଞା, ପଶୁପତି ବାବୁ ଏ ସବୁ କାମରେ ଧୁରନ୍ଧର । ତାଙ୍କର ଚିହ୍ନା ଲୋକ ସବୁ ଦପ୍ତରରେ ଅଛନ୍ତି । ସେ ସବୁ ଜାଗାରେ କାମ କରାଇ ପାରନ୍ତି । ଆପଣ କେବଳ ଟଙ୍କାଟା ତାଙ୍କ ହାତକୁ ବଢ଼ାଇ ଦେଲେ ନିଶ୍ଚିନ୍ତ । ସେ ସବୁ କରିବେ ।"

"ତମେ ତାଙ୍କୁ ଚିହ୍ନିଲ କିପରି ସତ୍ୟସୁନ୍ଦର ?"

"ଆଜ୍ଞା, ସେ ଏଇ କାମ କରି ମାଲିକ ଆଉ ଆମମାନଙ୍କୁ ସାହାଯ୍ୟ କରୁଛନ୍ତି, ଆମେ ଚିହ୍ନିବୁନି କିପରି ?"

'ଆଚ୍ଛା ପଶୁପତି ବାବୁ, କେତେ ଟଙ୍କା ହେଲେ ପ୍ଲାନ୍ କାମ ତୁଟିଯିବ ।"

"ସେଇଟା ତ ଧରାବନ୍ଧା କଥା, ପାଞ୍ଚଶହ ଟଙ୍କା ଦରକାର ।"

"ଏଁ....ଏତେଗୁଡ଼ା ଟଙ୍କା ଏକାଠି ଦରକାର ?"

ବେଶି ନୁହେଁ କି କମ୍ ବି ନୁହେଁ, ଏଇଟା ଫିକସ୍‌ଡ଼ ରେଟ୍ । କିଏ କେତେ ପାଇବେ ତାର ଧରାବନ୍ଧା ହିସାବ ଅଛି । ସେଇ ଅନୁସାରେ ହେଲେ ପନ୍ଦର ଦିନରେ ପ୍ଲାନ ଆପ୍ରୁଭ ହୋଇ ବାହାରି ଆସିବ । ଦୁଇ ଚାରିଦିନରେ ହୋଇପାରିବ, ସେଥିପାଇଁ ଡବଲ ଟଙ୍କା ଦରକାର । ନିଜେ ଅଫିସର ଇଣ୍ଟରେଷ୍ଟ ନେଇ ଆଉ ଅଫିସରଠୁ କାମ କରାଇ ଆଣି ପ୍ଲାନ ବଢ଼ାଇ ଦେବ ।"

ଆଚ୍ଛା ପଶୁପତି ବାବୁ ! କାହାର କେତେ ପାଉଣା ଶୁଣେ ।"

"ଯେ ତିଆରି କରିଦେବ ସେ ନେବ ଏକଶହ । ପ୍ରାଇଭେଟ୍ ଆର୍କିଟେକ୍ଟ ଶହେ, ଗଭର୍ଣ୍ଣମେଣ୍ଟ ଆର୍କିଟେକ୍ଟ ଶହେ, ଟାଉନପ୍ଲାନିଂ ଶହେ । ଏନ୍. ଏ. ସି.ରେ ଶହେ, ପାଞ୍ଚଶହ ହେଲାତ ।"

"ଆଉ ସେ ପେଟ୍ରୋଲ୍ ପୋଡ଼ି ଏତେ ଧାଁ ଧପଡ଼ କରିବ ତା ଭାଗରେ ତ କିଛି ପଡ଼ିଲାନି !

ସେଇଟା ସାର୍ ମାଲିକର ଖୁସି ଉପରେ ନିର୍ଭର କରେ । ସେ ଯାହା ଦେବେ ସେଥିରେ ଆପତ୍ତି କିଛି ନାହିଁ ।

"ତେବେ ଲାଭ କଣ ? ଏତେ ପରିଶ୍ରମ ପାଇଁ ଯଦି ବିଶେଷ କିଛି ନ ପାଇବେ, ତେବେ ଏତେ କଷ୍ଟ ସହୁଛନ୍ତି କାହିଁକି ?"

"ସାର୍, ସେଇଟା ବିଜିନେସ୍‌ର ଗୁଡ୍ ଉଇଲ୍ କଥା । ମୁଁ ଏପାଖରେ ଆପଣଙ୍କୁ ସାହାଯ୍ୟ କରିଥିଲେ ସେ ପାଖରେ ଆପଣ ନୈତିକ ଦୃଷ୍ଟିକୋଣରୁ ଆମ ସହିତ ବିଜିନେସ୍ କରିବେ ।"

"ଆପଣ ଆଉ କି ବିଜିନେସ୍ କରନ୍ତି ପଶୁପତିବାବୁ ?"

ମୋର ପଥର ଖଣି ଅଛି ଆଜ୍ଞା, ମୁଁ କ୍ୟାପିଟାଲ୍‌ସାଗ୍ରି ପଥର ଯୋଗାଏ । ଆପଣ ଯିମିତି ପଥର ଖୋଜିଲେ ମୋ ପାଖରେ ପାଇବେ । କଳା ଆଖିଆ, ନାଲି ଆଖିଆ, ଦାନାଦାର, ମାଛ ଆଖିଆ, ଟାଣ, ଫମ୍ପା, ନରମା, ମୁଗୁନିମୁହାଁ, ଅକମି । ଯୋଉ ସାଇଜର ବି ଖୋଜିବେ ତାହା ମିଳିଯିବ । ଘର ଆରମ୍ଭ ଦିନଠୁ ଶେଷ ପର୍ଯ୍ୟନ୍ତ ଆଉ ହଇରାଣ ହରକତର ପ୍ରଶ୍ନ ନାହିଁ । ଶନିବାରକୁ ଶନିବାର ପେମେଣ୍ଟ । ତେବେ ପ୍ରଥମେ କିଛି ଆଡ଼ଭାନସ୍ ଦେବାକୁ ହେବ, ସେଇଟା ଶେଷ ହିସାବରେ ଆଡ଼ଜଷ୍ଟ କରାଯିବ ।"

"ଆଡ଼ଭାନସ୍ କାହିଁକି ?"

"ଧରନ୍ତୁ ପଥର କଟାଳୀମାନେ ପ୍ରତିଦିନ ପଥର ହିସାବ ଦେଇ ତାଙ୍କ ପଇସା ସଙ୍ଗେ ସଙ୍ଗେ ନେଇ ଯାଆନ୍ତି । ସାତଦିନ ଅପେକ୍ଷା କରନ୍ତିନାହିଁ, ଆମେ ଏଇ ଆଡ଼ଭାନସ୍ ପଇସାରୁ ତାଙ୍କୁ ଦେଇ, ଥରେ ପେମେଣ୍ଟ ପାଇଗଲା ପରେ ଆଉ ଅସୁବିଧା ହୁଏନି ।"

"ଆଚ୍ଛା ପଶୁପତିବାବୁ, ପ୍ଲାନଟା କରାଇ ଆଣନ୍ତୁ, ମୁଁ ଏକକାଳୀନ ଟଙ୍କାଟା ଦେଇଦେବି ।"

"ଆଡଭାନସ୍ ଦୁଇଶହ ଟଙ୍କା ଦେଇ ରଖନ୍ତୁ, ପରେ ଆଉ ତିନିଶହ ଦେଇଦେବେ । ଟଙ୍କା ନପାଇଲେ ପ୍ଲାନ କରିବା ଲୋକ ଛୁଇଁବନି । ଅନ୍ୟମାନଙ୍କ କଥା ମୁଁ ବିଚାର କରିବି ।"

"ଆଚ୍ଛା ପରଦିନକୁ ଯିବେ, ପଇସା ନେଇ ଆସିବେ ।"

"ଆସୁଚି ଆଜ୍ଞା, ନମସ୍କାର । ଘର ଠିକଣା ତ ରଖିଲି, ଠିକ୍ ସମୟରେ ଯାଇ ପହଞ୍ଚିବି ।"

ପଶୁପତିବାବୁ ଫେରିଗଲେ । ସତ୍ୟସୁନ୍ଦର ହସିହସି କହିଲା, "ପଶୁପତି ବାବୁ ଖୁବ ଭଲ ପିଲା । ସେ ମୋର ବି ବନ୍ଧୁ ଲୋକ, ମୁଁ ତାଙ୍କୁ କହିବି ସେ ଟ୍ରେନ୍ ଟିକେଟରେ କିଛି କମେଇଦେବେ । ଫେରି ଆସିଲାବେଳେ ଆମେ କଥାବାର୍ତ୍ତା ହେବା ।"

"ତୁମର ସେ ବନ୍ଧୁ ଲୋକ କିମିତି ?"

"ମୋର ସେ ଖୋଦ ଜ୍ୱାଇଁ ।"

"ଏଁ ତୁମର ସେ ଜ୍ୱାଇଁ ଅଥଚ ତୁମେ ସେତେବେଳେ ପରିଚୟ ଦେଲନି ।"

"କାହିଁକି ପରିଚୟ ଦେଲିନି ଆପଣ କ'ଣ ବୁଝି ପାରୁନାହାନ୍ତି ଆଜ୍ଞା, ମୁଁ ଗୋଟାଏ ଗରିବ ମିସ୍ତ୍ରୀ, ମୋର ଜ୍ୱାଇଁ ବୋଲି ପରିଚୟ ଦେଲେ ଆପଣମାନେ ତାଙ୍କୁ ନୀଚ ଭେକିବେ । ସେ ନିଜକୁ ଛୋଟ ବୋଲି ମଧ୍ୟ ଭାବିବେ । ଯେତେହେଲେ ସେ ଆପଣମାନଙ୍କ ପରି ଜଣେ ବଡ଼ଲୋକ । ଗାଡ଼ି, ମଟର, ଟ୍ରକ୍, ଟେଲିଫୋନ୍, ରେଫ୍ରିଜିରେଟର ସବୁ ଅଛି ତାଙ୍କର । ମୁଁ ତାଙ୍କୁ ମୋ ପରି ସାନ କରି ଦେବାକୁ ଚାହେଁନି ।"

"ତୁମେ ତା'ହାଲେ ଏଡ଼େ ବଢ଼ିଆ ଜ୍ୱାଇଁଟିଏ ପାଇଗଲ କିମିତି ?"

ସେଇଟା ଆଜ୍ଞା ମୋର ଭାଗ୍ୟ; ତାଙ୍କର ବଡ଼ପଣ । ସେ ପ୍ରଥମରୁ ବଡ଼ ଲୋକ ନଥିଲେ । ନିଜ ଚେଷ୍ଟାରେ ସେ ଏତେ ଉପରକୁ ଉଠିଛନ୍ତି । ତେବେ ଯେତେବେଳେ ସେ ନିଜକୁ ଆଗେଇ ନେଇ ପାରିଲେଣି, ସେତିକିବେଳେ ମୋ ଝିଅ ସାଥିରେ ତାଙ୍କର ବିବାହ ହୋଇଛି । ତାଙ୍କ ଭଳିଆ ଗୋଟିଏ ଦାମିକା ଜ୍ୱାଇଁ ପାଇବା ପାଇଁ ବହୁତ ବଡ଼ ଲୋକ ଅନେକ ପ୍ରଲୋଭନ ଦେଖାଇଛନ୍ତି । ଅନେକ ମୂଲଚାଲ ହୋଇଚି । ଅନେକ ଅନେକ ଯୌତୁକର ଲୋଭ ଦେଖାଯାଇଛି, ସେ କିନ୍ତୁ ଭାବିଲେ ବଡ଼ ଘରର ପଳାଶ ଫୁଲ ଆଣିବା ଅପେକ୍ଷା ଗରିବ ଘରର ବଣମଲ୍ଲୀକୁ ଆଦର ନେବା ସବୁ ଦିଗରୁ ମଙ୍ଗଳ । ଧନୀ ଲୋକମାନେ ପଇସା ବଳରେ ଗରିବଘରର ଯୋଗ୍ୟ ପିଲାମାନଙ୍କୁ ଲୋଭ ଦେଖାଇ କିଣି ନେଉଛନ୍ତି ଜ୍ୱାଇଁ ଭାବରେ । ଗରିବ ଘରର ଯୋଗ୍ୟା ଝିଅମାନଙ୍କୁ ଗ୍ରହଣ କରୁନାହାନ୍ତି ପଇସା ପାଇବେନି ବୋଲି । ତାଙ୍କର ବିଚାର ଗରିବ ଘରର ଯୋଗ୍ୟ ପୁଅମାନେ ଗରିବ ଘରର ଯୋଗ୍ୟା ଝିଅମାନଙ୍କୁ ଗ୍ରହଣ କଲେ ସମାଜରେ ସମତା ରହିବ । ମନ

ଠିକ୍ ମିଳିବ । ବଡ଼ଘର ଝିଅକୁ ଗରିବ ଯୋଗ୍ୟ ପିଲା ବିବାହ କଲେ ଧନରେ ଗ୍ରଶ୍ୱର ହାତରୁ ଚୁଡ଼ି ଉତ୍ତ୍ରହୋଇ ପୁଣି ଫିଙ୍ଗାଯିବ । ବାପ, ମାଁ, ଘର ସମାଜ, ବନ୍ଧୁ ବାନ୍ଧବ ସବୁ ଦୂରେଇ ଯିବେ । ଯିଏ ଯୋଉ ଶ୍ରେଣୀର ସେ ସେଇଠିକରେ ରହିଲେ କିଛି ଅସୁବିଧା ହବନି । ମୋ ଝିଅ ତ ପଢ଼ୁଆ ପିଲା, ଦେଖିବାକୁ ସୁନ୍ଦର, ଭାରି ମେଳକ, ସେ ସେଇଥି ପାଇଁ ତାକୁ ପସନ୍ଦ କଲେ ।"

ସତ୍ୟସୁନ୍ଦର ! ସତରେ ତମେ ଭାଗ୍ୟବାନ, ତମେ ଧନ୍ୟ, ତମ ଜ୍ୱାଇଁ ଧନ୍ୟ, ତମ ଦର୍ଶନ ବି ଧନ୍ୟ । ସମରେନ୍ଦ୍ର ମନେ ମନେ ଭାବିଲେ, ଏ ତ ଚିରକାଳ ସତ-କଥା, ସୂର୍ଯ୍ୟ ଆଉ ପଦ୍ମର ପ୍ରୀତି ଅଭେଦ । ପଦ୍ମ ତାର ପ୍ରୀତି ପାଖୁଡ଼ା ଖୋଲି ତାର ପ୍ରାଣ ସୂର୍ଯ୍ୟଙ୍କୁ କୋଳ କରିବାକୁ ଆହ୍ୱାନ ଜଣାଏ । ଶ୍ରଦ୍ଧାର ନୈବେଦ୍ୟ ଢାଳେ । ଗରିବ ପରିବାରର ମାଇଚିଆ ସୂର୍ଯ୍ୟଗୁଡ଼ାକ ଧନୀ ପରିବାରର ପଲାଶ ଫୁଲକୁ ପଦ୍ମ ଭାବି ରୋଷାପଣେ ତା ହାତରେ ନିଜକୁ ଟେକି ଦିଅନ୍ତି ଅଥଚ ଗରିବ ପରିବାରର ପ୍ରକୃତ ପଦ୍ମ ପ୍ରତୀକ୍ଷା ଭିତରେ ମଉଳି ଯାଏ । ଏହା ହିଁ ତା ଯୋଗ୍ୟତାର ପୁରସ୍କାର । ସେମାନେ ଧନୀକଗୃହକୁ କୁଳବଧୂ ହୋଇଯିବାର ସୁଯୋଗ ପାଆନ୍ତି ନାହିଁ କିମ୍ବା ତାଙ୍କର ନିଜ ଗରିବଶ୍ରେଣୀର ଯୋଗ୍ୟ ସନ୍ତାନମାନଙ୍କର ପତ୍ନୀ ହେବାର ସୌଭାଗ୍ୟ ଲାଭ କରିପାରନ୍ତି ନାହିଁ । ଗରିବ ପିଲା ବନ୍ଧୁତାରେ ଉପରକୁ ଉଠିବାର ପ୍ରତ୍ୟାହରିକ ବଡ଼ ଘରର ଆତ୍ମାଭିମାନ, ଅହଂକାର ଓ ସମସ୍ତ ଅବଗ୍ରହର କୋଳାହଳ ଭିତରେ ନିଜର ମାନସିକ ଶାନ୍ତି ଟିକକ ହରାଏ । ସାରାଜୀବନ ଜୀବନର ଏକ ଅସମାପ୍ତ ଅଧ୍ୟାୟରେ ପରିଣତ ହୁଏ ।

"ଆଚ୍ଛା ସତ୍ୟସୁନ୍ଦର ତମ ଝିଅ ପଢ଼ିଛି କଣ ?"

ମେଟ୍ରିକ ପାଶକରିବା ପରେ ମୁଁ ତାକୁ କଲେଜକୁ ପଠେଇଥିଲି । ସେଇଠିକବେଳେ ସୁବିଧା ପାଇଗଲି, ତା ବିବାହ କାମ ତୁଟାଇଦେଲି । ଏବେ ଆଇ. ଏ. ଶେଷକରି ବି. ଏ. ପଢ଼ୁଛି । ଏଇବର୍ଷ ପରୀକ୍ଷା ଦେବ । ସେ ନିଶ୍ଚୟ ପାଶ୍ କରିବ ଆଜ୍ଞା, ଭାରି ଭଲ ପଢ଼େ । ଜ୍ୱାଇଁ ମୋର ଏମ୍. ଏ. ।

ଓ ! ଚମତ୍କାର, ଝିଅକୁ ଆଉ ବେଶି ପଢ଼େଇବନି । ଯେତିକି ଉପରକୁ ଉଠିବ ସେତିକି ବାହାରିଯିବାକୁ ଗୋଡ଼ ଖୋଲିବ । ଘରଯାରଟା ତାକୁ ବନ୍ଧନପରି ଲାଗିବ । ସେ ଚାହିଁବ ମୁକ୍ତ ହେବାକୁ ।

"ସେଇଟା ସତକଥା ଆଜ୍ଞା; ତେବେ ମୋର ତା ଉପରେ ଆଉ କି ଅଧିକାର ଅଛି ? ଦେଲି ନାରୀ; ହେଲି ପର । ଏଣିକି ତା ସ୍ୱାମୀ ତାକୁ ଯିମିତି

ଚଳେଇବ ସେ ସିମିତ ଚଳିବ । ମୁଁ କିନ୍ତୁ ଭାବେ, ସଂସାରଟା ସତରେ ଯଦି ଗୋଟାଏ ବନ୍ଧନ ହୋଇଥିଲେ ମଣିଷ ତା' ଭିତରୁ ମୁକୁଳି ପଳାଇବାକୁ ଚାହିଁବ । ସଂସାରଟା କଣ ସତରେ ଏକ ବନ୍ଧନ !

"'ତା' ହେଲେ ଆଉ କ'ଣ ସତ୍ୟସୁନ୍ଦର ?"

ବନ୍ଧନ ହୋଇଥିଲେ ଏ ସଂସାର ଖଣ୍ଡରେ ଯେତେ ଲୋକ ସୃଷ୍ଟି ଆରମ୍ଭରୁ ବନ୍ଦୀହେଲେଣି, କୋଉଦିନୁ ତାକୁ ଦୋହଲାଇ ଦୋହଲାଇ ଉପାଡ଼ି ଦେଇ ସାରନ୍ତେଣି । ଖଣ୍ଡ ଖଣ୍ଡ ପଡ଼ନ୍ତାଣି……ସଂସାର ଭୁଷୁଡ଼ି ପଡ଼ନ୍ତାଣି । କାହିଁ ତ ଏ ଯାଏ କିଛି ହୋଇନି । କଳିକାଳର ଲୋକଗୁଡ଼ାକ ସବୁ ଯୁଗର ଲୋକ ଅପେକ୍ଷା ବେଶି ଉଚ୍ଛୃଙ୍ଖଳ, ବେଶି ପାପୀ । ସେଗୁଡ଼ାକ ଏ ସଂସାର ଖଣ୍ଡକୁ ଆଜିଯାଏ ରଖିଆନ୍ତେ ! ମୋର ଧାରଣା ସଂସାର ବନ୍ଧନ ନୁହେଁ ।"

ସମରେନ୍ଦ୍ର ହସି ହସି ବେଦମ ହୋଇଗଲେ । ତାଙ୍କର ପୂର୍ବ କ୍ରୋଧ କେତେବେଳୁ ଲିଭିଗଲାଣି । ସତ୍ୟସୁନ୍ଦର ତାଙ୍କୁ ଯେତିକି ହଇରାଣ କରେ, ତାଠାରୁ ଯଥେଷ୍ଟ ଅଧିକ ଆନନ୍ଦ ଦିଏ ବୋଧହୁଏ । ଏତିକିବେଳେ ଆଉ ଜଣେ ଲୋକ ଆସି ପହଞ୍ଚିଗଲା । ସେମାନଙ୍କୁ ନମସ୍କାର କରି ନୀରବରେ ଛିଡ଼ାହେଲା । ସେମାନେ ମଧ ପ୍ରତିନମସ୍କାର କଲେ । ସମରେନ୍ଦ୍ର ତା ମୁହଁକୁ ଅନେଇଲେ । ଲୋକଟିର ଆଖିରେ ପ୍ରଶ୍ନବାଚୀ । ସେ ତାକୁ ପଚାରିଲେ, "ମୋ ପାଖରେ ତମର କଣ କିଛି କାମ ଅଛି ?"

"ଆପଣଙ୍କ ପାଖରେ ଏ ମିସ୍ତ୍ରୀ ବାବୁଙ୍କୁ ଦେଖି ଭାବିଲି ବାବୁଙ୍କର ବୋଧହୁଏ କିଛି କାମ ଧାମ ହେବ । କାମ ବୁଝିବାକୁ ଚାଲିଆସିଲି । ମୋତେ କିଛି କାମ କରିବାକୁ ଦିଅନ୍ତୁ । ଯୋଉଠେ ହେଲେ ତ ଖଟିବା ।"

ସମରେନ୍ଦ୍ର ପଚାରିଲେ, "ଏଥିପୂର୍ବରୁ କେଉଁଠେ କାମ କରୁଥିଲ ?"

"ମୁଁ ଆଜ୍ଞା ଜଣେ ପେଟି ଠିକାଦାର ପାଖରେ କାମ କରୁଥିଲି । ତା' ଉପରେ ମୋର ପନ୍ଦର ଦିନର ପଇସା ବାକି ଅଛି । ହପ୍ତାକୁ ହପ୍ତା ପେମେଣ୍ଟ ସେ କରେନି, ହେଲେ କାଟି କାଟି ଅଠଆଠ ଦେଇଦିଏ । ଏବେ ଖବର ପାଇଲି ମା ମୋର ଗାଁ ରେ ବାଧିକି ପଡ଼ିଚି, ତା' ପାଖରେ କେହି ନାହାନ୍ତି । ତାକୁ ପଇସା ମାଗିଲି ମା ପାଇଁ ଔଷଧ କିଣିବି ବୋଲି । କେଡ଼ୁଗ ହେଲା, ସେ କିଛି ବୁଝିଲାନି । ସେ କହିଲା, "ତୋର ମା' ମରିଗଲେ ମୋର କ'ଣ ଗଲା ।"

"ଆଚ୍ଛା ଏଇଆ କହିଲା ?"

"ହଁ ଅଜ୍ଞା ମିଛ କହୁନି, ଧରମ ସହିବନି । ମୋ ମୁଣ୍ଡକୁ ରାଗ ଚଢ଼ିଗଲା, ଖାଲି ଯୋଉ ଗଛ ଗୁଡ଼ିକ ଆଗ୍ରା କରି ବଢ଼ିଥିଲି ସେ ତ ଉପୁଡ଼ିପଡ଼ିବ, ମୋର ବଞ୍ଚିବାରେ କି ଲାଭ ଅଛି । ଭଗବାନଙ୍କୁ ସାକ୍ଷୀ ଦେଇ, ରାଗରେ ଚାଲିଆସିଲି ଅଜ୍ଞା !"

ସମରେନ୍ଦ୍ର ଲୋକଟିକୁ ଆପାଦମସ୍ତକ ନିରୀକ୍ଷଣ କଲେ । ଲୋକଟିର ବୟସ ଛବିଶ ସତେଇଶରୁ ଅଧିକ ହେବନି । ରକ୍ତହୀନତା ଯୋଗୁ ପାଦ ମୁହଁ ଫୁଲିଣିଆ ଜଣାପଡ଼ୁଛି । ଆଖି ପିଟାଳିଆ, ବହୁ କଷ୍ଟରେ କଥାବାର୍ତ୍ତା କରୁଚି । ଲୁଗା ଖଣ୍ଡିକ ସାତସିଆଁ, ସେ ପୁଣି ତାକୁ ପଚାରିଲେ—

"କିରେ, ତୁ ଚାଲି ଆସିଲୁ କାହିଁକି ? ତୋତେ ଯେତେବେଳେ ଯିଏ ଯାହା କହିଦେବ ତୁ ବଗିଡ଼ି ଯାଇ ପଳେଇବୁ । ତୋ ପଇସା ପତ୍ର ଆଦାୟ କରିବୁନି, ଏଇଟା କି କଥା, କାହା ଉପରେ ତୁ ଅଭିମାନ କରିଚୁ, କିଏ ତୋ ଅଭିମାନ କଥା ବୁଝିବ ।"

ନାହିଁ ଆଜ୍ଞା, କାହା ଉପରେ ଆଉ ଅଭିମାନ କରିବି—ନିଜ ଛଡ଼ା । ଆମେ ତ ଗରିବ ଗୁରୁବା ଲୋକ, ଆମର ନିଜର ବୋଲି କିଛି ନାହିଁ, ସେଇଥିରୁ ଗୁଡ଼ାଏ ଧରିଚେ । ଟିକିକୁ ରାଗ, ଅଭିମାନ, ଭୁଖା, ଆଡ଼ଭୁଖା । ତାଙ୍କର କ'ଣ ହଉଚି, ମାଲିକର ଲାଭ । ସବୁ କ୍ଷତି ତ ଆମର ।

"ଜାଣିଚୁ ତ ଯାଉନୁ, ତୋ ପଇସା ଆଦାୟ କରି ଆଣ । ତା'ପରେ କାମ ନ କଲେ ଆସିବୁ ତୋ କଥା ବିଚାର କରିବା ।"

ସତ୍ୟସୁନ୍ଦର ହସି ହସି କହିଲେ, "ଆଜ୍ଞା ସେ ଲୋକଟା ସେଇଆ । ତାର ନାକ ଅଗରେ ରାଗ । ତା ପ୍ରେଷ୍ଟିଜ୍ ଭରା ଝାନର । ଇଅଡ଼େ ପୁଣି ମୂଲ ନ ଲଗିଲେ ବଞ୍ଚିବନି । କିଏ କ'ଣ ଟିକିଏ ବାଧିଲା ପରି ତାକୁ କହିଦେଲେ ସେ ସେଠୁ ପଳାଇବ । ତାର ଯେତେ ପଇସା ଥାଉ ପଛକେ ଆଉ ତା ଖୋଜି ମାଗିବନି । ଠିକାଦାରମାନେ ତାର ଏ ପ୍ରକୃତି ଜାଣିଗଲେଣି । ତାକୁ ଖଟଆ ଦଅନ୍ତି, ପଇସା ପତ୍ର ବି ହପ୍ତା ହପ୍ତା ଦଅନ୍ତି, ଶେଷ ବେଳକୁ ଇମିତି କାଟୁକଥା ପଦେ ପଦେ କହି ଦଅନ୍ତି ଯେ ସେ ଏକାଥରକେ ପଳାଏ, ମାସେ ପନ୍ଦର ଦିନର ପଇସା ତାଙ୍କ ପାଖରେ ରହିଯାଏ । କେତେ ଠିକାଦାରଙ୍କଠେ ଇମିତି କେତେ ପଇସା ତାର ଥିବ । ଆଉଥରେ ଯାଇ ମାଗିଲେ ସେମାନେ ଦେଇ ଦିଅନ୍ତେ । ସେ ମାଗିବନି, କି ସେମାନେ ଦେବେନି ।

"ଆଚ୍ଛା ଶଶୁର ମିସ୍ତ୍ରୀ ତମେ ଜାଜକଥା କହୁନା, ତମ ଉପରେ ମୋର ତ ପାଞ୍ଚ-ଦନର ପଇସା ବାକି ଅଛି, ମୁଁ ଏଗରେ ମାଗିଲିନ ବୋଲି ତମେ ଯାଚ କଶ ମେତେ ଦଉଚ ? ହକ୍ ହାଡ଼ ଭାଙ୍ଗି ମୁଣ୍ଡ ଝାଳ ତୁଣ୍ଡରେ ମାଶ କାମ କଶଥିଲି ନା ନାହିଁ ।

"ତୁ ତ ପାଖ ମାଡ଼ିଲୁନ, ମଣିଷର କ'ଣ ସୁବିଧା ଅସୁବିଧା ନାହିଁ । ନେ···ଏଇ ଦଶଟଙ୍କା ଅଛି, ପରେ ଯାଇ ଆଉ ତକ ପଇସା ନେଇଆସିବୁ । ମୁଁ କାହାର ପଇସା ଉଡ଼େଇ ଦବା ଲୋକ ନୁହେଁ । ଭଗବାନ ମୋତେ ଖୁବ୍ ଭଲରେ ରଖିଛନ୍ତି । ବାବୁଙ୍କର ଏଇଠେ କାମ ହେବ, ମୋ ସାଥିରେ କରବୁ, ତୋ ପଇସା ତୁ ପାଇଯିବୁ, ଘରକୁ ନ ଗଲେ ନାହିଁ, ତୋ ସମ୍ମାନ ତଳେ ପଡ଼ିଯିବ' । ସାର୍ ମୁଁ ଆସୁଚ । ଆପଣ କଥା ହେଉଥାନ୍ତୁ । ନମସ୍କାର ।"

ସତ୍ୟ ସୁନ୍ଦର ଗ୍ଭଲିଗଲା । ସମରେନ୍ଦ୍ର ତାକୁ ପଚ୍ଚରିଲେ ।

"ଇରେ ତୋ ନାଁ କଣ ?"

"ଦୁଃଖୀ !"

"ତୋ ମା'ର ବୟସ କେତେ ?"

ଆଜ୍ଞା ଅଶୀ ପୂରି ପାଞ୍ଚ ହେଲଣି । ପାଚଲି ପତର କେତେବେଳେ ଖସିପଡ଼ିବ ।

"ତୋର ଆଉ କିଏ ଅଛନ୍ତି ?"

"ନା କେହି ନାହାନ୍ତି, କୁଡ଼ିଆଟିଏ ଅଛି, ଭାଇ ଭଉଣୀ ମିଶି ଆମେ ଜନମ ହୋଇଥିଲୁ ଚଉଦ । ସମସ୍ତେ ଖସି ପଡ଼ିଲେଣି, ମୁଁ ଏକା ଅଛି । ମୁଁ ବି ମା' ସାଥିରେ ସାଥୀ ହେବ ।

"ବୁଢ଼ୀ ଚଳୁଚ କମିତ, ତୁ ତାକୁ ନେଇଆସୁନୁ, ତା' ବୋହୂ ପାଖରେ ସେ ରହିବ । ସେ ତାର ସେବା ଟିକିଏ କରିବେ ।

"ମୁଁ ବାହା ହୋଇନ ଆଜ୍ଞା, ମୋ ଭଳି ଅସୁରଟାକୁ କିଏ ଝିଅଦବ ? ଦେଲେ ବା ମୁଁ କ'ଣ ତାକୁ ଚଳେଇ ପାରିବ । ମା' ଗାଁ ଟା ଯାକର ପିଲଙ୍କୁ ଆଦର ରଖି-ଛାଇଚ । ସେ ଗାଁ ଟା ଯାକର ଆଈ । ତାକୁ ଛାଡ଼ିଲେ ସେ ପିଲାଏ ଝୁରିବେ । ସେ ବି ତାଙ୍କୁ ଛାଡ଼ି ଆସିଲେ ମରିଯିବ ।

"ସେ କ'ଣ ଚକାବଡ଼ା କରି ଚଳିପାରୁଚ ?"

"ଗାଁ ର ଝିଅ ବୋହୂମାନେ ନଈରୁ ପାଣି ଆଣି ମାଠିଆରେ ଭରଉଥାନ୍ତି । ଚୁଲାରେ ପାଣିହାଣ୍ଡି ବସାଇ ଦଅନ୍ତି, ବୁଢ଼ୀ ଚୁଲି ପାଖରେ ବସି ଭାତ ରାନ୍ଧେ । ସବୁ ଯୋଗାଇ ଦେଲେ ବୁଢ଼ୀ ରାନ୍ଧିବ । ହାତ ତ ଥକିଲେଣି, ହାଣ୍ଡି ଟେକି ପାରୁନି । ସମସ୍ତେ ତାକୁ ସାହାଯ୍ୟ କରନ୍ତି

ସତ୍ୟସୁନ୍ଦର ଏଥିଭିତରେ ଭାଇଙ୍କଠାରୁ ବିଦାୟ ନେଇ ଛକ ପାନ ଦୋକାନରେ ବସି ପାନ ଖାଉଥିଲା । ଦୁ' ପାନ ଖାଇ ସେ ସାଇକେଲ ଖଣ୍ଡିକ ଧରି ଗାଁ ଆଡ଼କୁ ମୁହେଁଇଲା ସମରେନ୍ଦ୍ର ତାକୁ ଚାହିଁ ରହିଲେ । ସାଇକେଲ ସହିତ ମଣିଷଟି ଆଦୌ ଖାପ ଖାଉନ । ନିବିଡ଼ ଅସାମଞ୍ଜସ୍ୟ ଭିତରେ ସେ ତା ସଓ୍ୱାରଟି ଚଳେଇଛ । ସାଇକେଲଟିର ବୟସ ବୋଧହୁଏ ପଚାଶ ଷାଠିଏ ବର୍ଷରୁ କମ୍ ହେବନି । ଗୋଟାଏ ପାଖେ କାଠ ପେଡ଼ାଲ, ଆରପାଖେ ପେଡ଼ାଲ ନାହିଁ । ବୟସ ଭାରରେ ମଣିଷ ଲଇଁ ପଡ଼ିଲାପରି ହ୍ୟାଣ୍ଡେଲଟି ତଳକୁ ଲଇଁଗଲାଣି । ପଛ ମଡ଼ଗାର୍ଡ଼ଟା ନାହିଁ, ସର୍କସର ସାଇକେଲ ପରି କେବଳ ଚକଟା ଘୂରୁଚି । ଆଗ ମଡ଼ଗାର୍ଡ଼ଟି ଦଦରା, ଅନେକ ଜାଗାରେ ପ୍ୟାଚ ପଡ଼ିଚି । ଚକ ଗୁଡ଼ାକ ଗେଟିସ୍ ପାଇଁ ଫୁଲିସାଇଚି ଓ ରାସ୍ତାରେ ଗଡ଼ିଲା ବେଳେ ଧକଡ଼୍ ଚକଡ଼୍ ହୋଇ ସତ୍ୟସୁନ୍ଦରକୁ ପକେଇ ଉଠେଇ ନଚେଇ ନଚେଇ ତା ଲକ୍ଷ୍ୟସ୍ଥଳକୁ ନେଇ ପହଞ୍ଚାଇ ଦିଏ । ସେ କଳା ମଚମଚ୍ ହୋଇ ମଣିଷଟିଏ । ଗୋଟିଏ ଗୋଡ଼ ଗୋଦରଗ୍ରସ୍ତ ଏବଂ ଅସ୍ୱାଭାବିକ ଭାବରେ ମାଂସର ମେଦ୍ଦଳଟିଏ ବୋହୁଛି । ନୀରବତା ଭଙ୍ଗକରି ଦୁଃଖୀ ଆରମ୍ଭ କଲା,

"ଅଜ୍ଞା, ଏ ଧର୍ମରାଜଙ୍କୁ ଆପଣ କୋଉଠୁ ପାଇଲେ ?

"କାହିଁକି କ'ଣ ହେଲା କି ?" .

"ଆଜ୍ଞା କ୍ୟାପିଟାଲରେ କ'ଣ ମିସ୍ତ୍ରୀର ଅଭାବ ଥିଲା ଯେ ଶେଷବେଳକୁ ତା ପାଖରେ ପହଞ୍ଚିଲେ ?"

"ସେ କ'ଣ ଭଲ ଲୋକ ନୁହେଁ, କାମ ଧାମ କ'ଣ ଜାଣେନା ?"

"କାମ ଜାଣେ, ସେ ତ ଆପଣଙ୍କୁ ପାଠ ପଢ଼େଇବ, ଆପଣ କ'ଣ ତାକୁ କଥାରେ ଜିତିବେ ଯେ କାମ ଆଦାୟ କରିବେ । କେତେ କେତେ ବାଲିକ ଲୋକ ତ ତା' ପାଲରୁ ବର୍ତ୍ତି ନାହାନ୍ତି, ଆପଣ ତ ସରଳ ଲୋକ ପରି ଅନୁମାନ ହେଉଛନ୍ତି । ଯୋଉ ମାଲିକଙ୍କୁ ସେ ଦେଖିବ; ତା' ପାଖରେ ଇମିତ କ'ଣ ଗୋଟିଏ ଶକ୍ତି ଭଗବାନ ଦେଇଚନ୍ତି ଯେ, ଦେଖୁଁ ଦେଖୁଁ ତାଙ୍କ ବୁଦ୍ଧି ଜ୍ଞାନ, ପ୍ରକୃତି, ଭଲମନ୍ଦ ସବୁ ଓଲଟେଇ

ନେବ । ଲୁହା ଦେଖି ସେ ପାଣି ହଏ । କେଉଁଠେ ଧର୍ମକଥା, କେଉଁଠେ ପୁରାଣ ଭାଗବତ କଥା, କେଉଁଠେ ଅସଭ୍ୟ ଅଭଦ୍ର କଥା, କେଉଁଠେ ସ୍ବେଚ୍ଛ ନାରୀ କଥା, କେଉଁଠେ ଜ୍ଞାନ କଥା ସେ ଇମିତ କହିବ ଯେ, ଲୋକେ ତଟସ୍ଥ ହୋଇଯିବେ ।

"ଅଚ୍ଛା ଏତେ ସୁନ୍ଦର ସେ ଜାଣେ ?"

ହଁ ଆଜ୍ଞା, ତା'ଠୁ ବଳି ନଟକ୍ଷ୍ଟିଆ ଏ କ୍ୟାପିଟାଲରେ ନାହାନ୍ତି । ମାଲିକର ଜାଏ ମୁଣ୍ଡେଇଲାପରେ ତା'ର ବେଶ ପୋଷାକ ବଦଳି ଯାଏ । ବାବୁଙ୍କର ରାମାନନ୍ଦୀ ଚଟା, ତୁଳସି ମାଳ ଦେଖିଲେ ସେ ସଙ୍ଗେ ସଙ୍ଗେ ଚଟା ଚଇତନ ହୋଇ ଗେରୁଆ ପିନ୍ଧି, ମାଳ ଗଡ଼େଇ କାମ ଉପରେ ପହଞ୍ଚିଯିବ । କାମ ଚାଲିଥିବ ମଝିରେ ମଝିରେ ଭଜନ କୀର୍ତ୍ତନ ବି ଆରମ୍ଭ ହୋଇଯିବ । ଅଜ୍ଞା କ'ଣ କହିବି, ତା ନାଟକ ଦେଖିଲେ ଆପଣ ସିନେମା ଦେଖିବାକୁ ଯିବେନି । ଜଣେ ଲୋକ କେତେ ନାଟକ କରିପାରେ ଯଦି ଟାଉଟରିଆ ମାଲିକ ହାତୁଡ଼େ ପଡ଼େ ତା ହେଲେ ସେ ପୁରା ଟାଉଟର ବନିଯାଏ, ତା' ପାଟିରୁ ଅଙ୍କ ଓଡ଼ିଆ ଆଉ ବାହାରେନା, ଖାଲି ତ ଇଂରେଜୀ, ନ ହେଲେ ହିନ୍ଦି । ଆଜ୍ଞା ସେ ଗୁଡ଼ାଏ ଭାଷା ଶିଖିଚି, ତେଲଙ୍ଗା ମାଲିକ ହାତୁଡ଼ିଲେ ତେଲଙ୍ଗା କଥା କହେ, ତେଲଙ୍ଗା ରେଜାଗୁଡ଼ାକ ତାକୁ ବେଶି ଭଲପାଆନ୍ତି, ସେ ତେଲଙ୍ଗାରେ ତାଙ୍କ ସାଥିରେ ଥଟା ଟାପରା ହେଇ ମଜ୍ଜାକରେ ଅଉ ଆମ ଓଡ଼ିଆ ରେଜାଗୁଡ଼ାକ ଏକଘରିଆ ହୋଇ ରହିଯାଆନ୍ତି । ବଙ୍ଗାଳୀ ମାଲିକ ପାଇଲେ ତାର ସବୁଠୁ ମଜା । ବଙ୍ଗଳା କହିଲେ ତା' ପାଟିରେ ବାଟୁଲି ବାଜିବନି, ସେ ତାଙ୍କୁ ଖୁବ ଠକେ । ମଝିରେ ମଝିରେ ତାଙ୍କ କଥା କହି ଆମମାନଙ୍କୁ ଇମିତ ହସାଏ ଯେ ଆମେ ବେଦମ ହୋଇଯାଉ । ସେ ଡରେ କେବଳ ପଞ୍ଜାବୀ ମାଲିକକୁ, ତାଙ୍କୁ ଠକିପାରେନି । କଥା କଥାକେ କହେ, ଅଃ...କି ଦାରୁନ୍...!

ସମରେନ୍ଦ୍ର ହସିଲେ...ତା ସହିତ ଦୁଃଖୀ ବି ହସିଲା । ଦୁଃଖୀର ମୁହଁରେ ହସର ଝଲକ କଳା ମେଘରେ ବିଜୁଳିର ଝଲକ ପରି ଜଣାପଡ଼ୁଥାଏ ।

"ଆଛା ଦୁଃଖୀ, ତୁ ତା ହେଲେ ସତ୍ୟସୁନ୍ଦର ବିଷୟରେ ବହୁତ କଥା ଜାଣିଚୁ ।"

ଆଜ୍ଞା ଜାଣିବିନି, ତା ପାଖରେ କାମ କରିଚି, ସେ ତ ପଇସା ଉଏନି ସୁବିଧାରେ ଆପଣଙ୍କ ପାଖରେ ଭଲେଇ ହବ ବୋଲି ମୋତେ ଦଶଟା ଟଙ୍କା ମିଳିଗଲା, ନ ହେଲେ ଏତକ ପାଇବାକୁ ମୋତେ ଦଶମାସ ଲାଗିଥାନ୍ତା । ତା ନାଁଟା ସିନା 'ସତ୍ୟସୁନ୍ଦର' ହେଲେ ସେ ଗୋଟାପଣେ 'ମିଥ୍ୟା ସୁନ୍ଦର' । ତା' ସାରା ସଂସାରଟା ମିଛର ସଂସାର । ସତର ସେ ଧାର ଧାରେନା ।

ଆଚ୍ଛା ତା ହେଲେ ତୁ ତା ସାଥିରେ ଏଇଠେ କାମ କରୁ କେମିତି ?

ଆପଣ ମୋ ପଇସାଟା ମୋତେ ଦେଇଦେବେ । ଆପଣ ତାକୁ ପଇସା ଦେଲେ ସେ କୁଲି ମୂଲିଆଙ୍କୁ ଦେବନି । ଲୋକେ ଆସିବେନି, ଆପଣ ସବୁ ଯୋଗାଡ଼ କରିଥିବେ । ଆପଣ ତା ପାଖକୁ ଦଉଡ଼ିଲାବେଳେ ତାକୁ ପାଇବେନି ।

କାହିଁକି ତା ଘରେ ନ ଥିବ ?

ତାର ପୁଣି ଘର କଉଠୁ ଆସିଲା ଆଜ୍ଞା ! ଯେମିତି କହିଲେ ତାର ସତର ଘର । ଆପଣ ତାକୁ କୋଉଘରେ ଖୋଜିବେ ? ଆପଣ କ'ଣ ସେ ଲୋକଟା ବିଷୟରେ କିଛି ଜାଣିନାହାନ୍ତି । ଲକ୍ଷେ ଟଙ୍କାର କାମଟା ତା ହାତକୁ ବଢ଼େଇ ଦେଇଛନ୍ତି !

ତା' ବିଷୟରେ ତୁ କ'ଣ ଜାଣିଛୁ ମୋତେ କହ, ମୁଁ ସେଇ ଅନୁସାରେ ସାବଧାନ ହେବି ।

ଆଜ୍ଞା କହିବି ଯେ ଡର ଲାଗୁଚି । ସେ ଯଦି ଜାଣେ ନା, ମୋ ପିଠିରେ କୁଅ ଖୋଳିଦେବ । ମୋର କିଏ ଅଛି ପଛକୁ ନା ଆଗକୁ ।

"ତୁ କ'ଣ ମୋତେ ସନ୍ଦେହ କରୁଛୁ ?"

"ବୁଝିଲେ ଆଜ୍ଞା, ସନ୍ଦେହ ନୁହେଁ ଯେ, ଗୁଡ଼ାଏ ବାବୁ ଅଛନ୍ତି, ସେଗୁଡ଼ା ଭାରି ଅବିବେକୀ, ମିସ୍ତ୍ରୀଟାକୁ ହାତକରି ତାକୁ ଗୋଟାପଣେ ନିଜର କରିଦିଅନ୍ତି । ମିସ୍ତ୍ରୀ ମୂଲିଆଗୁଡ଼ାକୁ ଶୋଷି ଶୋଷି ଖାଏ । ଆଜ୍ଞା ଓଡ଼ଶ କ'ଣ ମଣିଷକୁ ଶୋଷୁଚି, ଏ ମିସ୍ତ୍ରୀଗୁଡ଼ାକ ଆମକୁ ଯେମିତି ଶୋଷୁଚନ୍ତି, ସେମାନେ ଓଡ଼ଶଙ୍କୁ ବଳିଯିବେ ।"

"ସେମାନେ କ'ଣ ଆମକୁ ଶୋଷୁ ନାହାନ୍ତି ଦୁଃଖୀ ?" ସେଇଟା 'ମୁଁ କ'ଣ କହିବି ଆଜ୍ଞା, ହେଲେ ମାଲିକମାନେ ରକତିଆ ଲୋକ, ସମୁଦ୍ରକୁ ମଣିଷ ଶୋଷି ଶୋଷି କେତେ ଶୋଷିବ ? ଆମେ ତ ହାତ ଚକର ପାଣି, ଥରେ ଶୋଷି ଦେଲେ ଯାଇ ପେଟଭିତରେ ।

ସମରେନ୍ଦ୍ର ହସିଲେ, କହିଲେ, "ଆରେ ଦୁଃଖୀ ! ମୁଁ ତାକୁ କିଛି କହିବିନି, ତୁ କହ । ତା' ବିଷୟରେ ମୋର କିଛି ଜାଣିବା ଉଚିତ ।

"ସେ କୋଉଠିକାର ଲୋକ ମୁଁ ଜାଣେନା, ମୁଁ କାପିଟାଲ୍‌କୁ ଆସିଲା ଦିନରୁ ତାକୁ ଦେଖିଚି । ତା'ଠେ କେତେଥର କାମ କରିଚି, କେତେଥର ଛାଡ଼ିଚି । ପୁଣି କାମ କରିଚି । ଏଇମିତି ଦିନସତ ହେଲାପରେ ମୁଁ ତା ସାଥିରେ ଚଳିଚି । ତା ମୋ

ଭିତରେ କେବେ ଉଜାଳା ପକ୍ଷ ତ କେବେ ଅନ୍ଧାର ପକ୍ଷ । କେବେ ଅମାବାସ ତ କେବେ ପୂନେଇଁ । ହେଲେ ଠାକୁରେ ସେ ଲୋକଙ୍କୁ ଇମିତି ଶକ୍ତି ଦେଇଚନ୍ତି ଯେ, ମହା ମହା ଶତ୍ରୁ ବି ସେ ଆଖି ପିନ୍ଧିଲାକେ ନଜର କରିନେଇ ପାରେ । କେବେ ଖଣ୍ଡାଧରି ତାକୁ ଘୋଡ଼େଇଲେ ସେ କ'ଣ ଇମିତି ଅଜ୍ଞା କମିଆ ଶିଖିଚି ଯେ ସେ ଗୁହିଁଦେଲା ମାତ୍ରେ ତା ହାତରୁ ଖଣ୍ଡା ଖସିପଡ଼ିବ । ସେ ଆସି ତା ପାଦରେ ଶରଣ ପଶିବ । କାଳୀଙ୍କି ପୂଜାକରେ ଆଜ୍ଞା ।

ସତକହୁଚୁ ? ତାର ଏତେ କରାମତି ?

ହଁ ଆଜ୍ଞା, ବିଲ୍‌କୁଲ୍ ସତ, ଯୋଉ କୁଲି ମୂଲିଆ ତାଙ୍କି ସେ ବେଶି ଚପେ, ସେଇମାନେ ତା' ପାଖରେ ବେଶି କାମ କରନ୍ତି । ସେ ଯଦି ଜାଣିଲା କଏ ବାଧିକା ପଡ଼ିଚି, ଫଳମୂଳ ଔଷଧ ଧରି ତା, ଘରେ ପହଞ୍ଚିଯିବ । ତା ଗୋଡ଼ ଘଷିବ, ତାକୁ ଡାକ୍ତର ପାଖକୁ ନବ, ତା ପାଇଁ ପଥ୍ୟ ପାଚନ କାଟିଦେବ । ତା'ର ବାକି ପଇସାରୁ ଅଧାବାଧା ଦେଇଦବ । ତା ପିଲାପିଲାଙ୍କ ପାଇଁ ଜମା ମିଠେଇ ଆଣିବ । ସେ ଲୋକ ଭଲ ହୋଇଗଲେ ଗୋଟାପଣେ ତାର । ସେ କୃତ କୃତ ହେଇ କହେ ଶଙ୍କୁବାଇ ନ ଥିଲେ ମୁଁ ମରିଯାଇଥାନ୍ତି । ଦିନରାତି ମୋତେ ଜଗିଚି । ବାକି ପଇସା ଗଲେ ଯାଉ ପଛକେ ତା ପରି ଲୋକଟେ ପଛକୁ ଥିଲେ ମଣିଷର କାହିଁ ବଳ । ସେଇ ଲୋକ ପୁଣି ତା'ର କାମରେ ଲଗନ୍ତି, ସେ ପୁଣି ଠକେ । ଠକିବା ଠିକେଇବା ଠ‌କିବ ବରଷ, ମାସ, ଦିନ ପରି ତା ସାଥିରେ ଅମର ରହିଚି ।

"ତା'ର ପିଲା ଝିଲା କେତେ ? ପଇସା ପତ୍ର ଏତେ ଅର୍ଜୁଚି, ସେ ସବୁ କ'ଣ କରେ?"

"ଆଜ୍ଞା ତା'ର ତ ପିଲାଝିଲା କହିଲେ ଏ କାପିଟାଲଟାଯାକର କୁଲି ମଜୁରିଆ, ରେଜା ସେ ସମସ୍ତଙ୍କର ସସୁର ସମସ୍ତେ ତା'ର ପୁଅ ଝିଅ । ତାର ନିଜର ପିଲାଝିଲା କାଇଁ ? ତାର ସ୍ତ୍ରୀ ଅଛି କି ନାହିଁ ମୁଁ ଜାଣେନା । ସେ କହେ ତା'ଦେଶରେ ଅଛି । ସେ କୁଆଡ଼େ ତା ପାଖକୁ ପଇସା ପତ୍ର ପଠାଏ । ଥରେ ଅଧେ ସେ ତାକୁ ପରା ଏଠିକି ଆଣିଚ, ଲୋକେ ଦେଖିଛନ୍ତି । ଯୋଉଁ ପାଞ୍ଚ ସାତଦିନ ସେ ରହେ, ଇମିତି ମାଡ଼ ଖାଏ ଯେ ଅତଚ୍ଛେ ନିଜ ଜାଗାକୁ ପଳାଏ । ଲୋକେ ତ କହନ୍ତି । ତେବେ ଦଶ ପାଞ୍ଚ ବର୍ଷ ହେଲା ଆମେ ତାକୁ ଦେଖିନୁ ।

କ୍ୟାପିଟାଲ ଭିତରେ ତାର ଆଜ୍ଞା ଦଶ ଆଠ ଜାଗାରେ ଘର ଅଛି । ସରକାରୀ ଜମି ଜବର ଦଖଲକରି ଝୁପୁଡ଼ି ତିଆରି କରିଚି । କୋଉ ଘର ଭଡ଼ା ଲାଗିଚି,

କୋଉଠେ ତାର ନିଜର ଲୋକ କେହି ଅଛନ୍ତି । ପାଞ୍ଚ ସାତଟା ରେଜା, ଓଡ଼ିଆଣୀ, ବଙ୍ଗାଳୁଣୀ, ତେଲଙ୍ଗାଣୀ ଏମିତି ରଖିଚି, ସେମାନଙ୍କୁ କୋଉଠାଏ ଗୋଟାଏ ଘର ଦେଇଚି । ସେମାନେ ସ୍ୱା ପାଖରେ ସବୁବେଳେ କାମ ଧାମ କରନ୍ତି, ସ୍ୱା ପାଖରେ କାମ ନ ଥିଲେ ଆଉ ଆଉ ମାଲିକର କାମ କରନ୍ତି । ସାନ୍ଧଦନକୁ ସେ ସାତ ଜାଗାରେ ରହେ । ଯାହା ପାଖରେ ସେ ରହିବାକୁ ଚାହେଁ, କାମ ଶେଷରେ ତା କରଣୀ, ଉଷା, ଗଜ ତା ହାତକୁ ବଢ଼ାଇ ଦିଏ; କହେ ଧୋଇଧାଇ କରି ବ୍ୟାଗରେ ରଖି ଚାଲ । ଅନ୍ୟମାନେ ଜାଣନ୍ତି ସେ ଅଜି ତା' ପାଖରେ ରହିବ । ସେ ଫେରୁ ଫେରୁ ରାତି ଅଠ । ମାଛ, ପରିବା, ଚାଉଳ, ତେଲ, ମସଲା -ସବୁ ନେଇ ପହଞ୍ଚେ । ଟୋକା ବଢ଼ା ହୋଇ ଖିଆପିଆ ସରୁ ସରୁ ରାତି ଏଗାର । ସେ ସେଦିନ ନିଜେ ରାନ୍ଧି. ରେଜାଟା ତା ପାଖକୁ ସବୁ ଯୋଗାଇ ଦିଏ ।

ଆରେ, ସେମାନଙ୍କର କ'ଣ କେହି ଘରଲୋକ ନଥାନ୍ତି ?

ଅଜ୍ଞା ତାଙ୍କର ଘର କାହିଁ ଯେ ଲୋକ ଆସିବେ । ତେବେ ଶଶୁରାଇ ପଛେ ଆଉ କେତେ ଜଣ ମିସ୍ତ୍ରୀ ବି ଅଛନ୍ତି, ସେମାନେ ସବୁ ଆସନ୍ତି । ଦିନେ ଦିନେ ବି ମାତାଲ ହୋଇ ନିଜ ନିଜ ଭିତରେ ମାଡ଼ପିଟ ହୁଅନ୍ତି, ହେଲେ ଏ ଲୋକଟା ଭାରି ଚାଲାକ, ସେ ସୁରାକ ପାଇଲେ ଖସିଯାଏ । କେବେ ଥାନାକୁ ଯାଇନି କି ମାଡ଼ ଖାଇନି ।

'ତା'ର ତ ପୁଣି ନିଜର ବୋଲି କିଛି କାଗଜପତ୍ର ଥିବ । ଘର ଖଣ୍ଡିଏ ବି ରଖିଥିବ ।''

ହଁ ହଁ ଆଜ୍ଞା, ତାର ନିଜର ବୋଲି ଘରଟାଏ ଅଛି, ସେଇଠେ ଆଉ ଗୋଟିଏ ବି ରେଜା ରଖିଚି । ସେ ଗୋଟାପଣେ ତାର । ଯାହା ପଇସାପତ୍ର ତାର ଥିଲେ ସେ ତାରି ହାତକୁ ଟେକିଦିଏ । ତାର ନିଜର ବୋଲି ଯୋଉ ବାକସ ଖଣ୍ଡିଏ ଅଛି, ତାରି ପାଖରେ ଥାଏ । ଅଣ୍ଡା ନିଅଣ୍ଡା ଅଭାବ ଅସୁବିଧା ଓ ଖିପିବାସି ପୂନେଇଁ ପର୍ବଦିନରେ ସେ ତାରି ପାଖରେ ରହେ । ଆଉ କୋଉଠିକି ଯାଏନି । ସେ ବି ସ୍ୱାକୁ ଭାରି ଭଲପାଏ, ସ୍ୱା ବ୍ୟତିରେକେ ସେ ଅନ୍ୟ କୌଣସି ମିସ୍ତ୍ରୀ ପାଖରେ କାମ କରେନି । ସ୍ୱପକ୍ଷରେ କାମ ନଥିଲା ଦିନ ଘରେ ବସି କାଜୁଗେଣ୍ଡା ଛଡ଼ା କରି ଦିନକୁ ପାଞ୍ଚ ଛଅ ଟଙ୍କା ଉଠାଏ । ନ ହେଲେ ବାଡ଼ି ବଗିଚା କରି ଶାଗ, ମାମୁଡ଼ା, ଫଳ ଫୁଲ ଚାଷ କରେ । ତା' ପଇସା ପରବା ଜାଗାରେ ଖର୍ଚ୍ଚ ହୁଏନି । ସେ ପଇସା କିଛି ଡାକଘରେ ଜମେଇଚି । ଅଜ୍ଞା, ଥରେ ସ୍ୱାମୀଙ୍କ ବାଧିକା ପଡ଼ିଲେ ମାସେ କାଳ ଡାକ୍ତରଖାନାରେ ରହିଲା, ଅଜ୍ଞା ପାଞ୍ଚ କି ଛ'ଶ ଟଙ୍କା ତା ଦହିଡିଗ୍ରି ଖରଚ ହେଲା । ସବୁ ପଇସା ଇଏ ଦେଲା । ଯୋଉ ରେଜାମାନଙ୍କୁ ରଖିଚି ଇଏ ଜାଣେ କିଛି କହେନି ।

ଯେମାନେ ଆସି ତାକୁ ଦେଖିଯାଆନ୍ତି, ତା' ପାଖରେ ଘଣ୍ଟେ ଅଧେ ରହନ୍ତି, ତାକୁ ଭଲମନ୍ଦ ଟିକଏ ଖାଇବାକୁ ଦିଅନ୍ତି, ତା'ପରେ ଚାଲିଯାଆନ୍ତି । ଇଏ କେବେ ତା' ପାଖ ଛାଡ଼େନି, ଛାଇ ଭଳି ଲାଖିଥାଏ । ଆମ କ୍ଲବ ମଜୁରିଆ-ମାନେ ସ୍ୱାଙ୍କୁ କହନ୍ତି ପାଟରାଣୀ । ଆଜିକାଲି ସେଇଟା ନାଁରେ ବଦଳିଗଲାଣି ଆଜ୍ଞା ! ନାଁଟା ଛୋଟେଇ କରି ଡାକନ୍ତି "ପାଟ" ବୋଲି । ତା ପ୍ରକୃତ ନାଁ କ'ଣ କେଜାଣି । ଶଶୁରାଇ ବି ଏବେ ସେଇ ନାଁରେ ତାକୁ ଡାକେ । ଯେ ତାକୁ 'ପାଟ, ଡାକଦେଲେ ତା ଗୋଡ଼ ଦିଇଟା ଭୂଇଁରେ ଆଜ୍ଞା ଲାଗେନା ।"

"ଆଚ୍ଛା ସେ ତାକୁ ଏତେ ଭଲପାଏ ତଥାପି···"

"ସେଇଟା ସିମିତ ପ୍ରକୃତିର ଲୋକ ଆଜ୍ଞା, ପାଟ ତାକୁ ଏତେ ଭଲ ପାଇବାର ଗୋଟାଏ କାରଣ ଅଛି ଆଜ୍ଞା !"

"ଶୁଣେ ସେ କାରଣଟା କଣ ?"

"ଆପଣଙ୍କର ଏଇ ସତ୍ୟସୁନ୍ଦର ଆଗେ ହନୁମାନ ପାର୍ଟ କରୁଥିଲା । ଯେତେବେଳେ ସେ ତା ପେଛରେ ଲାଙ୍ଗୁଡ଼ ଯୋଖି ଷ୍ଟେଜ୍‌ରେ କୁଦାମାରେ, ଲୋକେ ହସି ହସି ବେଦମ ହୋଇ ଯାଆନ୍ତି । ଥରେ ପାଟ ରାମଲୀଳା ଦେଖିବାକୁ ଯାଇଥିଲା । ଯେତେବେଳେ ହନୁମାନ୍ ରାମଙ୍କ ଚିଠି ନେଇ ରାବଣ ପାଖରେ ପହଞ୍ଚିଲା, ସେ ଦେଖିଲା ରାବଣ ଉଚ୍ଚ ସିଂହାସନରେ ବସିଛି । ସିଂହାସନ ତଳେ ଛିଡ଼ାହୋଇ ତା' ହାତକୁ ଧର୍ମପୁରୁଷ ରାମଙ୍କ ଚିଠି ବଢ଼ାଇ ଦେବାକୁ ତାକୁ ଭଲ ଲାଗିଲାନି । ପାପାତ୍ମା ରାବଣ ବସିଥିବ ଜଗତ ଉପରେ, ଆଉ ସେ ଭଗବାନ ରାମଙ୍କ ପବିତ୍ର ଚିଠିକୁ ତଳେ ଠିଆହୋଇ ବଢ଼େଇ ଦେବ । ଏକଥା ହେବନି ହେବନି । ସେଥିପାଇଁ ସେ ସେଦିନ ରବର ପାଇପରେ ତିଆରି ତା' ଲାଞ୍ଜକୁ ମଲା କରି ଉଚ୍ଚ କଲା, ତାହା ସିଂହାସନ ସାଥିରେ ସମାନ ଉଚ୍ଚ ହୋଇଗଲା । ତା' ଉପରେ ବସି ସମାନ ଆସନରେ, ରାମଚନ୍ଦ୍ରଙ୍କ ଚିଠିଟି ରାବଣ ହାତକୁ ବଢ଼ାଇ ଦେଲାବେଳେ କିଏ ଗୋଟାଏ ଖଜବଜିଆ ଟୋକା ତଳୁ 'ପାଇପ'ଟାକୁ ଟାଣିଦେଲା । ହନୁମାନ ଏକା ଥରକେ ଆସି ଭୂ କରି ଖସିପଡ଼ିଲା ତଳେ । ଗୋଟାଏ ଦାଢ଼ୁଆ କଳା ମୁଗୁନି ଗୋଡ଼ି ଉପରେ ତା ଆଣ୍ଠୁ ବାଡ଼େଇ ହୋଇ ରକ୍ତ ଝର ଝର ହୋଇ ବାହାରି ଆସିଲା । ସେ ଆଜ୍ଞା ବେହୋସ ହୋଇଗଲା, ଏଇ ପାଟ

ଦୋଉଡ଼ି ଆସି ତା ପଣତ କାନିରୁ ଖଣ୍ଡେ ଚିରି ପଟେଇ ରକତ ବହୁଥିବା ଜାଗାରେ ଗୁଡ଼ିଦେଲା, ରିକସାବାଲାକୁ ଡାକି ତାକୁ ନେଇ ଡାକ୍ତର ଖାନାକୁ ଗଲା । ଔଷଧ ମଲମ ଲଗାଇ ପିଲେଇ କରି ତା ଘରକୁ ଆଣି ପନ୍ଦର ଦିନଯାଏ ରଖିଲା । ତା' ସେବାରେ ସେ ଏତେ ବିଭୋଳ ହୋଇ ଯାଇଥିଲା ଯେ ସେଇ ଦିନଠୁ ସେ ତାକୁ ଛାଡ଼େନି । ମୁଁ ଆଡ଼େ ଯାଉ ପଛକେ ତା' ଜୀବନ ନାଟିକାଟା ତାରି ପଖରେ ବନ୍ଧା ।"

"ଦୁଃଖୀ, ତୁ ତ କ'ଣ ନୂଆ ନୂଆ କଥା କହୁଚୁ । ମୁଁ ଯେଉଁ ସତ୍ୟ-ସୁନ୍ଦରକୁ ଦେଖିଚି, ତୁ କ'ଣ ତାରି କଥା କହୁଚୁ ନା ଇଏ ଆଉ ଜଣେ ।"

"ଆଜ୍ଞା, ଆଉ କେହୁ ନୁହେଁ, ଯେଇ ସତ୍ୟସୁନ୍ଦର, ଯେଇ ଅତି ଅସୁନ୍ଦର, ସେଇ ସମ୍ପୂର୍ଣ୍ଣ କଥା କହୁଚି । ତାକୁ ଆପଣ କମ୍ କହିବେନି । ତା' କଥା ଶୁଣିଲେ ପୋଥିଟିଏ ହେବ ।"

"ଆଚ୍ଛା, ତା ଝିଅକୁ ପର୍ଯ୍ୟ ଏଇ ମୋଟର ପାଇକେଲ ବାବୁ ବିଦ୍ୟା-ଦ୍ୟୋଇଚନ୍ଦ୍ର ?"

"କ'ଣ କହୁଲେ ଆଜ୍ଞା, ଯୋଗୀ ଘରେ ଟିଙ୍କି ! ତାରି କୋଉଁଠୁ ଝିଅ ଆସିଲା !"

"ମୋ ପାଖରେ କ'ଣ ଏତେ ମିଛ କଥା କହି ପାରିଲୁ, ଲୋକଟାକୁ ତ କମ୍ କହୁବନି ।"

"ଆଜ୍ଞା ତା'ର ମିଛଟା ସତ, ସତଟା ମିଛ । ତା' କଥାରୁ ସତମିଛ ଜାଣିବା କାଠିକର ପାଠ । ତାର ନିଜର ହୋଇ ପିଲା ପିଚିକା କେହୁ ନାହାନ୍ତି । ଗାଁ କଥା ତ କହୁଥିଲି, ପାଟରେ ତ ପିଲା ଝିଲା କିଛୁ ନାହାନ୍ତି, ଯଦି କହୁଥିବ ସେ ବଙ୍ଗାଳୀ ବାବୁଙ୍କ ଝିଅକଥା କହୁଥିବ । ସେ ତାକୁ ଧରମ ଝିଅ କରିଚି କି କ'ଣ ? ମଝିରେ ମଝିରେ ତା ଘରକୁ ଯାଏ ।"

"ସେ ପୁଣି କିଏ ?"

"ତା' କଥା କହୁଲେ ଆଉ ଗୋଟିଏ ପୋଥି ହବ । ଆପଣ ଯିବାକୁ ବାହାରିଥିଲେ । କଥା ଶୁଣିବାକୁ ଅଟକିବେ ନା କ'ଣ !"

"ବୁଝିଲୁ ଦୁଃଖୀ, ଲୋକ ନ ଚହ୍ନିଲେ ତାଙ୍କ ସାଥିରେ କାମଧାମ କରିବା କେତେ ବିପଦ ତୁ ଜାଣିଥିବୁ । ତାଙ୍କୁ ସବୁ ଚହ୍ନିବାକୁ ମୁଁ ତୋତେ ଏ ସବୁ ପଚାରୁଛି ।"

"ଆଜ୍ଞା, ଏଇ ଯେଉଁ ଆରଡ଼ି ଝିଅ କଲେଜ ଅଛି, ତା' ପାଖରେ ଜଣେ ବଙ୍ଗାଳୀ ବାବୁ ରହୁଥିଲେ । ଭାରି ଖାନଦାନ୍ ଲୋକ । ତାଙ୍କର ଏଇଠେ କ'ଣ ବେବସାୟପତ୍ର ଥିଲା । ପିଲାଝିଲା କିଛି ନଥିଲେ । ଲୋକେ କହନ୍ତି ପୁରୀ ପଣ୍ଡାଙ୍କ ପାଖରୁ ଝିଅ ପିଲାଟିଏ ଆଣି ପାଳିଥିଲେ । ପଣ୍ଡାବାବୁ ସମୁଦ୍ର ନାଳରୁ ଏଇ କଅଁଳା ଛୁଆଟିକୁ ପାଇଥିଲେ । ବଙ୍ଗାଳୀବାବୁ ପଣ୍ଡାଙ୍କୁ କୁହାବୁଝା କରିବାରୁ ସେ ତାଙ୍କୁ ଦେଲେ । ବୁଢ଼ା ବୁଢ଼ୀ ଭାରି ଖୁସି । ବୁଢ଼ୀର ଶୁଖିଲା ମୁହଁରେ ହସ ଉଛୁଳିଲା, ବୁଢ଼ା ବି ଭାରି ଖୁସିବାସିଆ ପରି ଜଣାପଡ଼ିଲା ।"

"ତା'ପରେ କ'ଣ ହେଲା ଦୁଃଖୀ !"

"କ'ଣ୍ ଆଜ୍ଞା କହିବି, ପିଲାଟା ପାଞ୍ଚ ବରଷର ହୋଇଗଲାଣି, ସେତେବେଳେକୁ ଥରେ ବଙ୍ଗାଳୀ ବାବୁ ତାଙ୍କ ଇସ୍ତ୍ରୀ ଆଉ ଏଇଛୁଆ ଏମାନେ ସବୁ ରଥକୁ ଯାଇଥିଲେ । ତାଙ୍କ ଘରେ ବି ଜଣେ ବୁଢ଼ା ମିସ୍ତ୍ରୀ ଥିଲା, ସେ ବାବୁଙ୍କର ସବୁ କାମ ଧାମ କରେ । ତାର କେହି ନାହିଁ । ଏଇ ବାବୁଙ୍କ ଘରର ଜଣେ ମଣିଷ-ଭଳିଆ ଚଳେ, ନିଜ ଦେଶ ଲୋକ ତ । ସେ ବି ସାଥିରେ ଯାଇଥିଲା । ହଇଜା ହେଲା ସେ ବାବୁ ବାବୁଆଣୀ ଚାଲିଗଲେ । ମିସ୍ତ୍ରୀ ବୁଢ଼ା ଛୁଆଟିକୁ ନେଇ ଘରକୁ ଫେରିଲା ।"

"ବୁଝିଲୁ ଦୁଃଖୀ, ଏଇ ହେଉଛି ମଣିଷର ଭାଗ୍ୟ । ହଁ ତା'ପରେ କ'ଣ ହେଲା ?"

"ମିସ୍ତ୍ରୀ ବୁଢ଼ା ସେଇ ଘରେ ଛୁଆଟିକୁ ନେଇ ଅନେକ ଦିନ ରହିଲା । ପିଲାଟି କାନ୍ଦି କାନ୍ଦି ସ୍ୱାକୁ ଶେଷରେ ବାପ ପରି ଆଦରିଗଲା । ମିସ୍ତ୍ରୀ ବୁଢ଼ା ତାକୁ ନିଜର ଝିଅପରି ଚଳେଇଲା, ତାକୁ ପାଠ ପଢ଼େଇଲା, ପିଲାଟା ଭାରି ବଢ଼ିଆ ପଢ଼େ । ଦିନେ ବାବୁଙ୍କ ଦେଶରୁ ତା' ଭାଇମାନେ ଆସି ଘର ଡିହ ସବୁ ବିକି କରିଦେଲେ । ପିଲାର ଦାୟିତ୍ୱ କେହି ନେଲେନି । ମାଇପିଲାଟାର ଦାୟିତ୍ୱ କିଏ ବା ନେଇ ଥାଆନ୍ତା ଆଜ୍ଞା, ପୁଅ ହୋଇଥିଲେ କାହାର ବା ଲୋଭ ହୋଇଥାଆନ୍ତା । ତେବେ ବାବୁର ସାନଭାଇ ଟିକିଏ ଦୟାଳୁ ଲୋକ ।

ମିସ୍ତ୍ରୀ ଯୋଉ ଘରେ ରହୁଥିଲା ସେ ଘରର କିଛି ଜାଗା ମିସ୍ତ୍ରୀ ନାଁରେ କରି ଦେଲା । ଡାକଘରୁ ଯୋଉ ପଇସା ପତ୍ର ପାଇଲେ ଆଉ ଯାହା ପଇସା ପତ୍ର ଥିଲା ସେଥିରୁ କିଛି ଝିଅ ନାଁରେ ତାଙ୍କ ଘରେ ଜମା କରିଦେଲେ । ଭବିଷ୍ୟତରେ ତା ବାହାଘର ବେଳେ ଏ ପଇସାକୁ ଖର୍ଚ୍ଚ କରିବାକୁ କହିଗଲେ ।"

"ଭାରି ଭଲକାମ କଲେ, ସାଥିରେ ପିଲାଟାକୁ ନେଇଯାଇ ମଣିଷ କରି-ଥିଲେ ଆଉରି ବଢ଼ିଆ କାମ କରିଥାନ୍ତେ ।"

"ଆଜ୍ଞା ବୁଢ଼ା ମିସ୍ତ୍ରୀଟା ମରି ଯାଇଥାନ୍ତା, ସେ ନନେଲେ ଭଲହେଲା । ବୁଢ଼ା ବି ତାକୁ କଟ୍ ମଣିଷଟିଏ କରି ଗଢ଼ିଲା । ବୁଢ଼ା ଆଜ୍ଞା ରାଜମିସ୍ତ୍ରୀ, ଦିନକୁ କୋଡ଼ିଏ ପଚିଶ ଟଙ୍କା ପାଏ । ଦ'ଇଟା ବୋଲି ପେଟ, ଅଭାବ କ'ଣ ! ପିଲାଟାକୁ ପାଠ ପଢ଼େଇଲା, ପିଲା ମେଟ୍ରିକ୍ ପାଶ୍ କଲା । ମିସ୍ତ୍ରୀ ବୁଢ଼ା ଠିକ୍ ସେତିକି-ବେଳକୁ ତା'ଘର ପାଖ ଜଙ୍ଗଲର ସେଇ ଯୋଉ ଧୂର୍ତ୍ତ ବଡ଼ ମାଷ୍ଟ୍ରାଣୀ ଭାରି ଘର ଠିକାରେ କରଉଥାଏ । ସେ ତା' ଦୁଃଖ ତାକୁ କହିଲା । ଆଜ୍ଞା, ଏତିକିରେ ତ ତା ଭାଗ୍ୟ ଫିଟିଗଲା । ଟୁଆଟାକୁ ଦେଖିଲେ ତ ପେଟ ପୂରିଯିବ, ତା'ର ଧୀର କଥାବାର୍ତ୍ତା, ଚାଲିଚଳନ, ପାଠପଢ଼ା ନମ୍ବର ଦେଖି ଧୂର୍ତ୍ତ ତ ଏକବାର ଖୁସ୍ । କହିଲା ପରବାଏ ନାହିଁ, ମୁଁ ତା ନାଁ ଲେଖେଇ ଦଉଚି, ମେସ୍‌ରେ ସେ ରହୁ । ଖାଇବା ଖର୍ଚ୍ଚ ଦେବାକୁ ପଡ଼ିବନି । ମାଗଣାରେ ପାଠ ପଢ଼ିବ । ଶନିବାର ଦିନ ତମ ପାଖକୁ ଯିବ, ଛୁଟି ଦିନରେ ଯିବ, ଛାଡ଼ିବ ତ ।"

"ବୁଢ଼ା କଣ କହିଲା ?"

"ଯେ ଆଜ୍ଞା ପଢ଼ୁଲେ ପଢ଼ୁଲେ ମେସରେ ରଖେଇବାକୁ ମନାକରୁଥିଲା । ଟୁଆଟା, ଖାଇବାକୁ ଭଲ ପାଇବନି, ମେସ୍‌ରନ୍ଧା ତା ପାଟିକି ରୁଚିବନି । ନଇତ ନଇତ ସେ ମାଛ ଦୁଖଣ୍ଡାଏ ଆଣେ, ତା ପାଇଁ କଦଳୀ, ବିସ୍କୁଟ୍ ଭଲଭଲ ଚିଜ ଆଣେ । ସେ ତ ଖାଇ ଜାଣିଚି, ମେସ୍‌ରେ ପାଇବ କୋଉଠୁ ? ବୁଢ଼ା ନିଜେ ରାନ୍ଧି ଝିଅକୁ ଦିଏ । କହେ ତୁ ପଢ଼, ପଢ଼ା ଖଇଚଆ କରନି, ମୁଁ ରାନ୍ଧୁଚି ।

"ଆଚ୍ଛା, ତାପରେ ?"

"ତା'ପରେ ବୁଢ଼ା ବାଧ୍ୟ ହେଇ ଝିଅକୁ ମେସ୍‌କୁ ଛାଡ଼ିଲା, ଧୂର୍ତ୍ତ ମାଷ୍ଟରାଣୀର ଭଲ ପାଇଲା ମନକୁ ଖଇଚଆ କାହିଁକି କରିଥାନ୍ତା । ସେ ପିଲାଟାକୁ ଏତେ

ଭଲପାଇ ଯାଇଚ ଯେ ସବୁ ଖର୍ଚ୍ଚବାର୍ଚ୍ଚ ଗୁଡ଼ିକଣ ଦେଇଚ, ଖାଲି ଫିଟିଲେ ହେଲା । ମେସ୍‌ରେ ଝିଅକୁ ଗୁଡ଼ିଲା; କିନ୍ତୁ ବହୁତ କଥା ବାରଣକଲା । ଦେଖ୍, ସେ ଝିଅଗୁଡ଼ାକ ଭିତରେ ନାଗୁଣୀ ଗୁଡ଼ାଏ ଅଛନ୍ତି, ତାଙ୍କୁ ଜଗିରଖି ଚଳିବୁ । ଯେମାନେ ଖୁବ ବେପରୁଆ, ତାଙ୍କର ବେଶ ପୋଷାକ ଦେଖିଲେ ଏ ଲୋକଙ୍କୁ ଲାଜମାଡ଼େ । ସିମିତ ଜାମାପଟା ପାଇଁ କେବେ ଅଳି କରିବୁନି । କଥାରେ ଅଛି—

"ଆଲୋ ସଖି !
ଆପଣା ମହତ ଆପେ ରଖି ।"

ଆମେ ଯେତିକର ଲୋକ ସେତିକରେ ଚଳିବା । ତାଙ୍କ ଭିତରେ ବି ଗୁଡ଼ାଏ ଅଛନ୍ତି, ତାଙ୍କ କଥାବାର୍ତ୍ତା ରଙ୍ଗଢ଼ଙ୍ଗରେ କିଛି ବାଗ ନଥାଏ । ସେଗୁଡ଼ାକ ସାଥିରେ ମିଶିବୁନି, କଲେଜରୁ ସାଙ୍ଗମାନଙ୍କୁ ନେଇ ସିନେମା ଦେଖିବାକୁ ପଳାନ୍ତି, ଏ ହୋଷ୍ଟେଲରୁ ସେ ହୋଷ୍ଟେଲକୁ ଯାଆନ୍ତି, ପଇସାର ତ ଅଭାବ ନଥାଏ, ଏଣୁ ନେଇ ଖାଆନ୍ତି, ଆଜିକାଲିର ବାହାର ଜଳଖିଆ ସବୁ ବିଷ, ତାଙ୍କ ସାଥିରେ ଆଦୌ ମିଶିବୁନି । ମନହେଲେ କଦଳୀ, କମଳା, ପିଜୁଳି, ଚିନାବାଦାମ, ବୁଟଭଜା ଖାଇବୁ ପଛକେ ହୋଷ୍ଟେଲକୁ ଯିବୁନି । ମୁଁ ତ ପାଖରେ ଅଛି, ଆମ ଘର ତ ପାଖରେ ଘରକୁ ପଳେଇ ଆସିବୁ ।"

"ବାଃ...ବଢ଼ିଆ କଥା କହେ, ଝିଅ ପିଲା ତାକୁ ନ ଜଗିଲେ ଯୋଉଠେ ପଡ଼ିବ ସେଇଠେ ବୋହିଯିବ । ତାକୁ ମଝିରେ ଶାସନ ଦରକାର, ସବୁବେଳେ ଦୃଷ୍ଟି ରଖିବା ଦରକାର । ଆଚ୍ଛା, ତା'ହେଲେ ସେ ପାଠ ପଢ଼ିଲା ?"

"ହଁ ଆଜ୍ଞା ପାଠ ପଢ଼ୁଥିଲା ବି. ଏ. ଶେଷ କରିବାକୁ ଆଉ ବରଷେ ଥିଲା, ତାର ବାହାଘର ହେଇଗଲା ।"

"ଏଁ ବାହାଘର ହେଇଗଲା, ଭଲ କଥା କିମିତି ହେଲା ?"

'ଆଜ୍ଞା ସେଇ କଲେଜ୍‌ରେ ଜଣେ କିରାଣିବାବୁ ଥିଲେ, ଏବେ ପେନ୍‌ସନ୍ ନେଲେଣି, ତାଙ୍କର ପୁଅ ସାଥିରେ ସେଇ ଧର୍ଣ୍ଣି ବଡ଼ ମାଷ୍ଟ୍ରାଣୀ ଯୋଗାଡ଼ କରିଦେଲେ ।"

"କରେ ତାଙ୍କର କ'ଣ କିଛି ନାଁ ନାହିଁ ଯେ ଧର୍ଣ୍ଣି ବୋଲି କହୁଚୁ, ବାହାଘର ସେ ଚଳେଇଲେ ନା ଏ ବୁଢ଼ା ମିସ୍ତ୍ରୀ ଚଳେଇଲା ?"

"ତାର ନାଁ କ'ଣ ମୁଁ ଜାଣିନି, ଆମେ ତ ତଳତଳିଆ ଲୋକ, ରିକ୍ସା ବାଲା, ଚା' ଦୋକାନୀ, ପାନ ଦୋକାନୀ ଆମର ସାଥୀ । ସେଇମାନେ ତାକୁ ଇମିତି ନାଁ

ଦେଇଛନ୍ତି । ଆଜ୍ଞା, ସେ ତ ଗୋଟାଏ ପାହାଡ଼ ଉଳଆ ମଣିଷ, ମାଉସିର ବଳ୍‌ଟିଏ, ଶଳ୍‌ଯାବାଲା ତାଙ୍କୁ ଶଳ୍‌ଯାରେ ନେଲେ ଧଇଁସଇଁ ହେଇଯାଆନ୍ତି ବୋଲି କେହି ନେବା'କୁ ମଙ୍ଗନ୍ତିନ, କହନ୍ତି ଲୋକ ଅଛନ୍ତି ବୋଲି । ମଟର ସାଇକେଲ କି ସ୍କୁଟରରେ ବସିଲେ ଚକ ଭୁଇଁରେ ଚୁପି ହେଇଯାଇ ଚେପା ହେଇଯାଏ । ତାଙ୍କୁ ତ ସମସ୍ତେ ଧୂର୍ଣ୍ଣି ବଡ଼ ମାଷ୍ଟ୍ରାଣୀ କହନ୍ତି । ହେଲେ ଅଜ୍ଞା, ତା ଦେହଟା ଯିମିତ ରକତଥା ଆଉ ମାଉସିଆ, ମନଟା ବି ସିମିତ ରକତଥା ଆଉ ମାଉସିଆଁ । ତା' ଦେହଟା ସବୁ ଯିମିତ ଦସ୍ତାରେ ଭରିଛି, ମନଟା ମାସ୍ତାରେ ଭରିଛି । ଯିଏ ଯାଇ ଦୁଃଖ କହିଲା, ସେ ପିଲା ପାଖରେ ତା ମନ ଲଶିଲ୍ଯେ ତାଙ୍କୁ ମଣିଷ-କଲା ଯାଏ ଗୁଡ଼ବନ । ସିକ୍‌ଯାବାଲା ସବୁ କହନ୍ତି ତା ଘରକୁ ସନ୍ଧ୍ୟାବେଳେ କାର ସବୁ ଆସେ । ବଡ଼ ଘରର ଝିଅ ବୋହୂମାନେ ଆସନ୍ତି । ଆଇ· ଏ. ସି· ଅଫିସରଙ୍କ ପିଲାକବିଲା, ସେମାନେ ତ ତା' ପାଖରେ ପଢ଼ିଥିଲେ । ତାଙ୍କୁ ଦେଖିଲେ ପାଦତଳେ ପଡ଼ ମୁଣ୍ଡିଆ ମାରନ୍ତି, ପାଦଧୂଳି ନଅନ୍ତି । ବୁଢ଼ୀ ତା ମାଉସିଆ ହାତରେ ଯେତେବେଳେ ସେମାନଙ୍କ କୋଳକୁ ନେଇ ଯାବୁଡ଼ ଧରେନା, ଧଳାଗେଣ୍ଡୁ ଫୁଲଗୁଡାକ ଲାଲ ଗୋଲପ ହେଇ ଯାଆନ୍ତି ।"

ସମରେନ୍ଦ୍ର ହସିଲେ, ଏକ ମନଚହଲା ହସ, ଆନନ୍ଦର ଏକ ଛଲଛଲ କଳକଳ ନିନାଦ । ବାଃ···ଦୁଃଖୀର ବି କମ୍ ମଧୁମୟ ଅନୁଭୂତ ନାହିଁ । ମଣିଷ ଶ୍ରଦ୍ଧାର ସ୍ପର୍ଶ ପାଇଲେ ସତରେ କ'ଣ କବି ହୋଇଯାଏ । ଦୁଃଖୀ ମୂଲିଆଟିଏ ହେଲେ ବି ତା'ରଭ ପ୍ରକାଶ ଶୈଳୀ କମ୍ ସରସ ନୁହେଁ ।

"ଆଚ୍ଛା, ତା' ବାପଘର କିମିତ ହେଲା ।"

କରୁଣା ବାବୁ···ଓଡ଼ିଆ କି ବଙ୍ଗାଳୀ, ମୁଁ ଜାଣେନା । ତାଙ୍କୁ ପଶୁପତି ବାବୁବୋଲି ଡାକନ୍ତି; କିଏ କମେଇ କରି ପଶୁବାବୁ ବୋଲି ଡାକନ୍ତି । ତାଙ୍କର ବହି ଦୋକାନଟିଏ କଲେଜ ସାମନାରେ ଥିଲା ଆଜ୍ଞା ! ବୁଢ଼ା ଅଫିସରୁ ଆସି ଘଣ୍ଟା-ଦଶ ଯାଏ ସେଇଠେ ବସନ୍ତି । ଏ ଝିଅଟି ବୁଢ଼ାମିସ୍ତ୍ରୀ ସାଥୀରେ ଦିନେ ଦିନେ ବହି କିଣିବାକୁ ତାଙ୍କ ଦୋକାନକୁ ଯାଏ । ବୁଢ଼ାମିସ୍ତ୍ରୀ ବାହାରକୁ ଗଲେ ଆଟ୍‌ରେ ବାହାରେ । ବ'ଇଟା ଲମ୍ବା ଜଣ ତା ମୁହଁକୁ ମାନେ, ଧୋତି, ପଞ୍ଜାବୀ, ନାଗରା ଯୋତା ପିନ୍ଧି ବୁଢ଼ା ବାଡ଼ଧରି ରାସ୍ତାକୁ ବାହାରିଲେ ଲୋକେ ଭାବନ୍ତି ଜଣେ ଗୁଜରାଟୀ ବେବସାୟୀ ଯାଉଛି । ତାଙ୍କୁ କଣ୍ଟ୍ରାକ୍‌ଟର ଫଣ୍ଡ୍ରାକ୍‌ଟର ବୋଲି ଭାବନ୍ତି । ପଶୁପତିବାବୁ କିନ୍ତୁ ତାଙ୍କୁ ଚହ୍ନିଚନ୍ତି । ସେ ଏ ଝିଅକୁ ଦେଖିଲେ ଭାରି ଖୁସି ହୁଅନ୍ତି । କେତେବେଳେ ପଇସା ନଅନ୍ତି, କେତେବେଳେ ନିଅନ୍ତିନି,

କେତେବେଳେ କମେଇ ଦଅନ୍ତ । ଧୁର୍ଣ୍ଣି ମାଷ୍ଟ୍ରାଣୀ ବୁଢାକୁ ପଟେଇ ପାଟେଇ ତା ପୁଅପାଇଁ ବେବସ୍ଥା କରଦେଲ ।

"ଓ ଏଇବାବୁ ତା'ହେଲେ ତାଙ୍କପୁଅ ! ପଢ଼ିଛ କଣ, କ'ଣ କମିତ ହେଲ ?"

"ସେଇ କଣ ବି. ଏ. ଏମେ. ପଢ଼ିଛୁ, ହେଲେ ଘର ଜ୍ଵଳ୍ପବାଜିଆ ପିଲଟା । ପୁରା ବେପରୁଆ, ମା' ତ ତାର ନ'ହିଁ, ବାପର ଗେଲବସର ପୁଅ ହେଲେ ଯାହା ହୁଏ । କଲେଜ ପିଲଏ ମାଷ୍ଟ୍ରାଣୀମାନେ ମିଶି ଗୁନ୍ଦାଭେଦା କଣ ବହେ ପଇସା ଦେଲେ, ତା ନାଁରେ କଛୁ ପଇସା ଜମାଥିଲ, ବୁଢା ଆଉତକ ଯୋଗାଡ଼ କଲ । ବେଶି ସାହାପକ୍ଷ ହେଲ ସେଇ ଧୁର୍ଣ୍ଣି ମାଷ୍ଟ୍ରାଣୀ । ବାହାଘର ବାଏଁ ବାଏଁ ହୋଇଗଲ ।"

"କ'ଣ ସେ ସାହାଯ୍ୟ କଲ ?"

"ସାହାଯ୍ୟ କରନ୍ତ ? ଆଉ କମିତ କରଥାନ୍ତା ? ଝିଅଟା ବାହାହେଇ ଶାଶୁଘରକୁ ଗଲ···କଲେଜ ପାଖରେ ସିନା ବସା, ତାଙ୍କ ଗାଁଟା ସେଇ ଖଣ୍ଡଗିରଠୁ ଆଉ ଦ' ଘର ମାଇଲ ବାଟ । ବୋହୂ ଗାଁକୁ ଗଲ । ଗାରୁ ଚଉଠି ପରେ ବାପ ପାଖକୁ ଫେରଲ । ଧୁର୍ଣ୍ଣି ମାଷ୍ଟ୍ରାଣୀ ପାଖକୁ ଯାଇ ଖାଲ କାନ୍ଦଲ । କହୁଲ, "ବାବା ତାଙ୍କର ଗୁକଣ୍ଡ ବାକଣ ନାହିଁ, କମିତ ଚଳବ୍ବ ! ବାପ ବୁଢ଼ା ମୁହ ଶୁଖେଇ ତାଙ୍କ ପାଖରେ ଛୁଡାହେଲ । ବୁଢୀ ତାକୁ କୋଳକୁ ନେଇ, ଆଖିର ଲୁହ ନଜ ପଣତ କାନରେ ପୋଛ ଦେଇ କହୁଲ ଓ ଏଇକଥା, ଏତେ ବ୍ୟସ୍ତହନା । ଆଜ୍ଞା ସାଥିସାଥି ଗାଡ଼ିରେ ଯାଇ ତାର କୋଉ ପାଠପଢ଼ୁଆ ଟିଅଲୁ କ'ଣ କହ ତା ଗିରସ୍ତଦ୍ଵାର କ'ଣ ବଡ଼ ଗୁକଣଟେ କରାଇଦେଲ । ଏ ଝିଅଟାକୁ ବ ସାଥିରେ ନେଇଥିଲ, ବୁଢୀ କଥାକୁ ତ ବଡ଼ ହାକିମ ହୁକୁମା ଭାଙ୍ଗି ପାରନ୍ତନ । ତାଙ୍କ ସ୍ତ୍ରୀ, ଝିଅ, ବହୂ ବୁଢୀର ଚେଲ, ବୁଢୀ ସ୍ବାପାଇଁ ବ ଗୁକିରଟେ ଯୁଟେଇ ଦେଲ ।"

"ଏଁ କ'ଣ କହୁଲୁ ଦୁଃଖୀ, ଦହିଁଙ୍କ ପାଇଁ ଗୁକଣ ? କୋଉଠେ ?"

"ମୁଁ ଆଜ୍ଞା ସେ ଗୁଡ଼ାକ କହୁପାରବନ, ସେ ଯୋଉ ପରେଡ଼ ପଡ଼ିଆ ପାଖରେ ବଡ଼ ଲମ୍ବା କୋଠାଟା ଅଛୁ, କ'ଣ ସେକ୍ରେଟେରିଏଟ୍ ନା କ'ଣ କହନ୍ତ, ଗେଟ୍ ପାଖରେ ଫୁଲସ୍ ଜଗିଥାଏ ମ, ତା'ର ଭିତରେ ଗିରସ୍ତ ଭରଯା ଦହିଁକ ଦହେଁ ଗୁକଣ କଲେ ।"

"ଆଚ୍ଛା, ଏ ସତ୍ୟସୁନ୍ଦର କହୁଚ ସେ ତା ଝିଅ ବୋଲି ?"

"ତା ମୁଣ୍ଡ ଗଣ୍ଡି କହୁଚ ଅଜ୍ଞ ! ଖାଲି ବାହାପିଆ, ଫନ୍ଦିଗଆଟାଏ, ସେଥିରେ ଧାନରେ ଦ'ସେରେ ଅଗାଡ଼ି । ମିସ୍ତ୍ରୀଲୋକ ନା, ସୂତା ପକେଇ ଗୋଟାଏ ସମ୍ପର୍କ ଯୋଡ଼ିଚ, ଆଉ କରଣୀରେ ତାକୁ ମଜଭୁତ କରି ପଲସ୍ତରା କରି-ଦେଇଛି ।"

—ମାନେ ?

"ମାନେ ଆଉ କ'ଣ, ସେ ବୁଢ଼ାମିସ୍ତ୍ରୀ ତ ରାଜମିସ୍ତ୍ରୀ, ତା ତଳେ ଆଉ ଦଶ-ପାଞ୍ଚ ମିସ୍ତ୍ରୀ କାମଧାମ କରନ୍ତି ଠିକାରେ । ଆଉ କିଏ ତାଠୁ କାମ ଶିଖିବାକୁ ତାଙ୍କ ସାଥିରେ ମିଶିଥାଏ, ଏଇ ଶଶୁରାଇଟା ତା'ପାଖରେ କାମ ଶିଖୁଥିଲା । କଥାରେ ବୁଢ଼ାକୁ ଭୁଲେଇ ଭାଲେଇ ରଖିଥିଲା । ବୁଢ଼ା ଟିକିଏ ତାକୁ ଭଲପାଏ । ପଢୁଆ ଲୋକଟା ନା, ଚଟ୍ କରି କାମ ଧରିନିଏ । ବୁଢ଼ା ମଲାବେଳେ ଶଶୁରାଇକୁ-ପରା କହି ଯାଇଥିଲା, ଝିଅଟା କଥା ବୁଝିବାକୁ । ସତ କି ମିଛ ମୁଁ ଜାଣେନା, ସେ କହେ । ସେଇଦିନଠୁ ସେ ତାଙ୍କ ଘରକୁ ଯିବା ଆସିବା କରେ । ଝିଅ ତାକୁ ମଉସା ବୋଲି ଡାକେ ।"

"ଓ ଏଇମିତିଆ ସମ୍ପର୍କ ! କେତେ ଜାହାମିନ୍ତ... ମୋ ପାଖରେ ଗାଇଗଲା । ସେ ପଶୁପତିବାବୁ ତାକୁ କିମିତି ବ୍ୟବହାର ଦେଖାନ୍ତି ।"

"ବେବହାର ଆଉ କ'ଣ, ତାଙ୍କର ପଥର ଖଣି ଅଛି, ଦ' ଢ'ଟା ଟ୍ରକ, କୁଲି ମଜୁରିଆ ଲାଗିଛନ୍ତି । ଶଶୁରାଇ ପଥର ବରାଦ କରେ, ପଶୁପତିବାବୁ ମାଲିକଙ୍କୁ ପଥର ସପ୍ଲାଇ କରନ୍ତି, ମଝିରେ ତାକୁ କମିସନଟା ମିଳେ । ଏଇ ତ ସମ୍ପର୍କ, ବାକି ଝିଅ ବୋଲି ଡାକି ଘରେ ପଶିଗଲେ ଗୁଆ, ଜଳଖିଆ, ଜଳଖିଆ ମିଳୁଥିଲେ ମିଳୁଥିବ । ରଦିଆ ବେସାଇଜିଆ ପଥର ଚଳେଇ ଦେଲେ କମିସନ ଟିକିଏ ବେଶି ମିଳେ । ଶଶୁରାଇ ଯୋଉ ମାଲିକର କାମକରେ ଏଇ ରଦିଆ ମଦିଆ, ବେସାଇଜିଆ ପଥର ନେଇ ମାଲିକଙ୍କୁ ଦେଖାଏ । ମାଲିକ ଗୁଡ଼ାକ ତ ଭାରି ବୋକା, ସେ ପଥରର ତାରିଫ୍ କରି ତାକୁ କାମରେ ଲଗାଇଦିଏ । ବଡ଼ ଜାଗାରେ ଡବଲ୍ ସିମେଣ୍ଟ ଖର୍ଚ୍ଚ ହୁଏ; ତଥାପି ଏ ବାବୁଗୁଡ଼ାକ ବୁଝିପାରନ୍ତିନି । ବାବୁଆଣୀମାନଙ୍କୁ ପଠାନ୍ତି କାମ ଜଗିବାକୁ, ମିସ୍ତ୍ରୀ ଇମିତି ଗପରେ ତାଙ୍କୁ ମଜେଇ-ଦେଇ କାମ ଧପେଇ ଦିଏ ଯେ କିଛି କହିପାରନ୍ତିନି । ଆମେ ସବୁ ମୂଲିଆ, ମଜୁରିଆ ଛାଡ଼ୁ, ଏ ବଡ଼ ବାବୁଗୁଡ଼ାକ ଅଫିସ୍ କିମିତି ଚଳଉଚନ୍ତି ? ସରକାର ଇମିତି ରଦିଆ ମଦିଆ ଲୋକଗୁଡ଼ାକୁ ରଖି ରାଜ୍ୟ ଚଳଉଚି ! ଏତେ ବୋକା, ଏତେ ରଦିଆ ସରକାର । ସେଇଥିପାଇଁ ଭୁଷୁଡ଼ୁଚି ଥରକୁ ଥର । ବେଶିଦିନ ତିଷ୍ଠୁନି ।"

●

୫

ଆଜି ମିସ୍ତ୍ରୀ ସାଇରେ ସଭା ହେବ । ଦଶହରାଠାରୁ ସେମାନଙ୍କର ବର୍ଷ ଆରମ୍ଭ । ନୂଆବର୍ଷର ନୂଆ ଯୋଜନା ସଭାରେ ସ୍ଥିରହେବ । ଆଗାମୀ ବର୍ଷପାଇଁ କିଏ କ'ଣ କରିବ, କିପରି ଭାବରେ କାର୍ଯ୍ୟ କରାଯିବ, ମାଲିକମାନଙ୍କ ସହିତ ସମ୍ପର୍କ କିପରି ରଖାଯିବ, ଏ ସବୁ ବିଷୟରେ ଆଲୋଚନା, ତର୍କପରେ ସିଦ୍ଧାନ୍ତ ନିଆଯିବାର କଥା ।

ମିସ୍ତ୍ରୀ ସାଇକୁ ଲଗି ମହାରଣା ସାଇ, ତା ଆର ପାଖେ ଶ୍ରମିକ ବସ୍ତି, ସମସ୍ତଙ୍କର ସଭା । ପ୍ରଥମେ ଅଲଗା ଅଲଗା ହେବ, ତା'ପରେ ଏକ ସହିତ ସମୂହ ସଭା । ଏଇ ପ୍ରକାର ବସ୍ତି ରାଜଧାନୀର ବିଭିନ୍ନ ଅଞ୍ଚଳରେ ମୁଣ୍ଡ ଟେକିଛି । ଯେଉଁଠାରେ ସରକାରଙ୍କର ବିସ୍ତୃତ କୋଠାବାଡ଼ି, ସେଇଠେ ତାର ନିର୍ମାତାମାନଙ୍କର ବସ୍ତିବାଡ଼ି । ସତେ ଅବା ସ୍ୱାଧୀନୋତ୍ତର ଗ୍ରାମ୍ୟ ଅର୍ଥନୀତିର ପ୍ରତିଚ୍ଛବି ବହନକରିଛି । ଗାଁର ସେଇ ଧନିବ୍ୟକ୍ତିଙ୍କ ସମୁଚ୍ଚ ପ୍ରାସାଦର ଚତୁର୍ଦ୍ଦିଗରେ କୁଟୀରମାଳା ବେଢ଼ି ରହିଥିଲା ପରି ଆକାଶଛୁଆଁ - ଅଟ୍ଟାଳିକାର ପାଦଦେଶରେ ଏଇସବୁ ଶ୍ରମିକ ବସ୍ତି । ପ୍ରାସାଦମୟୀ ନଗରୀର ଶୁଭ୍ର ଶରୀରର ଶଯ୍ୟାର ବିଦୀର୍ଣ୍ଣ ବସ୍ତିଗୁଡ଼ିକର ମଳିନମୂର୍ତ୍ତି, ତଥାପି ଏଗୁଡ଼ିକ ରାଜଧାନୀର ଏନ୍ତୁଡ଼ିଶାଳ, ଏଇଠାରେ ରାଜଧାନୀର କୁଆଁ କୁଆଁ ଡାକ ଶୁଣାଯାଇଛି । ଏଇ ବସ୍ତିଗୁଡ଼ିକରେ ରାଜଧାନୀର ଜନ୍ମ ଜାତକ ସାଇତାହୋଇ ରହିଛି ।

ରାଜଧାନୀକୁ ଜନ୍ମଦେବା ପାଇଁ ଯୋଉଁମାନେ ଗର୍ଭବେଦନା ଭୋଗ-କରିଥିଲେ ସେମାନଙ୍କ ଭିତରୁ କେହି କେହି ଚାଲିଗଲେଣି, କିଏ ଯିବାପାଇଁ ଗଣ୍ଠିଲି ପଣ ବାନ୍ଧିଲଣି, ଆଉ କିଏ ଯିବା ବାଟରେ ଗଛଛାଇରେ ଟିକିଏ ଅଟକିଛି ତାର ସାଥୀ ବାଟୋଇକୁ, ସେ ପହଞ୍ଚିଗଲେ ଉଭୟେ କଥାବାର୍ତ୍ତା ହୋଇ ଆଗେଇ ଯିବେ, ବାଟକଷ୍ଟ ଜଣାପଡ଼ିବନି । ରାଜଧାନୀ ଜନ୍ମନେଲା-ବେଳେ ଯୋଉମାନେ ପିଲାଥିଲେ ସେମାନେ ଏବେ ଯୁବା, ଦରବୁଢ଼ା ।

ଯୋଉମାନେ ପରେ ଜନ୍ମ ଦେଇଚନ୍ତି ସେମାନେ ତାଙ୍କର ବାପଅଜା ଗଢ଼ି ଯାଇଥିବା ରାଜଧାନୀକୁ ଭାଙ୍ଗିବା ପାଇଁ, ଖଣ୍ଡିଆ ଖାବଣ୍ଡ କରିବାପାଇଁ ଖଣ୍ଡା, ଛୁରୀ, ଫାର୍ଶା ଧରି ରାସ୍ତାରେ ରାଜ ଅସ୍ୱାଅ ବୁଲୁଛନ୍ତି । ଏଇମିତି ଭଙ୍ଗାଗଢ଼ାର ଖେଳ ଚାଲିଛି । ଯୋଉ ମିସ୍ତ୍ରୀ, ମୂଲିଆ, ରେଜାଗୁଡ଼ାକ ସଚଳରୁ ଅଚଳ ହେଲେଣି, ଅଚଳ ମହାମେରୁକୁ ଉଆରକରି ଛିଡ଼ା କରାଇବାରେ ନିଜର ରକ୍ତଢ଼ାଳି ଶେଷରେ ଶିଠାଳିଆ ହୋଇ ପରିତ୍ୟକ୍ତ ହେଲେଣି, ସେମାନଙ୍କ ମଧ୍ୟରୁ କେତେକ ବସ୍ତିରୁ ବାହାରି ଆସି ଫୁଟ୍‌ପାଥକୁ ଆଶ୍ରୟ କରିଲେଣି ।

"ସତ୍ୟସୁନ୍ଦରର ଘର ସେଇ ମିସ୍ତ୍ରୀ ସାଇରେ । ସେ ବି ତ କହେ ତା' ଗାଁ ଖଣ୍ଡଗିରି ପାଖରେ ବୋଲି । ଦୁଃଖୀ କହେ ସେ କୋଉଠିକାର ଲୋକ, କେବେ ରାଜଧାନୀକୁ ଆସିଲା, ସେ ଜାଣେନା । ଯାହାହେଉ ସେ ନଅ ମହଲା କୋଠା ପାଖରେ ଥିବା ବସ୍ତିରେ ରହୁଚି । ପାଟ ତା'ର ସେଇଠେ ଥାଏ । ସମସ୍ତେ ଥିଲାବେଳେ ସେ ତାକୁ ପାଟ ବୋଲି ଡାକେ । କେହି ନଥିଲାବେଳେ ମଝିରେ ମଝିରେ ସ୍ନେହରେ ଡାକେ "ଗୁଲବଦନୀ" ସେଇଟା ତାର ଅତି ସ୍ନେହ ଡାକ, ଅତି ଆପଣାର, ଅତି ବିଶ୍ୱାସର ଡାକ । ଯେତେବେଳେ ସତ୍ୟସୁନ୍ଦର ମନ ଅତି ଆନନ୍ଦରେ ଥାଏ କିମ୍ବା ସେ କୌଣସି ଏକ ଅପକର୍ମ କରିବାକୁ ଯାଏ, ଅଥବା ଅପକର୍ମ କରିସାରି ତାକୁ ନିଜ ଭିତରେ ଲୁଚେଇ ନ ପାରି ଖାଲି ମାନସିକ ଯନ୍ତ୍ରଣା ଭିତରେ ସେତକ ତା ଆଗରେ ପ୍ରକାଶ କରିଦେବାକୁ ଚାହେଁ, ସେତିକବେଳେ ଏ ଗୁଲବଦନୀ ଡାକଟା ତା' ପାଟିରୁ ବାହାରେ । ମୁହଁଟା ତାର ପୁନଅଁ ଚାନ୍ଦପରି, ତା ଆଖିରେ ଗୋଲ ବା ସେଇଥିପାଇଁ ।"

"ପାଟ ତାକୁ ଭଲରୂପେ ଚିହ୍ନିଚି, ତା'ମନର ଅନ୍ଧ କନ୍ଦ ଦେଖିଚି । ସେ ସମୟରେ କେତେ ଅସହାୟ ହୋଇ ତା କୋଳରେ ଲୋଟେ, ସେ ତାର ମୁଣ୍ଡବାଳରେ ହାତ ଚଳେଇ ଆଉଁସିଦେଇ କି ଅଭୟ ଦିଏ, ସେତିକିରେ ସେ ପୁଣି ବଢ଼ିଲା ନଈପରି କିମିତି ନାଚକୁଦ ଅରେଇଯାଏ, ସେ ତାହା ଅନୁଭବ କରିଛି । ସତ୍ୟସୁନ୍ଦର ପାଖରେ ତା ଗୁଲବଦନୀର ରୂପ ସବୁବେଳେ ସବୁଜ, ମନ ସବୁବେଳେ ଶ୍ରଦ୍ଧାସିକ୍ତ, ତାର ଗୁଲବଦନରେ ବୟସର ଜ୍ୟାମିତିକ ରେଖାଗୁଡ଼ାକ ସ୍ପଷ୍ଟ ଫୁଟେନା । ସତ୍ୟସୁନ୍ଦରର ସବୁ ଅପରାଧଗୁଡ଼ାକ ସତେ ସିମିତି ସେ ଶୋଷି ପକାଏ ବ୍ଲଟିଂକାଗଜ ଭଳି । ସେ ତା ଗୁଲବଦନୀ ପାଖରେ କେତେବେଳେ କଅଁଳା ବାଛୁରୀଟିପରି କୁଦାମାରେ, କେତେବେଳେ ବିଲେଇ ଛୁଆପରି ଘୁରୁରୁ ଘୁରୁରୁ ହୋଇ ଲାଗେଇ ପଡ଼େ,

ଛେଳିଛୁଆ ପରି ତା କୋଳରେ ଯାଦନ. ସଙ୍ଗେ, ମେଣ୍ଢାଛୁଆ ପରି ତା କୋଳରେ ଲେସି ହୋଇ ରହୁଥାଏ, ଆଉ କେତେବେଳେ ସିଂହପରି ଖୁବ୍ ଅଳସୁଆ ହୋଇ ରୂପ ବିସ୍ତାରକରି ଶୋଇଥାଏ, ଅନ୍ୟ ପାଟି ତା ମୁହଁରେ ଖାଦ୍ୟ ଯୋଗାଏ ।”

“ଗୁଲବଦନ, ରେ ଗୁଲବଦନ, ମୋ କରଣୀଟା ଆଣିଲୁ ମୁଁ ଯାଏ ।” ବାହାରୁ ଡାକ ଶୁଣାଗଲା ।

“ପାଟି ବାହାର ଆସି କହିଲା, ସଂଧ୍ୟା ବେଳଟାରେ କରଣୀ କ'ଣ କରିବ ? କ'ଣ କିଛି ସହରେ କାମ ଅଛି କି ?”

“ନାହିଁ ।”

“ନାହିଁତ…କରଣୀ କ'ଣ ଦରକାର । କାମରୁ ଧାମରୁ ଆସିଚ, ସ୍ୱ'କଣ ଧଉଚ, ଏଇ ବଦାମ ମୁଡ଼ି ଦି'ଟା ଖାଉଥାଅ, ବିଶ୍ରାମ ନିଅ, ସବୁବେଳେ କ'ଣ ବାହାରେ ରହୁଚ । ଘରକୁ ନ ଆସିଲେ ଘର ଅଭିଶାପ ଦିଏ ।”

“ସଂଧ୍ୟାବେଳେ ଟିକିଏ ସାଙ୍ଗ ସାଥୀଙ୍କ ସାଥିରେ ନ ମିଶିଲେ ଜାଣିହୁଏନା କୋଉଠେ କି କାମ ଖୋଲୁଛି, ନୂଆ କାମ କେତେବେଳେ ମିଳିବ, କିଏ ତାର ମାଲିକ । ବସିଲେ ସିନା ଦଳଭିତରୁ ଆଲୋଚନା କରି ତଥାଟା ବାହାର କରିବାକୁ ହେବ ।”

“ମୁଁ ଜାଣିଛି ସେ ଦଳଟି କିଏ, ସେଇ ଗଞ୍ଜେଡ଼ି, ମାତାଲ ଦଳ, ତାଙ୍କର ସାଥିରେ ମିଶି, ଖଞ୍ଜଣି ବାଡ଼େଇ ରାତିଅଧକୁ ଆଖି ନାଲି ନାଲି କରି ଟଳି ଟଳି ଆସିବ, କ'ଣ ଦଇଟା ନାକରେ କାନରେ ଗୁଞ୍ଜି ଦେଇ ପଡ଼ିଯିବ ସେ ଆଉ ଚେତା ଚଇତନ କିଛି ରହିବନି । ମୁଁ ତ ପୁଣି ଗୋଟାଏ ମଣିଷନା ଆଉ କ'ଣ, କେତେବେଳେ ବସି ଦୁଃଖ ସୁଖ ପଦେ ଅଧେ ହେବାର ସମୟ ତମେ ଦେଉଚ ? ମନଖୁସିରେ ବସି କଥା ପଦେ କି ହେବାର ଭାଗ ମୁଁ ପାଉନି ।”

“ସତ୍ୟସୁନ୍ଦର ଗୁମ୍ ମାରି ବସିଯାଏ, କହେ, “ଠିକ୍ଅଛି…ଏଇ ବସିଲି କହ କ'ଣ କହିବାର ଅଛି । ଯେତେ କଥା ହେବାର ହୁଅ । ଆଜି ତମର ଭାଗ, ଅଚ୍ଛା କହିଲ, ଆଉ କା ଭାଗରେ ବେଶୀ ପଡ଼ିଯାଉଚ !”

“ପାଟି ଭିତରୁ ଚିନାବାଦାମ, ମୁଡ଼ି, କଟା ପିଆଜ, ଲଙ୍କା, ଦଗ୍ଧର ଗୋଡ଼ାଲୁଣ, ମୁଠାଏ ବାରମଜା ଆଣି ତା ସାମନାରେ ଥୋଇଦେଇ ହସି-

ଦିଏ, କହେ ଖାଅ ! ଆଜି ଯାହା ଜ୍ଞାନରେ ଯାହା ପଡ଼ୁ ପଡ଼ୁଛି ମୋର ପେଟରେ ଟିକିଏ ବି ଦୁଃଖନାହିଁ । ମୋ ଧଣ, ସଞ୍ଜବେଳେ ସେ ମାତାଲ ଗଞ୍ଜେଡ଼ି ଲୋକଗୁଡ଼ାକ ସାଥିରେ ଆଦୌ ମିଶନା । ଭଲ ମିସ୍ତ୍ରୀ ପାଖକୁ ମାଲିକମାନେ ଦଉଡ଼ିବେ, ପଇସା ପଛରେ ଗୋଡ଼ାଇବ । ଠକମାନେ ମାଲିକ ଆଉ ପଇସା ପଛରେ ଗୋଡ଼ାନ୍ତି ।” ଚୁ’ କରିବାକୁ ଲାଗିଗଲା ପାଟ ।

“ମୁଢ଼ି ମୂଠାକ ଚୋବାଉ ଚୋବାଉ ଜିଭଟାକୁ କାମୁଡ଼ି ଦେଲା ସତ୍ୟ-ସୁନ୍ଦର । ପାଟର କଥାପଦକ ତା’ ମୁଣ୍ଡ ଘୂରାଇ ଦେଲା, ସତରେ କ’ଣ ପାଟ ତା ଭିତରର ରୂପଟାକୁ ଦେଖିନେଲାଣି, ସେ କ’ଣ ଜାଣିଗଲାଣି ଯେ ଗୋଟାଏ ଠକକୁ ସେ ଠାକୁର ଭଳି ସେବା କରୁଛି । ଭାରି ଖରାପ ଲାଗିଲା ତାକୁ । ଯେତେ ଲୋକ ତା ନଜରରେ ହେଇ ଅଛନ୍ତି, ଯେଉଁମାନଙ୍କ ପାଖରେ ସେ କେତେ ରାତି କଟାଏ, ସେମାନେ ତ ସବୁବେଳେ ଇମିତି ମନଛୁଆଁ କଥା ପଦେ କହୁନାହାନ୍ତି । ତାଙ୍କର ପ୍ରାପ୍ୟ ପାଇବାକୁ ସେମାନେ ଭାରି ସଜାଗ ଥାଆନ୍ତି । ନିଜ ହାତରେ ସେମାନେ ପାନ୍ତା, ଭାଙ୍ଗ, ଚିଲମ, ମଦ, ମାଂସ ଭଜା, ରଗ ବାରମଜା ବଢ଼େଇ ଦେଇ ତାକୁ ଚୁପ୍ କରାଇଦିଅନ୍ତି । ତାର ହାତୀ ଭଳିଆ ଦହଟା ତାଙ୍କର ଛୁଣ୍ଡା କତରରେ ନିଃସହାୟ ଅବସ୍ଥାରେ ଜନ୍ତା ପିମ୍ପୁଡ଼ିଙ୍କ ଖାଦ୍ୟ ଭାବରେ ପଡ଼ିରହିଥାଏ । ସେମାନେ ରାତି ବାହାର କରି ହୋଟେଲ, ଡାକବଙ୍ଗଳା, କୋଠିରୁ ଫେରିଲାବେଳକୁ ହୁଏତ ଇଏ ଗଁ ଗଁ ହେଉଥାଏ କିମ୍ବା ନିଶାଛଡ଼ା ଉଦରର ଅଳସ ମେଣ୍ଟାଇବାକୁ ସେମାନଙ୍କୁ ଖୋଜିଲାବେଳେ ସେମାନେ ମିଳନ୍ତିନି, ବୋଧହୁଏ ତା ଗୁଲବଦନ ଏଇ କଥାର ଏକ ମଧୁର ପ୍ରତିବାଦ କରିଚି, ସେଇଥିପାଇଁ ଅଭିମାନରେ କହୁଚି, ମନ-ଖୁସିରେ କଥାପଦେ ହେବାର ଭାଗ ମୋତେ ମିଳୁନି ।”

“କିଓ, ବାଦାମ, ମୁଢ଼ି ସିମିତି ଥୁଆହୋଇଚି, କିଛି ତ ଖାଇନ । କ’ଣ ମୋ ଉପରେ ରାଗିଗଲକି ? ଏତେ ବଡ଼ ମଣିଷର ଏତେ ପତଳା ମନ, ଟିକିଏ ଛୁଇଁଦେଲେ ଫାଟି ଯାଉଚି !”

“ନାଇମ ଗୁଲବଦନ ! ତୋ କଥା ମୁଁ କ’ଣ ଧରେ । ତୋ କଅଁଳିଆ ଗାଲଗୁଡ଼ାକ ଭାରି ମିଠା, ଭାରି ମୁଲାମ, ଏଇ ଚଣାବାଦାମ, ମୁଢ଼ି, ରଗ-ଭଜାଠୁ ବି ଆହୁରି ମଜାଳିଆ, ଏଇ ଚୁ’ଠୁ ବି ଅହୁରି ତାଜା । ମୁଁ ଆଶ୍ଚର୍ଯ୍ୟ ହୁଏ ଗୁଲବଦନ, ସଂସାରରେ ଇମିତି ଲୋକଗୁଡ଼ାଏ ଅଛନ୍ତି, ଯାହାର ପ୍ରଶଂସାଗୁଡ଼ାକ ଗାଲପର ଲାଗେ, ଆଉ ଗୁଡ଼ାଏ ବି ଅଛନ୍ତି ଯାର ଗାଲଗୁଡ଼ାକ ପ୍ରଶଂସାପର

ଲାଗେ । ଖରା ମିଠାଳିଆ, ଖରା ମଜାଳିଆ, ଖରା ମନଛୁଆଁ । ଲକ୍ଷ୍ମୀପରି ଦକ୍ଷରେ ବୋଲା ହୋଇଯାଏ; କିନ୍ତୁ ସତ କହୁଚି, ଗୁଲବଦନ ମରମଟାକୁ ଘଣ୍ଟାଳି-ଦିଏ, ଘାଣ୍ଟି ଚକଟି ପକାଏ ।"

"ଗୁଲବଦନୀ ଗ୍ଲାସ ପିଆଲାଟା ହାତକୁ ବଢ଼ାଇ ଦେଇ ହସି ହସି କହେ, "ମିଠା ଗୁଡ଼ାଏ ଖାଇଲେ ପେଟ ଘଣ୍ଟାଳି ହେବନି !"

ସତ୍ୟସୁନ୍ଦର ତା ଦରହସା ପୋଟଳ ଚିରା ଆଖି ଦଇଟାକୁ ତନ୍ମୟଭାବେ ଚାହିଁ ରହେ । ସ୍ନେହର ନୀଳ ସାଗରଟା କ'ଣ ଗର୍ଜି ଗର୍ଜି ଥକିଯାଇ ତା ଆଖିରେ ଥକାମାରୁଚି ! ପାପୀ, ଶଠ, ଶଇତାନ, ଅପରାଧୀ ଏଇ ମଣିଷଟା ଉପରେ ତାର ଏତେ ସରାଗ, ଏତେ ସ୍ନେହ... ଏତେ ତୃଷ୍ଣା । ପିଆଲାଟାକୁ ସେ ହାତରୁ ନେଇ ତା ଓଠରେ ଚୁମୁକ୍ ଦିଏ । ପୁଣି ତା ପାଖରେ ବସି ମୁଣ୍ଡରେ ଲାଗିଥିବା ସିମେଣ୍ଟ ଧୂଳି ପଣତକାନିରେ ଝାଡ଼ିଦିଏ । ମୁଣ୍ଡର ଗହଳିଆ ବାଳ ଗୁଡ଼ାକରେ ଆଙ୍ଗୁଳି ବୁଲାଇ ତାକୁ ସଜାଇଦିଏ । ପକେଟରୁ ଶୁଖିଲା ପାନ, ବିଡ଼ି, ଦିଆସିଲିକାଠି, ଓଲମ୍, ବାହାର କରି ତାକୁ ଝାଡ଼ିଦିଏ । ଅପରିଷ୍କାର ହୋଇଥିଲେ ହାଣ୍ଡିରେ ନେଇ ବତୁରାଇ ଦିଏ ସଫା କରିବ ବୋଲି । ଓଠରେ ଚୂନ ସିମିଟିର ଛିଟିକା ଲାଗିଥିଲେ ତାକୁ ଝାଡ଼ିଦିଏ । ପାଟର କଅଁଳ ହାତ ତା ଓଠରେ ଲାଗିଗଲେ, ସେ ଅନୁଭବକରେ ସେତେ ଯିମିତି ତା କ୍ଲାନ୍ତ ଶିରା ପ୍ରଶିରାଗୁଡ଼ାକରେ ଜୀବନ ଆଉ ଯୌବନର ସ୍ରୋତ ଉଚ୍ଛୁଳି ଉଠୁଚି । ପହିଲି ଆଷାଢ଼ର ପରଶରେ ଦୂବଘାସ ମାଡ଼ିଲା ପରି ତା ମନ ମାତିଉଠେ । ସେ ମନେ ମନେ ପ୍ରତିଜ୍ଞା କରେ ଆଉ କାହା ପାଖକୁ ଯିବନି ...ସଞ୍ଜ ହେଲେ ଘର ଛାଡ଼ିବନି ...ଗୁଲବଦନୀ ଯେଉଁ କୁଡ଼ିଆକୁ ଘରରେ ପରିଣତ କରିଚି, ସେ ତାର ଘର ଘର । ତାକୁ ଅନାଦରକଲେ ସେ ଅଭିଶାପ ଦେବ । ଦଶଦିଗପାଳଙ୍କୁ ସାକ୍ଷୀରଖି ସେ ବରବେଶରେ, ବାଜା ରୋଷଣୀ ତଳେ ବେଦିରେ ଯାହାକୁ ବରଣ କରିଥିଲା ଘରଟିଏ ତିଆରି କରିବ ବୋଲି, ସେ ତାକୁ ଧୋକା ଦେଇଚି ...ତା ଆଖି ଦେଖିଚି ଅଙ୍ଗେ ନିଭେଇଚି । ଆଖି ଲୁହରେ ଜକେଇ ଆସିଲା ।

"ଏଁ ତମେ କାନ୍ଦୁଚ...ମୋର ଏ ଟିକିଏ କଥା ବି ସହି ପାରିଲନି... ମୁଁ ଅଲକ୍ଷଣୀ, ପୋଡ଼ାମୁହିଁ ସେଇଥିପାଇଁ ପାଟି ଫିଟେଇ କହିଦେଇଥାଏ । ଆଜି ବାହାରିପଡ଼ିଲା, ଛୋଟିଆ କଥାଟା ତମକୁ ସତରେ ଏତେ ବାଧିଲା ।"

"ସତ୍ୟସୁନ୍ଦରର ବୁକ ଉଚ୍ଛ୍ୱାସ ଆଉ ବୁକୁ ବନ୍ଧ ମାନିଲାନି···ଭେଁ'କରି କାନ୍ଦୁଥିଲା ସେ । ପାଟ କିଛି ବୁଝିପାରିଲାନି, କଥା କ'ଣ, ସେ କାନ୍ଦିଲେ କାହିଁକି । ଚୂଲି ମୁଣ୍ଡରୁ ଶର୍ଗି ବଲେଇଟା ଦଉଡ଼ି ଆସିଲା' ମା' କୋଳରୁ ଉପିଡ଼ି ଛେଳି ଛୁଆଟା କାନଝାଡ଼ି ଅଳସ ଭାଙ୍ଗି ସେଇ ଆଡ଼କୁ ଗୁହିଁଲା । କୁକୁରଟା ପାଦ ଉପରୁ ମୁହଁ ଟେକି ମୁଦିଲା ଆଖି ଦଇଟା ଖୋଲି ତୋଳା ଦଇଟା ଗୁଣଆଡ଼କୁ ବୁଲାଇଲା, ତା'ପରେ କାନ ଠିଆକରି ସେଇଆଡ଼କୁ ମୁହେଁଇଲା । ପାଖକୁ ଆସି କରୁଣ ଏକ ଚତ୍କାର କରି ଛୁଡ଼ାହେଲା । ଗୁଲବଜୀ ସତ୍ୟସୁନ୍ଦରକୁ କୋଳକୁ ନେଇ ଆଖିର ଲୁହ ପୋଛି ଗ୍ରଣ ପକାଇ କହିଲା, "ଆଉ କେବେ କିଛି କାନ୍ଦୁନି, ଶୁନନ୍ଦୁଅ ।" ଆସ୍ତେ ଆସ୍ତେ କାନ୍ଦ ବନ୍ଦ ହେଇଗଲା । ବଲେଇ, ଛେଳିଛୁଆ, କୁକୁର ନିଜ ନିଜ ଜାଗାକୁ ଫେରିଯାଇ ପୂର୍ବପରି ଶୋଇଲେ; ସତେ ଯିମିତି କିଛି ଘଟିନି ।

ସତ୍ୟସୁନ୍ଦରର ମନଭିତର ଘା'ଟାକୁ ଗୁଲବଜୀ ଦେଖିପାରିଲା ନାହିଁ, ଯୋଉ ଘା'ରେ ଆଘାତ ବାଜିବାରୁ ସେ କାନ୍ଦିଲା ।

ବର୍ଷି ଆରମ୍ଭରେ ସତ୍ୟପୀରଙ୍କର ଶୀନ୍ଦ ।

ଯାଇଟା ଯାକର କରଣୀ ସେଇଠେ ଗଦା ହେଉଚି, ପୀର ଦେବତାଙ୍କ ପାଦତଳେ । ଲୋକମାନେ ଜମା ହେଇଗଲେଣି । ସଭା ଆରମ୍ଭ ହେଲା । ସତ୍ୟବାଦୀ ସଭାପତି, ସେ ଦୁ'ଅକ୍ଷର ପଢ଼ିଚି, ଯାଇଲୋକେ ତାଂକୁ ଖୁବ ଖାତିର କରନ୍ତି । ଗତ ପାହିଲେ ଦଶହରା । ମିସ୍ତ୍ରୀମାନଙ୍କର ନୂଆ ବର୍ଷ ଆରମ୍ଭ ।

ଆଲୋଚନା ଚାଲିଚି, କିଏ କହୁଚି ମଜୁରି ବଢ଼ାଇବା, କିଏ କହୁଚି ଏଣିକି ମାଲିକମାନଙ୍କଠାରୁ ଆଡ଼ଭାନସ୍ ରଖିବା, କିଏ ପ୍ରସ୍ତାବ ଦେଲା ଆନ୍ଦୋଳନ କରିବା, ଆମପାଇଁ ଗୋଟାଏ ଡାକ୍ତରଖାନା ହଉ, ଆମପାଇଁ ସିନେମାଘର ହେଉ, ସରକାର ଶ୍ରମିକମାନଙ୍କ ପିଲାମାନଙ୍କୁ ମାଗଣାରେ ପଢ଼ାଉ । ତାଙ୍କ ଭିତରୁ ବୁଦ୍ଧିଆ ପିଲାଙ୍କୁ ବୃତ୍ତି ଦିଆଯାଉ । ଘର ଛାଆର ବର୍ଷସ୍କରେ ନୂଆ ନୂଆ କଥା ଯାହା ବାହାରୁଚି, ତାଙ୍କର ପିଲାମାନେ ସେ ଦିଗରେ ତାଲିମ ହୁଅନ୍ତୁ । ତାଙ୍କର ପିଲାଙ୍କ ପାଇଁ କହାତ କମ୍ପରେ ଗୋଟାଏ ଇମିତି ସ୍କୁଲ ହଉ, ଯୋଉଥିରୁ ବାହାରି ଆସିବା ପରେ ପରେ ସେମାନେ କାମରେ ଲାଗି ପାରିବେ । ତେଣିକି ଯିଏ ଯାହାକୁ ଯିବ ଯିବ । ଇମିତି ଆଉ କେତେ କ'ଣ ପ୍ରସ୍ତାବ ଆସିଲା ।

"ଜଣେ ଅଶୀ ଆରପାଖର ବୁଢ଼ା ମିସ୍ତ୍ରୀ ଥରଥର କହିଲା, "ପିଲାଏ ଯଦି କିଛି ନୂଆ କାମ କରୁଚ କର, ଆମ ଜଳକା ଆଖି ଦଇଟା ପଦସ୍ଥା ହେଉ । ବୁଢ଼ା ବୁଢ଼ୀ ଜରାଗ୍ରସ୍ତ ମିସ୍ତ୍ରୀ ମୂଲିଆଙ୍କ ପାଇଁ ଶେଷବେଳକୁ ଆଶ୍ରୟ ଦେବାକୁ ଗୋଟାଏ ଆଶ୍ରୟଘର କରାଅ, ଯେମାନେ ରକ୍ତ ଜଗଡ଼, ହାଡ଼ଗୁଣ୍ଡି, ଏ ସହରଟିକୁ ଗଢ଼ିଚନ୍ତି, ମଲାବେଳକୁ କ'ଣ ସେମାନଙ୍କୁ କୁଆ, ଗିଧ ଖାଇବେ । ଯେମାନେ ବଞ୍ଚିଲାଯାଏ ସରକାର କିଛି ଗୋଟାଏ ପିନ୍‌ସିନ୍ ଦଉ । ଯୋଉ ଚାକରିଆ-ଗୁଡ଼ାକ ସେମାନଙ୍କ ହାତତିଆରି କୋଠା ଘରେ ପଙ୍ଖା ତଳେ ବସି ଆରାମରେ କଲମ ଘଷି କରୁଛନ୍ତି, ସେମାନେ ପିନ୍‌ସିନ୍ ପାଇବେ, ଆଉ ଯିଏ କରଣି ଧରିଚ ସିଏ ପାଉନାହିଁ, ଏଇଟା କୋଉଠିକାର କଥା !"

ଜଣେ ମୂଲିଆ ଠିଆହୋଇ କହିଲା, "ହଇମାନେ, ମୁଁ ମୋ ମନଭିତରର କଥାଟିକ କହୁଚି, ବଡ଼ ବଡ଼ିଆ ଲୋକଙ୍କଠୁ ବେଶି ଏଇ ମିସ୍ତ୍ରୀ ହଇମାନେ ଆମକୁ ଶୋଷୁଚନ୍ତି । ତାଙ୍କର ଅଧା ମଜୁରି ଆମକୁ ମିଳୁନି; ଅଥଚ ଆମେ ହାତ ନ ଦେଲେ ତାଙ୍କର ଫାଙ୍କିସି ବୁଡ଼ିଲା । ସେ ଯାହା ପାଉଚନ୍ତି ଆମେ ଯିମିତି ତା'ର ଅଧା ପାଇବା ସିମିତି ବେବସ୍ଥା କର । ଆମର ଭାଗେ ହେଲେ ତାଙ୍କର ତିନିଭାଗ ଏକଥା ଆଦୌ ଚଳିବନି ।"

ଜଣେ ମିସ୍ତ୍ରୀ ସମ୍ଭାଳି ନପାରି ଛିଡ଼ାହୋଇ କହିପକାଇଲା, "ଠିକ୍ ଅଛି, ତମେ ଏଣିକି କରଣୀ ଧର, ଆମ କାମ କର' ଆମେ ତମକାମ କରିବୁ । ତମେ ଆମକାମ କରିପାରିଲେ ହେଲା । ଆମେ ଯାହା ଅରଜୁଚୁ ସେତିକି ଅରଜି ପାରିଲେ ହେଲା ।"

"ଆଉ ଜଣେ କହିଲା, କାହିଁକି ତମେ ଅଉ କୋଉବାଟ ଦେଇ ଯାଇଚକି ? ସେଇ ଆମରିବାଟ, ଏଇମିତି କାନ୍ଥରେ ପଥର ବୋହୁଥିଲ, ସିଣ୍ଟ ମାରୁଥିଲ, ଫ୍ରେସିଂ କରୁଥିଲ, ତା'ପରେ ହାତ ହତିଆର ଏକ ହୋଇଗଲେ, ତମେ ହେଲ ମିସ୍ତ୍ରୀ, ଆମେ ପଡ଼ିରହିଚୁ ସେଇ ମୂଲିଆରେ । ଆମେ କ'ଣ ପାରିବୁନି ବୋଲି ଭାବୁଚ । ବଳଦଟା ଶିଙ୍ଗ ହଲାଉନି ବୋଲି ତା' କାନ ମୋଡ଼ି, ଲାଙ୍ଗୁଡ଼ି ଭାଙ୍ଗି ତାକୁ ହାଲକାଲ କରୁଚ ହଳିଆ । ଶିଙ୍ଗ ଥରେ ହଲେଇ ଦେଲେ ଆଉ ପଳିବ ! ଆମେ ନିରୀହ ହୋଇ ସବୁ ସହି ଯାଉଚୁ ବୋଲି ତମେ ଅତ୍ୟାଚାର ଚଳେଇଚ । କାଲେ କାମ ଶିଖି ଯିବୁ ସେଇଥିପାଇଁ ଆମକୁ ପାଖରୁ ହଟେଇ ଦେଇ ରେଜାଗୁଡ଼ାକୁ ଧରି କାମ କରିବ । ହଇ ହେ, ତମେ କୋଉ ଭଲ ଲୋକଗୁଡ଼ାକ କି ?"

ସତ୍ୟସୁନ୍ଦର ତା'ର ସଂକ୍ଷିପ୍ତ ଭାଷଣ ଆରମ୍ଭ କଲା ।

ଭାଇମାନେ !

ମୁଁ ତମମାନଙ୍କ କଥା ସବୁ ଶୁଣିଲି । ସବୁରି କଥା ମୋ ମନକୁ ପାଇଲା । ତେବେ ମୋ କଥାଗୁଡ଼ାକ ତମକୁ ନ ଶୁଣାଇଲେ ଯାଏ ମନଟା ଭଲ ଲାଗିବନି !

"ସହରର ଆମ ଏଇ ବସ୍ତିଟା ନାହିଁକି କ୍ୟାପିଟାଲ୍‌ରେ ଯେତେ ବସ୍ତି ଅଛି, ସବୁଗୁଡ଼ାକ ଏ ସହରଟାର ସୌନ୍ଦର୍ଯ୍ୟ ନଷ୍ଟ କରୁଛି । ଦେଶ ବିଦେଶର ଲୋକେ ଆସିଲେ ନାକ ଟେକୁଛନ୍ତି, ଆମ ରାଜ୍ୟର ବଡ଼ପଣିଆ କମିଯାଉଛି, ଯୋଉ ସହରଟା ଅମର ମାନ୍, ଆମ ରାଜାର ମଉଡ଼ମଣି, ଅମ ଜାତିର ପୁରାଣ, ପୋଥି, ତାକୁ ଯଦି ଆମରି ଭଳିଆ ବସ୍ତି କୁଢ଼ିଆ ନଷ୍ଟ କରିଦେଉଛି ତା' ହେଲେ ଏ ବସ୍ତି ଉପରେ ବୁଲ୍‌ଡୋଜର ଚଲେଇଦେବା ଉଚିତ୍ । ସରକାର ଏ ଯାଏ ନ ଭାଙ୍ଗି ସ୍ଥାକୁ ରଖିଚନ୍ତି କାହିଁକି, ବେଳ ସେତକ ଗଡ଼ିବ, ମୋହ ସେତକ ବଢ଼ିବ । ଗଛରୁ ପକ୍ଷୀବସାଗୁଡ଼ାକ ଭାଙ୍ଗିଦେଲେ ସେଗୁଡ଼ାକ କଚେର ମିଚେର କରି ଗଛ ଚାରିପାଖରେ ଆଗ ବୁଲିବେ, ତା' ପରେ ଯିଏ ଯୁଆଡ଼େ ଉଡ଼ିଯାଇ ନୂଆ ଗଛର ଆଶ୍ରା ଖୋଜିବେ, ଯିବେ କୁଆଡ଼େ ! ସରକାର କ'ଣ ଏତିକି କଥା ଭାବୁନି ! ଏଡ଼େ ବଡ଼ କାମଟେ କରିଦେବାକୁ ତା' ହାତ ଉଠୁନି, ନଜର ଦୋଷ କଥା ତ ପୁଣି ମନେହେଉଚି । ଯୋଉ ଇଞ୍ଜିନିଅର-ମାନଙ୍କୁ ନେଇ ଏଇ ସହରର ପ୍ଲାନ ତିଆରି ହେଲା, ସେଗୁଡ଼ାକ ବଡ଼ ଉପରମୁହାଁ, ତଳକୁ ତାଙ୍କର ଆଖି ବୋଧହୁଏ ପାଏନି । ସେମାନେ ଭାବିଥିଲେ ସ୍ୱର୍ଗରୁ ଲୋକ-ଗୁଡ଼ାକ ଓହ୍ଲାଇ ଆସି ଏଇ ସହରଟାକୁ ରାତାରାତି ଗଢ଼ିଦେବେ, ସକାଳ ହୋଇ-ବେଳକୁ ପୁଣି କେହି ନଥିବେ । ଏଡ଼େ ବଡ଼ ପଢ଼ୁଆ ଲୋକଗୁଡ଼ାଙ୍କର ବୁଦ୍ଧିର ଏତେ କମ୍ । ଶିଳ୍ପପୁରୀ ଗଢ଼ିବାର ପ୍ଲାନ କଲାବେଳେ ଶିଳ୍ପିପୁରୀର ପ୍ଲାନ ନ ହେଲା କାହିଁକି ?"

ଜଣେ କିଏ ସଭା ଭିତରୁ ଉଠି ଉତ୍ତେଜିତ କଣ୍ଠରେ କହିଲା···ପଢ଼ୁଆ ଲୋକ-ଗୁଡ଼ାଙ୍କର ବୁଦ୍ଧିର କୋଉଦିନ ଥିଲା ଯେ ଆଜି କମିଗଲା । ସେଗୁଡ଼ାକ ସବୁ ରକ୍ଷକ ପୁଣି ଭକ୍ଷକ । ବଳେଇ କୁଆ ଜନମକରି ତାଙ୍କ ବେକ ମୋଡ଼ି ଖାଇଲା ପରି ଏ-ଗୁଡ଼ାକ ଯୋଉ ନୀତି ନିୟମ ଗଢ଼ିଥାନ୍ତି, ତାରି ବେକ ମୋଡ଼ି ଖାଆନ୍ତି ।

ଆଉ ଜଣେ ଉଠିପଡ଼ି କହିଲା, ସନା ଭାଇ ଯାହା କହିଲା, ବିଲ୍‌କୁଲ୍ ଠିକ୍.. ଏଇ ଦେଖୁନା କାଲି ରାତିର ଘଟଣା, ପୁଲିସ ଇନସ୍‌ପେକ୍ଟର୍‌ଟା କି ହମ୍ବହମ୍ବା

ନ ହେଲା । ଆଗରୁ କେତେଥର ସିପେଇ ଦଳଙ୍କୁ ନେଇ ଆମ ବସ୍ତିକୁ ନ ଆସିଛ । ଆମକୁ କଣ ହରିଗଣ ହରକତ ନ କଲେ । କାଲି ଏକାଥରକେ ସବୁ ସୁଖା ହେଇଗଲା । ରାତିଅଧରେ ମଦ ଖାଇ ଘରେ ପଶିବା ଏତେ ବଡ଼ ଅଫିସରକୁ କ'ଣ ଶୋଭାପାଏ ? ହେଲେ ସାଇ ଟୋକାଏ ଠିକ୍ ପାନେ ଦେଇଛନ୍ତି । ପେଣ୍ଟ ସାର୍ଟ ଉତାରି ଦେଇ, ମୁହଁରେ କଳା ଚୂନ ଲଗେଇ ମୁଣ୍ଡରେ ଗଧଟୋପି ପିନ୍ଧେଇ ସାଇ ଗୁଲିପାଖ ବୁଲେଇଲେ, ଠିକ୍ ହେଇଛି ।

ହଁ ଠିକ୍ ହେଇଛି କ'ଣ, ସତ୍ୟ ସୁନ୍ଦର ଆରମ୍ଭକଲା । ସେ ରାଗ ରଖି ପୁଣି ତମମାନଙ୍କ ଉପରେ ପ୍ରତିଶୋଧ ନେବ, ଆଉରି ହଟହଟା କରିବ । ତା' ଗୁଣ ସିନା ପଦାରେ ପକେଇ ଦେଇଥିଲେ ହେଇଥାଆନ୍ତା; ଘରେ କବାଟ ବନ୍ଦ କରିଦେଇ ତାଠୁ ବଡ଼ ହାକିମକୁ ଡାକି ଆଣିଥାନ୍ତି । ସେ ତାକୁ ଘୁଷରେ ଡିସ୍‌ମିସ୍ କରି ଦେଇଥାନ୍ତା ।

ସତରେ ଶଶୁରାଇ, ଏ ରାଜ୍ୟରେ ପୁଣି ଦଣ୍ଡଭୟ ଅଛି ?, କି ଓ ଯିଏ ଯା' ହାତରେ ପଡ଼ି ଚଉଦପା । ଏ ମନ୍ତ୍ରୀଗୁଡ଼ାକ ବିଷୟରେ କାଗଜରେ ଦେଖୁନ କିମିତି ହଟହଟା କଥା ବାହାରୁଛି ସେଗୁଡ଼ାକ ବି ଏତେବଡ଼ଲୋକ, ତାଙ୍କର କ'ଣ ଘର ଲୁକ ନାହାନ୍ତି ! ତାଙ୍କୁ ଅଇଁଠା ପତର ଘୁଟିବାକୁ ଭଲ ଲାଗୁଛି କିମିତି ? ପଚୁ ଗନ୍ଧରା ମଦଗୁଡ଼ାକ ସୁଆଦ ଲାଗୁଛି କିମିତି ? ଅମୃତ ଭଳିଆ ଜିନିଷ କ'ଣ ସଂସାରରେ ନାହିଁ, ସେଗୁଡ଼ାକ ପିଇବା ଲାଗୁଛି କିମିତି ? ସେଇ ଲୋକଗୁଡ଼ାକ ପାଖରେ ଗନ୍ଧରିଆ ମାଳି ପାଣି ଜଳାଇ ଦେଲେ ଏକବାରକେ ସବୁ ସଫା, ଧର୍ମ କ'ଣ ଆଉ ଏ ସଂସାରରେ ଅଛି ? ଅଗକାଳର ରଜା ରାଜୁତି ଅତ୍ୟାଚାରରୁ ଆଜିର ଏଇ ନକଲି ରଜାଙ୍କ ଅତ୍ୟାଚାର ବଳିଗଲାଣି ।

ସତ୍ୟସୁନ୍ଦର ହସି ହସି କହିଲା, ସେ ଖବରଗୁଡ଼ାକ ପଢ଼ିଲେ ମୁଣ୍ଡ ତଳକୁ ହେଇଯାଉଛି । ବୁଝିବାକୁ ଗଲେ ଦୋଷଟା ତାଙ୍କର ନୁହେଁ, ଆମର । ଆମେ ଜାଣି ଜାଣି ସିମିତି ଲୋକଗୁଡ଼ାକୁ ଗାଦିକୁ ଆଣିଲେ କାହିଁକି ? ତାଙ୍କୁ କ'ଣ ତଡ଼ି ଦେବାର କ୍ଷମତା ଆମର ନାହିଁ ?

"ବେଳୁ ହୋଇଲେ ସାବଧାନ
ନଥାଏ ଦୁଃଖର କାରଣ ।"

ବୁଝିଲି-ଶଶୁରାଇ ! କଏ କା'ର ଭିତର ତୁମର କଥା ଜାଣୁଛି, ଏବକୁ ସିନା ବଡ଼ବଡ଼ିଆ ହେଇଗଲାକୁ ସମସ୍ତଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ୁଛି, ଲୋକେ ତାଙ୍କ

କାମଧାମ, ଚାଲିଚଳନ, ଆଚାର ବ୍ୟବହାର କଥା ଜାଣୁଛନ୍ତି । ଆଗରୁ ଜାଣିଲେ ବା ଲାଭ କ'ଣ ? ଡରେଇ, ଧମକେଇ, ଲୋଭ ଦେଖେଇ, ପଇସା ପତ୍ର ଦେଇ ଭୋଟ ନଉଛନ୍ତି । ଦେଖୁନ ତିନିଭାଗ ଲୋକ ଭୋଟ ଦବାକୁ ଯାଉଛନ୍ତି ? ଲୋକଙ୍କର ଆଉ ବିଶ୍ୱାସ ନାହିଁ

ଜଣେ ବୁଢ଼ା ଲୋକ ଉଠିପଡ଼ି କହିଲେ—ରାଜନୀତି କଥାରୁ ଆମକୁ କ'ଣ ମିଳିବ । କୁହ ଆମ ବସ୍ତିର ଉନ୍ନତି ପାଇଁ, ପିଲାମାନଙ୍କ ଉନ୍ନତି ପାଇଁ କ'ଣ କରିବା । ସେ ଭୋଟ ଫୋଟରୁ ଆମକୁ ମିଳିବ କ'ଣ ?

ଠିକ୍ କହିଲ ଅଜା, ଠିକ୍ କହିଲ । ଆମକୁ ସେଥିରୁ ମିଳିବ କ'ଣ ? ପାଟିରୁ କଥା ଫିଟିଲେ ପାଣି ଭଳିଆ ବହିଯାଏ ବୋଲି ତାକୁ ରୋକିବା ନା ? ମୁଁ ଏ ସଭାରେ ଦାବି କରୁଛି ଯେ ସରକାର ଆମ ବସ୍ତି ଚାରିପାଖରେ ଗୋଟାଏ ପାଚେରି ଘେରେଇ ଦେଉ, ବାହାର ଲୋକଙ୍କ ଦୃଷ୍ଟି କୁଡ଼ିଆ ଘର ଉପରେ ପଡ଼ିବନି, ସହରର ସୌନ୍ଦର୍ଯ୍ୟ କମିବନି । ଯେଉଁ ଲୋକଗୁଡ଼ାକ ବସ୍ତି ଭିତରେ ପଶି ଉପଦ୍ରବ କରୁଛନ୍ତି, ସେ ଗୁଡ଼ାକ ସାବାଡ଼ ହୋଇଯିବେ । ଯାହା ସବୁ ଅପକର୍ମ ଚାଲିଛି, ଧରାପଡ଼ିଯିବ ।

ଆଉ ଜଣେ କହିଲା ବସ୍ତି ଲୋକେ ଏଣେତେଣେ ଝାଡ଼ା ଫେରୁଛନ୍ତି ବୋଲି ରାସ୍ତା ନର୍ଦ୍ଦମା ଅପରିଷ୍କାର ହଉଛି । ବାବୁମାନେ ଅଫିସରେ ବସିଲେ ନାକ ଫାଟି ଯାଉଛି, କାମ କରି ପାରୁନାହାନ୍ତି । ଲୋକ ସାଧାରଣଙ୍କ କାମ ଖରାପ ହେଉଛି । ସରକାର ବସ୍ତି ଭିତରେ ଦି'ଇଟା ଫ୍ଲାସ୍ ପାଇଖାନା ତିଆରି କରିଦେଉ । ଗୋଟେ ପୁରୁଷଙ୍କ ପାଇଁ ଆରଟା ମାଇଲୋଙ୍କ ପାଇଁ । ତା' ହେଲେ ରୋଗପୋକ ଆଉ ମଇଳା ହବନି ।

ଆଉ ଜଣେ ଠିଆହୋଇ କହିଲା—ଆମର ଏଇ ବସ୍ତି ପାଇଁ ଗୋଟାଏ କାରଖାନା ବସୁ । ଆମ ପିଲାଏ ଏଇଠେ ନୂଆ ନୂଆ କାମ ଶିଖନ୍ତୁ । ମାଟିରପ ଜାନ୍ତୁ, କାଠକାମ, ଲୁହାକାମ, ରଙ୍ଗକାମ, ସାଇକେଲ ଫିଟିଂ କାମ, ପ୍ଲେଟିଂକାମ ଇମିତି ଆଉ ଯାହା ଯାହା କାମ ଅଛି । ନୂଆ ଧରଣର ଶ୍ରେଷ୍ଠ ଶ୍ରେଷ୍ଠ ବର୍ଦ୍ଧିତ ଯନ୍ତ୍ରପାତି ବାହାରିଲାଣି, ସରକାର ତାର ନମୁନା ଏଠାରେ ରଖନ୍ତୁ ଓ ତାକୁ କାମରେ ଲଗେଇଲେ ମଣିଷର କଷ୍ଟ କିପରି କମିଯାଉଛି, ଅଳ୍ପ ସମୟରେ ବେଶି କାମ କେମିତି କରାଯାଇ ପାରୁଛି ଏ ସବୁ ବିଷୟରେ ପ୍ରତିଦିନ ନୂଆ ନୂଆ ଲୋକ ଆସି ଆମକୁ ନୂଆ ନୂଆ କଥା କହନ୍ତୁ । କେମିତି ସବୁ ନୂଆ ନୂଆ ଯନ୍ତ୍ରପାତି ବ୍ୟବହାର କରି ମଣିଷ

ଅଧିକ ଉପାର୍ଜନ କରୁଛନ୍ତି ସେ ସବୁ ସିନେମାରେ ଅଫିକୁ ଦେଖାଯାଉ । ଆମକୁ ସେ ଲଙ୍ଗଳା ସିନେମା ଦରକାରନାହିଁ, ଦାମୁଡ଼ା କୁମୁଡ଼ା, ଗୋଡ଼ିଆ ତଡ଼ିଆ, ସେଇ ବଡ଼ ଲୋକଅମାନେ ଦେଖନ୍ତୁ । ଆମ ଝିଅ ବୋହୂଙ୍କ [illegible] ମଦ ବୋତଲେ ଯୂରାଇ ପିଇବାକୁ ଆମେ ଦବାନି ।

ହୁଁ...ହୁଁ ଠିକ୍ କହିଲ, ଠିକ୍ କହିଲ ସନାଭାଇ, ଏ ସାଇରୁ ମଦଭାଟି, ଜୁଆ ଆଡ୍ଡା ଜବତ୍ କରାଯାଉ । ଏ ସାଇଟା ଅଉ ମଣିଷ ବସ୍ତି ହୋଇନାହିଁ, ନର୍କପୁରୀ ପାଲଟି ଗଲାଣି । ଗଞ୍ଜେଇ, ଭାଙ୍ଗ, ଚାଲମଟଣା କୋଉ କଥା ନାହିଁ । ସରକାର ଏ ନର୍କପୁରୀକୁ ଭାଙ୍ଗିଦେଲେ ଷଡ଼ ନ'ଣ; ତମେ ସବୁ ତେଣିକି ରାସ୍ତା କଡ଼ରେ ମର କି ସଡ଼ କାର କ'ଣ ଯାଉଚ । ଏଇ ସାଇଟାରେ ଚୋର, ଡକାୟତ, ପକେଟମାରୁ ଯେତେ ସବୁ ଖରାପ କାମ ଚାଲିଚି । ଆପଣା ଘୁନା ତ ଦେଖନ୍ତି, ବଣିଆ ସାଥେ ଚୁଟି ଧରା ଧରି ହେଲେ ଲାଜ କ'ଣ ! ଏଇ ସଭାରେ ନିୟମ କର, ଯିଏ ଗଞ୍ଜାମଦ, ଚାଲମଟଣା, ଜୁଆରେ ଜୁଟିବ ତାକୁ ଦେଖିଲକ୍ଷଣି ପାଞ୍ଚଟଙ୍କା ଜୋରିମାନା ହେଉ । ତେଣିକି ଟଙ୍କାଏ ଟଙ୍କାଏ ବଢୁ । ଯିଏ ସାଇରେ ବିକ୍ରି କରୁଛି ତାକୁ ବାସନ୍ଦ କରାଯାଉ ।

ସମସ୍ତେ ଏକସ୍ୱରରେ ହଁବୋଲି ଘୋଷିଲେ । କଥାଟା ସର୍ବସ୍ୱରରେ ଗ୍ରହଣ କରାଗଲା ।

ଏତିକିବେଳେ ଜଣେ ବୁଢ଼ୀ ଆସି କହିଲା, ଆରେ ପୁଏ ତମେ ସବୁ ଯୋଉ ସଭାକରୁଚ ଖାଲି ତମର ପାଇଁ ନା ତିରିଲୋକମାନଙ୍କର ଏଥିରେ କିଛି ଲାଗିଅଛି ? ଦି'ହାତ ନ ହେଲେ କୋଉ କାମ ହଉଚି । କେବଳ ହାତଟା ମଇଳା ହେଉଚି ବୋଲି ତାକୁ ଛାଡ଼ିଦବା, ସମ୍ଭବଦାନି । ଆଚ୍ଛା, ଯେତେ ଯାହା ନିୟମ କରୁଚ ତିରିଲୋକଙ୍କ ଉପକାର ପାଇଁ ତ କାଇଁ କିଛି କରୁନ ।

"ଯା'ର ନାହିଁ କଂସା ତା'ର ପଥର ଖଣ୍ଡେ ସବୁ
ଯା'ର ନାହିଁ ପୁଅ ସେ ଝିଅକୁ ବୋଲେ ବାବୁ ।"

ଝିଅଙ୍କ ଉନ୍ନତି ପାଇଁ ତ କିଛି କରିବନି, ସେମାନେ ତ ମରଦଙ୍କ ସାଥିରେ କାନ୍ଧକୁ କାନ୍ଧ ମିଶେଇ ମଇଲା ଟେକିବେ, ମାଟି ଟେକିବେ, ପଥର ବୋହିବେ, ବାଲି ବୋହିବେ । କଣ୍ଟ୍ରାକ୍ଟର, ପେଟିଦାର, ଜମାଦାର ବାବୁଭାୟା ହାକିମ ହୁକୁମାଙ୍କ ପାଖରେ ଲେସିହୋଇ କାମଧାମ କରିବେ ତେଣିକି ଛୁଆଁ ଛୁଇଁରୁ ଯଦି ମୁହାଁମୁହିଁ

କେତେବେଳେ ହୋଇଗଲେ ମା ବାପା କ'ଣ କରିବେ । ଗରିବ ଘରେ ଝିଅଟା ତାର ପୁଅ । ଯଦି ପାରୁଛ ନିୟମ କରନ୍ତୁ, ଝିଅ ପିଲାଏ ଝିଅକାମ କରିବେ । ସ୍କୁଲରେ ଝିଅ ପିଲାଙ୍କ ପାଇଁ ନାନା ବେଉସାର କାମ ଶିଖାଉନ ସେମାନେ ଘରେ ବସି ଦିନକୁ ପାଞ୍ଚସାତ ଟଙ୍କା ପାଆନ୍ତୁ । ତମ ସାଥିରେ ଆଉ ବାହାରକୁ ଯିବେନି କି ଏତେ ହଟହଟା କଥା ଶୁଣିବେନି । ଆମ ସାଇର ଝିଅ ବୋହୂଙ୍କୁ ତମେ ଇମିତ ଶିକ୍ଷା ପାଇଲ । ଏ ସଭାଟାରେ ତାଙ୍କ ଇଜ୍ଜତ୍ ତ ଧୂଳିସାତ୍ କରି ରଖିନ ନଜେ ବାପଭାଇ, ଭଉଣୀ, ମଉସା ପିଉସା ହୋଇ, ବଡ଼ଲୋକଙ୍କୁ ଖାଲି ଦୋଷ ଦଉଚ କ'ଣ । ଝିଅ ବୋହୂଙ୍କ ରାଇଜ ହଉଚି ଘର, ତମ ପୁରୁଷପୁଅଙ୍କ ରାଇଜ ବାହାର, ତମେ ସବୁ ବଢ଼ିଲା ଝିଅ ବୋହୂଙ୍କୁ ବାହାରକୁ କାଢ଼ୁଚ କାହିଁକି ? ତମେ କ'ଣ ଲୁଚିଛ ହେଉଚ ଯେ ମସଲା ଫେଣ୍ଟି ପାରିବନି, ବାଲି ଟପିସ୍ ଭର୍ତ୍ତି କରି ପାରିବନି । ଘରେ ନିସ୍ତମକର କାଳଠୁ ବସ୍ତିର ଝିଅ ବୋହୂ କାହାର କାମକୁ ଯିବେନି ବସି ଠୁଙ୍ଗା ତିଆରି କରନ୍ତୁ, ଖେଳନା ଗଢ଼ନ୍ତୁ, ସିଲେଇ ଶିଖନ୍ତୁ, ପତର ଖଲି, ଚଉପଦ ତିଆରି କରନ୍ତୁ, ରଙ୍ଗ ଦିଅନ୍ତୁ, ମସଲା ତିଆରି କରନ୍ତୁ, ନାନା ପ୍ରକାରର ଫାନ୍ଦ ଜିନିଷ କରି ପେଟ ପୋଷନ୍ତୁ । ସରକାରଙ୍କୁ ଜଣାଅ ଝିଅମାନଙ୍କୁ କାମଧନ୍ଦା ଯୋଗାଇ ଦେବାକୁ ଆମ ବସ୍ତିରେ କିଛି ନୂଆ ନୂଆ କାରିଗରି ଶିଖାଯାଉ । ଦେଖିବା ସବୁ ଠିକ୍ ହବ କି ନାହିଁ ।

ସମସ୍ତେ ଆନନ୍ଦରେ ହରିବୋଲ ଦେଲେ, ସ୍ତ୍ରୀଲୋକମାନେ ତା ସାଥିରେ ହୁଳହୁଳି ପକାଇ ନଅମହଲା କୋଠାକୁ ହଲଚଲ କରିଦେଲେ ।

ସତ୍ୟସୁନ୍ଦର କହିଲା, ଏଦା ଆଉଙ୍କ କଥା ବିଲକୁଲ୍ ଠିକ୍ । ଆମେ ଗଛ ଅଗରେ ପାଣି ଦଉଚେ ଯାହା ମୂଳଯାଏ ପାଉନି କି ଯାଉନି । ମୂଳରେ ଯିନା ପାଣି ଦେଲେ ତାହା ବଞ୍ଚନ୍ତା । ଆଗ ସ୍ତ୍ରୀ ଲୋକଙ୍କ କଥା ବୁଝିବା ଦରକାର । ସେମାନେ ପାଠ ପଢ଼ି ନାନା କାମଧନ୍ଦା ଶିଖିଲେ ଏସବୁ ଖାନମାନିଆ କାମ ଆପେ ଆପେ ବନ୍ଦ ହୋଇଯିବ, ପିଲାଏ ପାଠଆଡ଼କୁ ମନ ଦେବେ । ପାଠଶାଠ, ଦଇଟା ତ ବାଟ । ଯିଏ ଯୋଉ ବାଟେ ପାରୁଛ ଯାଉ ।

ଜଣେ ବଡ଼ ମୁଖର ଲୋକ ଥିଲା । ଉଠିପଡ଼ି କହିଲା, ଭାଇମାନେ ଆଜି ସଭାରେ ସ୍ଥିର ହେଲା "ପ୍ରକୃତ ଯାର ଅଛି ମନ,
ତାହାକୁ କରିବା ବାପଧନ ।"
ତେବେ ସଭାପତି ମହାଶୟ ନିଜ କଥା ସମ୍ଭାଳନ୍ତୁ । ସେ ଆଦର୍ଶ କଥା କହନ୍ତୁ ଆଦର୍ଶ ଦେଖାଇଲେ ସବୁ ଠିକ୍ ହୋଇଯିବ ।

ସତ୍ୟସୁନ୍ଦର ନିଜ ଆସନରୁ ଉଠିଯାଇ ସତ୍ୟପୀରଙ୍କ ମୁଣ୍ଡଛୁଇଁ ନମସ୍କାରକଲା, ମୁଁ ଆଜିଠାରୁ ଠିକ୍ ବାଟରେ ଚାଲିବି, ନହେଲେ ଗାଁ ଛାଡ଼ିଦେବି । ତମେ ସବୁ ଆସ, ନମସ୍କାର କର, ଆଜି ଯାହା ଏଠାରେ ଠିକ୍ କରାଗଲା ସମସ୍ତେ ମାନିବ ନହେଲେ ବସ୍ତି ଛାଡ଼ିବ । ମାନିଲେ ବସ୍ତି ସରଗ ପାଲଟିଯିବ, ନମାନିଲେ ସରକାର ଭାଙ୍ଗିବା ଆଗରୁ ଏ ବସ୍ତି ଭାଙ୍ଗି ଯାଇଥିବ ।”

ହୁଲହୁଲି ହରିବୋଲ ଶବ୍ଦରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠିଲା ।

---

## ୬

ସମରେନ୍ଦ୍ର ଖୁବ୍ ଅନ୍ୟମନସ୍କ ଭାବରେ ସାଇକେଲରେ ଘରକୁ ଫେରୁଛନ୍ତି । ସକାଳ ଛଅଟାରେ ଘରୁ ବାହାରିଥିଲେ । ଛଅ କିଲୋମିଟର ଆସିବାପରେ ନୂଆ ଘର । ମଝିରେ ଫେରିଯିବାର ସୁବିଧା ନାହିଁ । ସବୁ ଯୋଗାଡ଼ କରି ମିସ୍ତ୍ରୀ ମୂଲିଆ ମାନଙ୍କୁ କାମରେ ଲଗାଇଦେଇ ଦଶଟାବେଳେ ଅଫିସରେ ପହଞ୍ଚିବା ଦରକାର, ନହେଲେ ହକ ପଡ଼ିଯିବ, ନାନା କଇଫିଏତ ଦେବାକୁ ହେବ । ଖାଇବାଟା ହୋଟେଲରେ ହୁଏ, ତା'ପରେ ଅଫିସ କାମସାରି ପାଞ୍ଚଟାବେଳକୁ ପୁଣି ନୂଆ ଘର ପାଖକୁ ଆସିବାକୁ ପଡ଼େ । ସନ୍ଧ୍ୟାବେଳକୁ କୁଲି ମୂଲିଆମାନଙ୍କର ପେମେଣ୍ଟ । ସଞ୍ଜ ପରେ ଆଉ ଦ'ତିନି ଘଣ୍ଟା ରହିବାକୁ ହୁଏ, ନହେଲେ ଚୋରିର ସମ୍ଭାବନା ଅଧିକ । ସେ ପ୍ରାୟ ସାଢ଼େ ନଅଟା ବେଳକୁ ଫେରନ୍ତି ଓ ଘରେ ପହଞ୍ଚିଲା ବେଳକୁ ରାତି ଦଶଟା ।

ସେଦିନ ଅନ୍ୟମନସ୍କ ଭାବରେ ଫେରୁଛନ୍ତି । ସାରା ଦେହରେ କ୍ଲାନ୍ତିର କୁହୁଡ଼ି । ମନରେ ନାନା ଦୁର୍ଭାବନାର ବୁଢ଼ିଆଣୀ ଜାଲ । ଏତେ ଅସୁବିଧା ହଇରାଣ ହରକତ ଭିତରେ ତାଙ୍କୁ ଗତି କରିବାକୁ ପଡୁଛି ଯେ ସେ ଅନୁଭବ କରୁଛନ୍ତି, ଘରଟି ଶେଷ ହେଲାବେଳକୁ ହୁଏତ ସେ ଆଉ ଗୋଟିଏ ମଣିଷ ପାଲଟି ଯାଇଥିବେ; କିମ୍ବା ତାଙ୍କ ତାରୁଣ୍ୟର ସବୁଜପତ୍ରଗୁଡ଼ିକ ଝଡ଼ି ପଡ଼ି ଶୁଖା ଗଛଟିଏ ସେ ପାଲଟି ଯାଇଥିବେ ।

ସାଇକେଲ ଧିମେଇ ଧିମେଇ ଚାଲିଥାଏ । ମନରେ ଅସରନ୍ତି ଘଟଣାର ଧୂମ ପଟଳ । ଆଖି ଆଗରେ ନାଚି ଉଠିଲା ସେଇ ବଙ୍ଗାଳି ଭଦ୍ରବ୍ୟକ୍ତିଙ୍କ ଜୀବନର କରୁଣଚିତ୍ର । କଲିକତାରେ ତାଙ୍କର ଅଜସ୍ର କୋଠାବାଡ଼ି । ଅନ୍ତିମ ଇଚ୍ଛାର ପରିପୂରଣ ପାଇଁ ସେ ଭୁବନେଶ୍ୱରକୁ ଜୀବନର ଶାନ୍ତିପୀଠ ଭାବରେ ବାଛି ନେଇଥିଲେ । ଏଇଠାରେ ଘରଟିଏ କରିବେ, ଜୀବନର ଶେଷ ନିଃଶ୍ୱାସ ଏଇ ଲିଙ୍ଗରାଜଙ୍କ ପବିତ୍ର ପୀଠରେ ତ୍ୟାଗ କରିବେ । ମନ୍ଦିରଠାରୁ ଅନତି ଦୂରରେ ନିର୍ମିତ ହେଲା ଏକ ସୁରମ୍ୟ ଅଟ୍ଟାଳିକା । ଖୁବ୍ ଚମତ୍କାର, ଅତୀବ ଆକର୍ଷଣୀୟ । ସପରିବାର କଲିକତାର କୋଳାହଳମୟ ଜୀବନରୁ ବିଦାୟ ନେଇ ଶାନ୍ତ ଭୂମିକୁ ଆସିଲେ ବିପୁଳ ଆଡ଼ମ୍ବର ଓ ଜାକଜମକ

ଭିତରେ । ନବନିର୍ମିତ ପ୍ରାସାଦର ପ୍ରତିଷ୍ଠା କରାଗଲା । କୁଲି, ମୂଲିଆ, ମିସ୍ତ୍ରୀ ସମସ୍ତେ ନୂଆ ପୋଷାକ ପାଇଛନ୍ତି । ବାବୁ ସମସ୍ତଙ୍କୁ ତାଙ୍କ ଘର ସାମନାରେ ଛିଡ଼ା କରାଇଲେ । ଗୋଟିଏ ପାଖରେ ତାଙ୍କର ପରିବାରବର୍ଗ. ଆଉ ଗୋଟିଏ ପାଖରେ ମିସ୍ତ୍ରୀ, ମୂଲିଆ, ରେଜାମାନେ, ମଝିରେ ନବବସ୍ତ୍ରରେ ସୁସଜ୍ଜିତ ହୋଇ ବାବୁ ଓ ବାବୁଆଣୀ, ସେମାନଙ୍କ ସାମନାରେ ପଟକ । ଫଟୋବାଲା ସେମାନଙ୍କୁ ସୁନ୍ଦର ଭାବରେ ସଜାଇ ଠିଆ କରାଇଲା । ମିସ୍ତ୍ରୀମାନଙ୍କ ହାତରେ କରଣି, ଗଜ, ଓଲମ; କୁଲିମାନଙ୍କ ହାତରେ ଫାଉଡ଼ା, ବେଲଚା । ଯେଉଁ ରେଜା ଜଣକେ ପ୍ରଥମ କଡ଼େଇ ମସଲା ପକାଇଥିଲା, ତା'ର ମୁଣ୍ଡରେ ସେଇ ଶୁଭକଡ଼େଇ । ଫଟୋ ଉଠାଗଲା । ସମସ୍ତଙ୍କ ମୁହଁରେ ହସର ଜୁଆର । ବାବୁ ସମସ୍ତଙ୍କୁ ଖୁସି କରେଇଛନ୍ତି । ପ୍ରତିଷ୍ଠା ପର୍ବ ସରିଗଲା । ସେ ମୁଆଡ଼େ ବିଦାୟ ନେଲେ ।

ବଙ୍ଗାଳୀ ଭଦ୍ରବ୍ୟକ୍ତି ବାରଣ୍ଡାରେ ବସିଛନ୍ତି ଗୋଟିଏ ଆରାମ ଚେୟାରରେ । ଆଖି ଆଗରେ ମନ୍ଦିରର ନେତ ଫର ଫର ହୋଇ ଉଡ଼ୁଛି । ଝୁଲୁଝୁଲିଆ ପବନ ଦେହ ଆଉ ମନରେ ଉତ୍ତେଜନା ଭରିଦେଉଛି । ଧୂପଚର୍ଚ୍ଚିତ ପବନର ପ୍ରଲେପ ତାଙ୍କୁ ଅପୂର୍ବ ଆନନ୍ଦରେ ଅଭିଭୂତ କରୁଛି । ପ୍ରଭୁ ଲିଙ୍ଗରାଜଙ୍କର ଅସୀମ କରୁଣା ଜୀବନର ସବୁଜ ସ୍ୱପ୍ନ ବାସ୍ତବତାର ଆଲେଖ୍ୟ ନେଇ ଆହୁରି ସବୁଜାଭ ହୋଇ ଉଠିଛି । ଆଃ ମଣିଷ ଜୀବନ ଏତେ ମାଦକଭରା ହୋଇପାରେ । ତନ୍ମୟତାର କି ତରୁଣ ରୂପ ରାଗ ।

ଆଖି ପିଛୁଳାକେ କି ପ୍ରଳୟ ! କି ସର୍ବନାଶୀ ଧ୍ୱଂସ ଲୀଳା । ମେଘମୁକ୍ତ ଆକାଶରୁ ହଠାତ୍ ଏକ ବଜ୍ରପାତ ହୋଇଛି । ସେଇ ସୁରମ୍ୟ ଅଟ୍ଟାଳିକାର ଏକ ଅଂଶ ଚୂର୍ଣ୍ଣୀଭୂତ ଓ ଅନ୍ୟ ଅଂଶଗୁଡ଼ିକ ବିଦୀର୍ଣ୍ଣପ୍ରାୟ । ନିକଟରେ ଥିବା ଅମୃତଗଛଟାରେ ଅଗ୍ନିର ଉତ୍ପାତ । ଘର ଭିତରେ ଥିବା ଜିନିଷ ପତ୍ରରେ ଅଗ୍ନି ସଂଯୋଗ ହୋଇଛି । କାତର କାନ୍ଦଣା ତୋଳି କିଏ କୁଆଡେ ଦଉଡ଼ୁଛନ୍ତି । ଏକମାତ୍ର ସନ୍ତାନ 'ଦୁଲାଲ' ଭଗ୍ନସ୍ତୂପ ମଧ୍ୟରେ ସମାଧି ନେଇଛି । ତା'ର ଆର୍ତ୍ତ ଚିତ୍କାର କାହାକୁ ଶୁଣାଯାଉନି ।

ଗଛଟା ବିଲକୁଲ କଳାପଡ଼ି ଯାଇଛି . . ଏକ ଥୁଣ୍ଟା ଅର୍ଦ୍ଧଦଗ୍ଧ ଝଣ୍ଡା କେବଳ ଛିଡ଼ାହୋଇଛି । ଭଦ୍ରବ୍ୟକ୍ତି ମୂର୍ଚ୍ଛିତ ହୋଇ ବାରଣ୍ଡାରେ ଗଡ଼ିପଡ଼ିଛନ୍ତି । ଭଗ୍ନମହଲା ଚୂନାଆଡ଼କୁ ଚାହିଁଛନ୍ତି; ଅଥଚ କିଛି ପ୍ରକାଶ କରିପାରୁନାହାନ୍ତି । ତାଙ୍କର ମସ୍ତିଷ୍କ କିଛି କାମ କରୁନି, ସେ ଦାରୁଭୂତ ମୂରତି ପରି କେବଳ ଚାହିଁଛନ୍ତି । ଆଖିରୁ ଆପେ ଆପେ ଧାର ଧାର ଲୁହ ଗଡ଼ିଆସୁଛି । ବୋଧହୁଏ ଶରୀରର ଶିରା ପ୍ରଶିରାକୁ ଟିକ୍ ଟିକ୍ କରି ବାହାରି ଆସୁଥିବା ଯନ୍ତ୍ରଣା କଣ୍ଟୁଇ କରୁଛି, ତେଣୁ

ମଝିରେ ମଝିରେ ଏକ ବିକଟାଳ ଶବ୍ଦ ଗଳାରନ୍ଧ୍ରରେ ସୃଷ୍ଟି ହୋଇ ସାରା ଶରୀରକୁ ଦୋହଲାଇ ଦେଉଛି ।

ଆକାଶ ଖୁବ୍ ନିର୍ମଳ, ଖୁବ୍ ଶାନ୍ତ । ଗୋଟିଏ ଚଗଲା ପିଲା ତୁଳାକୁଢ଼ରେ ଅଗ୍ନି ସଂଯୋଗ କରି ଯେପରି ଶାନ୍ତଶିଷ୍ଟ ହୋଇ ବସିଥାଏ, ଆକାଶ ସେଇପରି ଶାନ୍ତ ଅଥଚ ଆଖିରେ ଉପହାସର ଚାହାଣି । ଗୁଣ୍ଡାଆଡ଼େ ବିଜୁଳି ବେଗରେ ଖବର ପ୍ରଚାରିତ ହୋଇଗଲା । ବସ୍ତିର ଲୋକମାନେ ଆସି ସେହି ଦୁର୍ଗତ ପରିବାରକୁ ସାହାଯ୍ୟ କରନ୍ତି । ଭଗ୍ନସ୍ତୂପ ମଧ୍ୟରୁ ମୃତ ଶିଶୁଟିକୁ ଉଦ୍ଧାର କରାଗଲା । ତାର ଶବ ସତ୍କାର ହେଲା ।

ତା'ପରଦିନ ନଗର ସଜ୍ଜା ଫେରିପାଇବା ପରେ ଦୁରାରୋଗ୍ୟପୀଡ଼ିତା ଅର୍ଦ୍ଧାଙ୍ଗିନୀ ପାଗଳିନୀ ସ୍ତ୍ରୀକୁ ନେଇ କଲିକତା ଫେରିଲେ । ସେ ବିଚାରା ତାଙ୍କର ବାର୍ଦ୍ଧକ୍ୟର ସମ୍ପୂର୍ଣ୍ଣରୂପେ ହରାଇଥିଲେ । ଶାନ୍ତି ଭୂମିରୁ ଅଶାନ୍ତିର ଅଗ୍ନିଦାହ ନେଇ ଫେରିଗଲେ । ଶାନ୍ତିର ତପୋଭୂମି ରୂପେ ଯେଉଁ ଘରଟିକୁ ସେ ନିର୍ମାଣ କରିଥିଲେ, ତାହାହିଁ ତାଙ୍କ ପାଇଁ କାଳସର୍ପରେ ପରିଣତ ହେଲା ।

ଆଜି ବି ସେହି ବିରାଟ ଅଟ୍ଟାଳିକା ଶତାବ୍ଦୀର ସୀମନ୍ତ ତୋଳି ସେଇଠାରେ ଛିଡ଼ା ହୋଇଛି । ସେହି ପ୍ରାସାଦର ମଙ୍ଗଳ ମଣ୍ଡିତ ଚଟାଣ ଉପରେ ବସ୍ତି ଲୋକମାନେ ମଳତ୍ୟାଗ କରୁଛନ୍ତି । ପବନ ଆଉ ପାଣିସ୍ରୋତ ଶୁଖିଲା ମଳକୁ ପରିଷ୍କାର କରୁଛି । ସେ ଘରଟିର ଉତ୍ତରାଧିକାରୀ ଭାବରେ ଦୀର୍ଘ ପଚିଶ ବର୍ଷ ହେଲା କେହି ଆସିନାହାନ୍ତି ।

ଆଖି ପିଛୁଳାକେ ସମରେନ୍ଦ୍ରଙ୍କ ଦୃଶ୍ୟପଟରୁ ସେ ଦୃଶ୍ୟ କୁଆଡ଼େ ଲିଭିଯାଇ ପୁଣି ଏକ ନୂତନ ଦୃଶ୍ୟ ସମ୍ଭାର ରୂପାୟିତ ହୋଇଛି ।

କ୍ଷେତ୍ରବାସୀ ମାଷ୍ଟ୍ରେ ଚାଲିଯାଇଛନ୍ତି । ତାଙ୍କର ବିଧବାପତ୍ନୀଙ୍କ କୋଳରେ ଛ' ମାସର ଗୋଟିଏ ଶିଶୁ ଏବଂ ଚାରିପାଖରେ ଆଉ ଅଠଟି ଶିଶୁର କରୁଣ ଚିତ୍କାର । ବିଚାରା କ୍ଷେତ୍ରବାସୀ ଥିଲେ କ୍ୟାପିଟାଲର ଜଣେ ଜଣାଶୁଣା ନାମଜାଦା ଶିକ୍ଷକ । ଅମଲା ଅଫିସରମାନଙ୍କର ଗୃହ ଶିକ୍ଷକ ଭାବରେ ତାଙ୍କର ଭାରି ସୁନାମ । ବହୁଛାତ୍ର ଆଜି ବଡ଼ ବଡ଼ ପଦବୀରେ ଅଛନ୍ତି । ସେ ନିଷ୍ଠାବାନ୍, ନୀତି ପରାୟଣ ଓ କର୍ମଠ । ଭଡ଼ାଘରେ ରହି ରହି ସାଂସାରିକ ଜୀବନ ବିତିଗଲା । ତାଙ୍କର ଜଣେ ଛାତ୍ର ଆଇ. ଏ. ଏସ୍. ଅଫିସର । ଗୁରୁପୂର୍ଣ୍ଣିମା ଦିନ ସେ ଗୁରୁ ଦର୍ଶନ କରିବାକୁ ଆସନ୍ତି । ସେଦିନ ସେ ଗୁରୁଦକ୍ଷିଣା ଦିଅନ୍ତି । କେଉଁ ବର୍ଷ ଧୋତି ପଞ୍ଜାବୀ, ଚଦର, କେଉଁ ବର୍ଷ ଛତା, ଯୋତା, କଲମ, ଆଉ କେଉଁ ବର୍ଷ ସାଇକେଲଟିଏ ! ସେ ବର୍ଷ ସେ ଆସିଥାନ୍ତି ଗୋଟିଏ ନୂତନ

ଉପହାର ନେଇ । ଗୋଟିଏ ପ୍ଲାଷ୍ଟିକ କାଗଜର ମୁଣି, ତା'ଭିତରେ ମୁଠାଏ ନାଲି ମାଟି, ଫୁଲ, ସିନ୍ଦୂର, ଚନ୍ଦନ, ବରକୋଳିପତ୍ର, ଅକ୍ଷତ ପ୍ରଭୃତି ସୁନ୍ଦର ଭାବରେ ପ୍ୟାକ କରାଯାଇଥାଏ । ସେ ଗୁରୁଙ୍କ ପାଦତଳେ ପ୍ରଣାମ କରି ଏହି ପ୍ୟାକେଟ୍‌ଟି ବଢ଼ାଇ ଦେଲେ । କ୍ଷେତ୍ରବାସୀବାବୁ ମହା ଆନନ୍ଦରେ ପ୍ୟାକେଟଟି ହାତରେ ଧରି କହିଲେ, "ମାଟି ଘେନିବାର ଦିନ ଖୁବ୍ ନିକଟ ହୋଇ ଆସିଲାଣିରେ ବାପା ! ଜୀବନରେ ମୋର ଗୋଟାଏ ଅଭିଳାଷ ଥିଲା, ତୋପରି ଏକ ପ୍ରିୟ ସନ୍ତାନ ହାତରୁ ଶେଷ ମୁହୂର୍ତ୍ତରେ ମାଟି ମୁଠେ ପାଆନ୍ତି କି । ଭଗବାନ ଡାକ ଶୁଣିଛନ୍ତି, ଡାକ ଜାଣିଲେ ସେ କାହା କଥା ନ ଶୁଣନ୍ତି ? ମୁଁ ତୋତେ ଆଶୀର୍ବାଦ ଦେଉଛି ।

ଆଇ. ଏ. ଏସ୍. ଅଫିସର ଆଖିର ଲୁହ ସମ୍ଭରଣ କରିନପାରି କୋହ କମ୍ପିତ କଣ୍ଠରେ କହିଲେ, 'ସାର୍, ଆଇ. ଏ. ଏସ୍. ପାଇବାପାଇଁ ମୁଁ ଯେ କେତେ ଅଯୋଗ୍ୟ ଏହା ଆଜି ପ୍ରମାଣିତ ହୋଇଗଲା । ମୋର ଦୂରଦୃଷ୍ଟିର ଅଭାବ । ଏ ଉପହାର ଆପଣଙ୍କ ମନମଧ୍ୟରେ କି ପ୍ରତିକ୍ରିୟା ସୃଷ୍ଟି କରିବ ତାହା ମୁଁ ଚିନ୍ତାକରି ପାରିଲିନାହିଁ । ଦାନପତ୍ରଟିକୁ ପ୍ରଥମେ ଦେଇଥିଲେ ବୋଧହୁଏ ଏ ପ୍ରକାର ବିଭ୍ରାଟ ହୋଇ-ନଥାନ୍ତା । ଆପଣ ସବୁଦିନେ ଭଡ଼ାଘରେ ରହୁଛନ୍ତି, ସେଥିପାଇଁ ବାପା ଆମ ଜାଗାରୁ ଗୋଟିଏ ଅଂଶ ଆପଣଙ୍କ ନାଁରେ ଦାନକରି ଦେଇଛନ୍ତି । ଆପଣ ଏ ଦାନପତ୍ର ଗ୍ରହଣ କରନ୍ତୁ । ପ୍ରାଥମିକ ଖର୍ଚ୍ଚ ତୁଲାଇବାପାଇଁ ହଜାର ଟଙ୍କା ଦୟାକରି ରଖନ୍ତୁ । ଘରଟିଏ ଯଥାଶୀଘ୍ର ଆରମ୍ଭ କରନ୍ତୁ । ପିଲାମାନେ ଭବିଷ୍ୟତ ଗଢ଼ିବେ ।

କ୍ଷେତ୍ରବାସୀବାବୁ ହସି ହସି କହିଲେ, "ମୁଁ ଠିକ୍ ବୁଝିଛି ତମର ମନକଥା । ଅଭିମନ୍ତ୍ରିତ ମାଟି ମୁଠାକ ଶୁଭଚିନ୍ତାର ସୂଚନା ଦେବାବ୍ୟତୀତ ଆଉ କିଛି ହୋଇ-ନପାରେ । ପ୍ରିୟ ସନ୍ତାନ ତାର ପିତାକୁ ମୃତ୍ୟୁର ନିମନ୍ତ୍ରଣପତ୍ର ଦେଇ ପାରେନା । ମାଟି ଘେନିବାପାଇଁ ମୋ ମନର ଯେଉଁ ବ୍ୟାକୁଳତା, ତାହା ମାଟିର ଦୃଶ୍ୟରେ ପ୍ରକାଶିତ ହୋଇଗଲା । ମନର ନିପିଛ କଥା ଗୁଡ଼ାକୁ ପ୍ରକାଶ କରିଦେଇ ତମ ମନରେ ଏତେ କଷ୍ଟ ଦେଲି ! ତମର ଗୁରୁ ହେବାପାଇଁ ମୁଁ ଯେ କେତେ ଅଯୋଗ୍ୟ ଆଜି ତାହା ମଧ୍ୟ ପ୍ରମାଣିତ ହୋଇଗଲା । କିଛି ମନେ କରିବନି, ବୟସ ଭାରରେ ମଣିଷର ଏ ପ୍ରକାର ସ୍ଖଳନ ହୁଏ ।

କ୍ଷେତ୍ରବାସୀ ବାବୁ ଘର ଆରମ୍ଭ କଲେ । ଛାତ ପଡ଼ିବା ଦିନ ତାଙ୍କୁ ସେଇ ମାଟିର ଡାକରା ପାଇ ଚାଲିଯିବାକୁ ହେଲା । ତାଙ୍କର ଦୁର୍ଗତ ପରିବାରକୁ ଆଜି ତାଙ୍କର ପ୍ରିୟ ଛାତ୍ରମାନେ ଚଳାଉଛନ୍ତି ।

ପୁଣି ଆଉ ଏକ ଦୃଶ୍ୟ । ସମରେନ୍ଦ୍ରଙ୍କର ସେଇ 'ପ୍ରିୟ ପାନ ଦୋକାନୀ 'ନେପାଳ' । ବନ୍ଧୁକଷ୍ଟରେ ତା ବାପା ଜ.ଗା ଖଣ୍ଡିଏ କିଣିଥିଲେ । ଶୁଭପକାଇଲା ଦିନ ଚରମ ଅଘଟଣ ସୃଷ୍ଟି ହୋଇଲା । ପୁରୋହିତଙ୍କ ପାଖରେ ବସି ହୋମ କରୁଥିବା ସମୟରେ ହଠାତ୍ କହିଲେ, "ଗ୍ରନ୍ଥ କ'ଣ ହୋଇଯାଉଛି ।" ଅଖି ପିଛୁଳାକେ ସେ ସେଠାରେ ଟଳି ପଡ଼ିଲେ । ସେ ଜ.ଗାଟି ଅ.ଜ ବି ପିମ୍ପିଧ ପଡ଼ିରହିଛି ।

ଆଖି ଆଗରେ ବହୁ ଅଣଭିଦୃଶ୍ୟ ଭାସି ଯାଉଛି । ଦୃଶ୍ୟର ଉପସ୍ଥିତି ସମୟରେ ସାଇକେଲ୍‌ର ବାଲାନସ୍ ଏପାଖ ସେପାଖ ହଉ ଦେଉଛି : ପଛପାଖରୁ ଗୋଟିଏ କା.ର୍ ଅ.ସି ହଠାତ୍ ବ୍ରେକ ଦେଲା । ସମରେନ୍ଦ୍ର ସାଇକେଲର୍ ଖସି ପଡ଼ିଲେ । କାର୍ ଭିତରୁ କଳା ମଚ୍ ମଚ୍ ଡ୍ରାଇଭରଟା ହାତରେ ବାଡ଼ି ଧରି ବାହାରି ଆସିଲା । ସମରେନ୍ଦ୍ର ଝାଡ଼ି ହୋଇ ଉଠିଲାବେଳକୁ ପଛପାଖରୁ କାଉରେ ପକାଇ କହିଲା, "ଶ.ଲା ବେକୁଫ୍, କ୍ୟା ମରେଗା ?" ସେ ହାମୁଡ଼ି ହୋଇ ପୁଣିଥରେ ଉଠିବାକୁ ଚେଷ୍ଟା କରୁ କରୁ କହିଲେ, ଭୁଲ ହେଇଗଲା, ବାଲାନସ୍ ରହିଲାନି ।

"କ୍ୟା ମାଲ୍ ପିଆ ହେ ?"

"ନା ଖରାଟାରେ ବୁଲି ବୁଲି ମୁଣ୍ଡ ବୁଲଉଛି, ବାଲାନସ୍ ରହିଲାନି ।" କାର୍ ଭିତରେ ଥିବା ଭଦ୍ରବ୍ୟକ୍ତି ଖୁବ୍ ନରମ ଗଳାରେ କହିଲେ, "କେଉଁ ଆଡ଼େ ?

ଯିବେ ?

"ଆଜ୍ଞା , ମନ୍ଦିର ପାଖକୁ ।"

ଆସୁନାହାନ୍ତି, ଗାଡ଼ିରେ ଆମସାଥିରେ ଚାଲିଯିବେ । ସାଇକେଲ ପଛପାଖରେ ରଖିଦିଅ ସରଦାର୍ ।"

"ଆଜ୍ଞା ଆପଣ ମନ୍ଦିରକୁ ଯାଉଛନ୍ତି ! ମନ୍ଦିରତ ବନ୍ଦ ହୋଇଯିବଣି, କାହିଁକି ଯିବେ ?"

"ମୋର ଆଉଜଣେ ଭଦ୍ରଲୋକଙ୍କ ପାଖରେ କାମଅଛି । ଟ୍ୟାକ୍ସି କରି ପରା ଦେଖି ପାଇଁ କଟକରୁ ଆସୁଛି ।"

"ଆପଣ କଟକରୁ ଯଦି ଆସୁଛନ୍ତି, ଏପାଟେ ଆସିଲେ କାହିଁକି ? ରସୁଲଗଡ଼ରୁ ସିଧା ଯାଇଥାନ୍ତେ, ସି. ଆର. ପି. ଅଡ଼େ ଆସିଲେ ଯେ ।"

"ଭୁଲରେ ଚାଲିଆସିଲି, ବନ୍ଧୁ ।"

ସମରେନ୍ଦ୍ର ଖୁବ୍ ସତର୍କତା ମଧ୍ୟରେ ଡ୍ରାଇଭରକୁ ଚାହିଁଲେ, ତା'ର ଦୁର୍ବ୍ୟବହାର ଓ ଆଖିର କ୍ରୂରତା ତାଙ୍କୁ ଉତ୍ତ୍ୟକ୍ତ କରିଥିଲା । ଭଦ୍ରବ୍ୟକ୍ତିଙ୍କର ମଧୁର ବ୍ୟବହାର ସହିତ ପରିସ୍ଥିତି ଖାପ ଖାଉନଥିବା ପରି ସେ ଅନୁଭବ କଲେ ।

"ଆଜ୍ଞା, କ୍ଷମା ଦେବେ, ଆପଣ ଯାଆନ୍ତୁ । ମୋର ବାହାରେ କାମ ଅଛି । ମୁଁ ମୋ ମିସ୍ତ୍ରୀ ପାଖରେ ଅଟକିବି, କାମଧାମ ବରାଦ କରି ତା'ପରେ ଯିବି । ଆପଣ ଅଯଥା ମୋ ଲାଗି ଅଟକିବେ କାହିଁକି ?"

ଭଦ୍ରବ୍ୟକ୍ତିଙ୍କର ଆଖିର ଇଙ୍ଗିତ ପାଇ ସେଇ ଦୁର୍ଦ୍ଦାନ୍ତ ଡ୍ରାଇଭରଟା ମୋ ପାଖକୁ ଘଷିଆସି କାନ ପାଖରେ ରୁକ୍ଷ କର୍କଶ ଚାପା ସ୍ୱରରେ କହିଲା, "ହବେ ଶାଲା, ପକେଟ୍ ମେ କ୍ୟା ହୈ ନିକାଲୋ, ଗୋଲମାଲ୍ କରେଗା ତୋ ଜାନ୍ ଲେ ଲୁଙ୍ଗା ।" ଟିକ୍ ଟିକ୍ ଛୁରୀଟା ବାହାର କରି ଆଣି ବେକ ପାଖରେ ଲଗାଇଦେଲା । ସମରେନ୍ଦ୍ର ବିନା ପ୍ରତିବାଦରେ ପକେଟରୁ ଶହେଟଙ୍କିଆ ନୋଟଟି ବାହାର କରି ହାତକୁ ବଢ଼ାଇ ଦେଲେ ।

"ଓ୍ୱାଚ ଦେ ଦୋ ।"

ବହି ଲେଖାରୁ ରଏଲଟି ରୂପେ ପାଇଥିବା ଟଙ୍କାରେ ସେ କୋଡ଼ିଏ ବର୍ଷ ତଳେ କିଣିଥିବା ସ୍ମୃତି ତଥା ଶ୍ରଦ୍ଧା ସିକ୍ତ ଘଡ଼ିଟିକୁ ହାତରୁ ବାହାର କରି ତା ହାତକୁ ଦେଇଦେଲେ ।

"ଭେତର ପକେଟ ମେ ଔର କ୍ୟା ହୈ ?"

"ଆଜ୍ଞା, ମୋର ଭେତର ପକେଟ ନାହିଁ । ଏଇ ଦେଖନ୍ତୁ ନାହାନ୍ତି ।" ଡ୍ରାଇଭର ସାରା ଶରୀରରେ ହାତମାରି ସାର୍ଟ ପ୍ୟାଣ୍ଟ ସର୍ଚ୍ଚ କରିବା ପରେ ସମରେନ୍ଦ୍ରଙ୍କ କାନ ଧରି ଖୁବ୍ ଜୋରରେ ଥାପଡ଼ାଏ ଦେଇ କହିଲା, "ଶାଲା ବେକୁଫ୍ ଆଦମି, ଐସା ରାସ୍ତାମେ ଅକେଲା ମତ୍ ଯାଓ, ଜାନ୍ ନେହି ରହେଗା ।"

ସମରେନ୍ଦ୍ର କାନମୂଳ ଆଉଁସି କମ୍ପିତ କଣ୍ଠରେ କ'ଣ କହିବାକୁ ଆରମ୍ଭ କଲାବେଳେ ଗାଡ଼ି ହଠାତ୍ ଶବ୍ଦ କରି କ୍ଷିପ୍ରଗତିରେ ଆଗେଇଗଲା । ଗାଡ଼ିର ନମ୍ବର ଠିକ୍ ଥିଲା କି ନାହିଁ କେଜାଣି, କିନ୍ତୁ ସେ ତାହା ଟିପି ପାରିଲେନି । ଆଖି ଆଗରୁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ କାର୍‌ର ନାଲି ଆଲୁଅକୁ ସେ ସେଇପରି ଚାହିଁଥାନ୍ତି । ତା'ପରେ ଖୁବ ଅଗଭ ଏକ ଦୀର୍ଘ ନିଃଶ୍ୱାସ ସେ ପକାଇଲେ । କିଛି ବୁଝିପାରିଲେନି ଏତେ ଅଳ୍ପ ସମୟ ମଧ୍ୟରେ ଏତେଗୁଡ଼ାଏ ଘଟଣା କିପରି ଘଟିଗଲା । ସେ ନିରର୍ଥକ ଦୃଷ୍ଟିରେ ରାଜପଥର ଅନତିଦୂରରେ ଥିବା ବିଜୁଳିବତି ଆଡ଼କୁ ଚାହିଁରହିଲେ ।

ସତେ ଯେପରି ହାତଠାରି ଡାକୁଛି ତାଙ୍କୁ "ଶୀଘ୍ର ମୋ ପାଖକୁ ଚାଲିଆ, ମୁଁ ଆଶୀର୍ବାଦ ଦେବି । ଅଭୟ ଦେବି । ପଥପ୍ରଦର୍ଶକ ହେବି । ସେଇ ଅନ୍ଧକାର ରାସ୍ତା ଭିତରୁ ମୋ କୋଳକୁ ଚାଲିଆ । ଅନ୍ଧକାର ସମସ୍ତ ପାପର ଜନନୀ ।" ସମରେନ୍ଦ୍ର ତଳେ ପଡ଼ିଥିବା ସାଇକେଲଟି ଗୋଟାଇ ଦେହର ସମସ୍ତ ଶକ୍ତି ସଞ୍ଚୟ କରି ଆଲୋକିତ ରାଜପଥ ଆଡ଼କୁ ଆଗେଇ ଗଲେ ।

ଲୋକଟା ଡକାୟତ ବୋଧହୁଏ । ତଥାପି ତ ଚମତ୍କାର ଉପଦେଶଟିଏ ଦେଇ ଚାଲିଗଲା । ଏହି ନିର୍ଜନ ରାସ୍ତା ରାତିର ବିଳମ୍ବିତ ମୁହୂର୍ତ୍ତ ପାଇଁ ସତରେ ନିରାପଦ ନୁହେଁ । ଏତିକି କଥା ଶିଖିବା ପାଇଁ ଆଜି ତାଙ୍କୁ ମୂଲ୍ୟ ଦେବାକୁ ପଡ଼ିଲା । ନ ହେଲେ ଜୀବନ ଦେବାକୁ ପଡ଼ିଥାନ୍ତା ।

ପ୍ରଧାନ ରାସ୍ତାର ବତିଖମ୍ବଗୁଡ଼ିକରେ ଆଲୋକର ରୋଷଣୀ । ବ୍ୟଥା ଜର୍ଜରିତ ହତାଶ ମନରେ ଦମ୍ଭ ଦେଇଛି···ଆଶା ଓ ଆଶ୍ୱାସନା ଦେଇଛି । ସେ ବତିଖମ୍ବ ପାଖରେ ସାଇକେଲରୁ ଓହ୍ଲାଇ ଆଲୁଅରେ ସାରା ଶରୀରକୁ ଧୋଇନେଲେ । କାନମୂଳ ଆଉଁସି ଦେଲେ । ପ୍ୟାଣ୍ଟ ସାର୍ଟ ଝାଡ଼ିଦେଇ ଆଗକୁ ପଛକୁ ଦୃଷ୍ଟି ପାଇବା ପର୍ଯ୍ୟନ୍ତ ଅନାଇ ପୁଣି ସାଇକେଲ ଧରିଲେ । ଏଥର ଆଲୋକର ଆଶୀର୍ବାଦ ପାଇ ସାହସ ଟିକିଏ ବଢ଼ିଯାଇଛି ! ସାଇକେଲର ବେଗ ବଢ଼ିଛି । ତଥାପି ଭୟର ତରଙ୍ଗ ପ୍ରବାହ ଶିରା ପ୍ରଶିରାରୁ ପୂରା ମାତ୍ରାରେ ଲିଭିନାହିଁ ।

ସାଇକେଲ ଆଗକୁ ଗଡ଼ି ଚାଲିଛି । ପୁଣି ମନରେ ଦୁଃଶ୍ଚିନ୍ତାର ପଟୁଆର । ସେ ଭାବୁଛନ୍ତି ଘର ଏତିକିରେ ବନ୍ଦ କରିଦେବେ । ଅଉ ଅପେଇବେ ନ, ଯାହା କ୍ଷତି ହେବାର ଥିଲା, ହେଲା । ଆରମ୍ଭରୁ ଯଦି ଏତେ ଦୁଃଖ, ଘରଟି ଶେଷହେଲା ବେଳକୁ ଏ ଶରୀରରେ ବୋଧହୁଏ ପ୍ରାଣସତ୍ତା ନ ଥିବ । ସତରେ ଏ ସମାଜ କ'ଣ ହେଲାଣି । ମଣିଷ ଆଉ ମଣିଷ ହୋଇ ନାହିଁ, ଜାନୁଆର ପାଲଟି ଗଲାଣି । ରାସ୍ତା ମଝିରେ ବୁଲିବା ଲୋକର ମଧ୍ୟ ସାଧାରଣ ଲୋକଙ୍କ ଉପରେ ଏତେ କ୍ରୂର ଦୃଷ୍ଟି ।

ନିଜ ପ୍ରତି ଏକ ଅହେତୁକ ଅଭିମାନ ତାଙ୍କର ସୃଷ୍ଟି ହେଲା । ସେ ଭାବିଲେ, "ମୁଁ ବା କାହାର କ'ଣ ଦୋଷ କରୁଛି ଯେ ଲୋକମାନେ ମୋ ଉପରେ ଏତେ ରାଗ ସାଧୁଛନ୍ତି । ସେଦିନ ସମିତ ନଅଁ ଭିତରେ କିଏ ଆସି ଡାକ୍ତରଖାନାର ଶବଟାଏ ପକାଇଦେଇ ଚାଲିଗଲା । ଟିକିଏ ତାର ବିଚାର ହେଲାନି, ଲୋକଟା ଶୁଭରେ ଘର ଖଣ୍ଡେ କରିବାକୁ ଯାଉଛି, ମୁଁ ଏ ଅଶୁଭ କାମ କରିବିନି । ମଣିଷ ଧର୍ମ ଅଧର୍ମ ଆଉ ବିଚାର କରୁନି । କି ହଇରାଣ ହେବାକୁ ନ ପଡ଼ିଲା । ମହେନ୍ଦ୍ରର ଡାକ,

ସଫା ସୁତୁରା କରି, ରଙ୍ଗ ପାଣି ମରାଇ ଆଉଥରେ ପ୍ରତିଷ୍ଠା କରିବାକୁ ପ୍ରାୟ ଶହେ ଟଙ୍କା ଖର୍ଚ୍ଚ ହେଲା । ଆଉଦିନେ ମଲା ଗାଈଟାଏ କିଏ ଆଣି ପକାଇ ଦେଇଥିଲା ସେ କାମକୁ ଅସିଲିଟିବିଦିକୁ ଶାଗୁଣାଙ୍କର ସଭା ବସାଇଛି । ମିସ୍ତ୍ରୀ ମଜୁରିଆ ଫେରିଗଲେ, ପୁଣି ପଚିଶ ଟଙ୍କା ଖର୍ଚ୍ଚ କରି ତାକୁ ଉଠାଇଲେ । ଆଉଦିନେ ମଲା କୁକୁରଟାଏ କିଏ ଆଣି ପକାଇଥିଲା ସେ ନିଜେ ତାହା ଉଠାଇବାକୁ ପଡ଼ିଲା । ଏବେ ନୂଆ ଉଠିଗଲାଣି ତଥାପି ଲୋକେ ଆସି ପ୍ରତିଦିନ ସନ୍ଧ୍ୟାବେଳେ ଝାଡ଼ା ଫେରୁଛନ୍ତି ଯେ ଲୋକେ କାମ କରିବାକୁ ଘୃଣା କରୁଛନ୍ତି । ନିଜକୁ ସେ ସବୁ ସଫା କରିବାକୁ ପଡ଼ୁଛି । ସନ୍ଧ୍ୟାବେଳେ ଟର୍ଚ୍ଚ ଧରି ଜଗିବାକୁ ପଡ଼ୁଛି ।

ତା'ପରେ ମନଭିତରୁ ଆଶ୍ୱାସନାର ବାଣୀ ଶୁଣାଯାଉଛି । ସତେ ଯେପରି କିଏ କହୁଛି, "ମଣିଷମାନେ ତ ସୁବିଧା ପାଇଲେ ଅନ୍ୟାୟ କରିପକାଏ, ଅନ୍ୟାୟ କରିବାପାଇଁ ତା'ର ପ୍ରବଣତା ଅଧିକ, ଅନ୍ୟାୟର ଅନ୍ଧକାର ମଧ୍ୟରୁ ତା'ର ଜନ୍ମ । ଅନ୍ୟାୟ ଭିତରେ ତା'ର ବିକାଶ ଓ ଅନ୍ୟାୟ ଭିତରେହିଁ ସେ ବିଲୀନ । ନ୍ୟାୟ ମଣିଷ ପାଇଁ ଏକ ଆକସ୍ମିକ ଘଟଣା ଯେଉଁଠାରେ ମିଳେ, ସେଇଠାରେ ସଭିଁଙ୍କ ଆଖି ଠୁଳ ହୋଇଯାଏ ଅନ୍ୟାୟଟାକୁ ଖୋଜି ବାହାର କରିଦେବାପାଇଁ । ଟିକିଏ ସନ୍ଧାନ ମିଳିଲେ ସମସ୍ତେ ଲାଗିପଡ଼ି ତାକୁ ବଡ଼କରି ଦିଅନ୍ତି, ଚୂନାଆଡ଼େ ବୁଲି ଦେଇ ଅଳ୍ପଦିନ ଭିତରେ ସଫଳଟାକୁ ଉଡ଼ାଇ ଦିଅନ୍ତି । ସେ ନ୍ୟାୟୀ ଲୋକଟି ପୁଣି ସାଧାରଣ ଲୋକଙ୍କ ପଙ୍କ୍ତିରେ ସାମିଲ ହୋଇଯାଏ, ଅଳ୍ପ ସମୟ ମଧ୍ୟରେ ଅନ୍ୟାୟୀ, ଅବିବେକୀ ବୋଲି ପ୍ରମାଣିତ ହୁଏ । ଏଇ ତ ଜୀବନ, ବ୍ୟସ୍ତ ହେବାର କ'ଣ ଅଛି ! ଜୀବନଟା ଏକ ଅରଣ୍ୟ, ତା' ଭିତରେ ହିଂସ୍ରଜନ୍ତୁ ନିଶ୍ଚୟ ରହିବେ । ତୁମେ ସରଳ ନିରୀହ ହରିଣଟିଏ ହୋଇ ସତର୍କ, ସଜାଗ ନ ହେଲେ ସେମାନେ ତୁମକୁ ନିଶ୍ଚୟ ଶିକାର କରିବେ । ତା' ବୋଲି କ'ଣ ହରିଣ ବଣରାଇଜ ଛାଡ଼ିଦେଇ ଗାଁ ଟୋଟାରେ ରହିପାରିବ । ବଡ଼ ମାଛ ଖାଇଯିବ ବୋଲି ସାନ ମାଛ ପାଣିରୁ କ'ଣ ବାହାରି ଆସିବ ! କଦାପି ନୁହେଁ ।

ଦୁଃଶ୍ଚିନ୍ତାର ଝାଞ୍ଜି ପବନରେ ମଉଳି ପଡ଼ିଥିବା ମନର ମୁକୁଳିତ ମୁକୁଳଟି ଆଶ୍ୱାସନାର ଶୀକର କଣିକାଏ ପାଇ ପୁଣି ହସିଉଠିଲା । ଲଇଁ ପଡ଼ିଥିବା ଡେମ୍ଫଟି ପୁଣି ସିଧା ହୋଇଗଲା । ସମରେନ୍ଦ୍ର ଭାବିଲେ ଶଇତାନ ନ ଥିଲେ ସଂସାରଟାର ସ୍ୱାଦ ବୋଧହୁଏ ମିଳନ୍ତାନାହିଁ ଗ୍ରୀଷ୍ମ ନ ଥିଲେ ବର୍ଷାଟା ବୋଧହୁଏ ଉପଭୋଗ୍ୟ ହୁଅନ୍ତା ନାହିଁ । ସଂଘର୍ଷଟା ତ ଜୀବନ···ତାହା ମଣିଷକୁ···ତା'ର ମନକୁ ପ୍ରସ୍ଫୁଟିତ କରେ, ପ୍ରସାରିତ କରେ । ଆହ୍ଲାଦିତ କରେ ଆଲୋଡ଼ିତ ବି କରେ, ଦବିଯିବାର

କହୁନାହିଁ । ଚଲାବାଟରେ ଆସୁଥିବା ସବୁ ଦୃଶ୍ୟକୁ ଉପଭୋଗ କରିଥିବା ସବୁଠାରୁ ଆନନ୍ଦଦାୟକ ପରିବେଶ ।

ସମରେନ୍ଦ୍ରଙ୍କର ଭାଜି ପଡ଼ିବା ମନ ପୁଣି ଚଞ୍ଚଳ ଉଠିଲା । ରାସ୍ତାର ଆଲୋକ-ମାଳା ତାଙ୍କ ଶୀର୍ଣ୍ଣ ଦ୍ରଶୀଭୂତରେ ନୂତନ ତେଜର ସଞ୍ଚାର କଲା । ଜୀବନମୟ କଲା । ତାଙ୍କ ଭିତରେ ଦବି ଯାଇଥିବା ପୁରୁଷକାରକୁ ଅନ୍ଧକାର ଭିତରୁ ଟାଣିଆଣି ଆଲୋକ ମଣ୍ଡିତ କଲା । 'ହେ ଆଲୋକ ତମେ ନମସ୍ୟ, ହେ ତେଜୋମୟ ଶକ୍ତିଧର, ତମେ ହିଁ ଚିରପୂଜ୍ୟ...ତମେ ଅଖିଳ ପ୍ରାଣର ଆଧାର ତମେ, ଜ୍ୟୋତିର୍ମୟ, ତମେ ଚେତନାମୟ, ସେ ଉଦ୍‌ଫୁଲ୍ଲିତ ହୋଇ ଗାଇ ଉଠିଲେ ।

"ଜବା କୁସୁମ ସଙ୍କାଶ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରି ସର୍ବ ପାପଘ୍ନ ପ୍ରଣତୋସ୍ମି ଦିବାକର ।"

ସମରେନ୍ଦ୍ର ନୂତନ ପ୍ରେରଣାର ଉଲ୍ଲାସ ନେଇ ଆଗେଇଲେ । ଏଥିଭିତରେ ସେ ସେ ଆସି ଫରେଷ୍ଟପାର୍କ ନିକଟରେ ପହଞ୍ଚିଗଲେଣି । ହଠାତ୍ ଗୋଟାଏ କୋଳାହଳ ଶୁଣାଗଲା । ସାଇକେଲର ଗତି ମନ୍ଥର ହୋଇଗଲା । ଉଜ୍ଜ୍ୱଳ ପଞ୍ଜି ଆଲୋକ ମଣ୍ଡିତ ମନ୍ତ୍ରୀଭବନ ଆଡ଼କୁ ଦୃଷ୍ଟି ଫେରାଇଲେ । ଜଣେ ମନ୍ତ୍ରୀଙ୍କର ଜନ୍ମତିଥି ପାଳିତ ହେଉଛି । ତାଙ୍କର ଯଶ କୀର୍ତ୍ତନ କରି ରାଜ୍ୟର ସବୁ ସମ୍ବାଦପତ୍ର ଗତ ଏକମାସ ଧରି କ୍ଳାନ୍ତ ହୋଇ ପଡ଼ିଛନ୍ତି । ପୁଣି ଏକ ନୂତନ କୀର୍ତ୍ତିର ଉଦ୍‌-ଘୋଷଣ । ବୟସ ତାଙ୍କର ପଞ୍ଚସ୍ତରୀର ନିକଟତମ । ଭିତରେ ବନ୍ୟା ଛୁଟିଛି, ସାମନା ବଗିଚାରେ ଫୁଟିଥିବା ଫୁଲଗୁଡ଼ାକ ବକ୍ତୃତାର ବର୍ଷାମାତ୍ରରେ ପଚକୋଳକୁ ଆଡ଼େଇ ପଡ଼ିଲେଣି । ଏତିକିବେଳେ ରାସ୍ତାର ଚଉଡ଼ା ଦଣ୍ଡମାରେ ଏକ ନବଜାତ ଶିଶୁର କ୍ରନ୍ଦନରୋଳ ଶୁଣିବାକୁ ମିଳିଲା, ବୋଧହୁଏ ପଙ୍କପଙ୍କରେ ଛଟପଟ ହେଉଥିବା ଶିଶୁଟି କନ୍ୟା ଜଳର ସ୍ପର୍ଶ ପାଇ ଚହଲିକି ଉଠିଲା । ରାସ୍ତାରେ ଯାଉଥିବା ଜଣେ ଖଦଡ଼ଧାରୀ ଭଦ୍ରବ୍ୟକ୍ତି ଅଖି ଚିହ୍ନିଲାକେ ଶିଶୁଟି ଦେଖାଆଣିଲେ । ବୋଧହୁଏ ସମାଜଶଙ୍କିତା ମା'ନବ ଜାତକଟିକୁ ବଞ୍ଚାଇ ରଖିବାର ସ୍ୱୀକୃତ ନପାଇ, ନିଜକୁ ନିଷ୍ପାପ କରିଶୋଇବୋଲି ପ୍ରମାଣିତ କରିବେ ବୋଲି ତାକୁ ଏ ନର୍କକୁଣ୍ଡରେ ନିକ୍ଷେପ କରିଛି ।

ଭଦ୍ରବ୍ୟକ୍ତି ସିଧା ଗ୍ଲାଲେ ସଭାମଞ୍ଚ ଉପରକୁ । ଶୁଭ କଳସୀ ପାଖରେ ନିଜ ଚଦରଟିକୁ ବିଛେଇ ଦେଇ ତା'କୁ ଶୁଆଇ ଦେଲେ । ଭାବ ପ୍ରବଣତା ଭିତରେ କହି ପକାଇଲେ, ହେ ଜନତାର ଭାଗ୍ୟଧର ! ପଲିତ ସହର ଜନ୍ମତିଥି ପାଳନ କରିବାର

ଆବଶ୍ୟକତା ନାହିଁ, ଏଇ ନବ କଳାସୃଷ୍ଟିର ରକ୍ତରାଗ ମଉଳ ଯାଉଛି, ନୂତନ ଅଭ୍ୟୁଦୟରେ ସତ୍କାର କରନ୍ତୁ, ତାକୁ ବଞ୍ଚିବାର ଆଶୀର୍ବାଦ ଦିଅନ୍ତୁ । ମନ୍ତ୍ରୀ ଓ ତାଙ୍କ ସ୍ତାବକଗଣ କ୍ରୋଧର ଲଭା ସ୍ରୋତ ବୁହାଇ ତାଙ୍କ ଆଡ଼କୁ ମାଡ଼ି ଆସିଛନ୍ତି । ଖୁବ୍ ଜୋରରେ ହଇଚୋଳ ଚାଲିଛି···ପୁଲିସ୍ ପାଖକୁ ଫୋନ ହେଉଛି···ଦେଖଣାହାରି ଜମିଗଲେଣି, ବଡସା ଭିତରେ ସେ ଭଦ୍ରବ୍ୟକ୍ତି କେତେବେଳେ ଖସି ଆସିଛନ୍ତି କେହି ଜାଣନ୍ତିନି । ଲୋକଙ୍କ ଭିତରେ ସପକ୍ଷ ବିପକ୍ଷରେ ଯୁକ୍ତି ଚାଲିଛି । ସମରେନ୍ଦ୍ର ଏକ ନୂତନ ଭାବନାର ଉନ୍ମାଦନା ନେଇ ସାଇକେଲରେ ଚଢ଼ିଲେ ।

ମନର ପ୍ରତିକ୍ରିୟାକୁ ସେ କବିତାର ଛନ୍ଦଦେଲେ । ପଦଟିଏ ମନରେ ସୃଷ୍ଟି ହେଲାକ୍ଷଣି ସେ ସାଇକେଲରୁ ଓହ୍ଲାଇପଡ଼ି ପକେଟ୍‌ରେ ଥିବା ଟିପା ଖାତାରେ ଲେଖିପକାନ୍ତି । ତା' ପରେ ସାଇକେଲରେ ଚଢ଼ନ୍ତି । ଲେବଲ୍‌କ୍ରସ୍ ପାର ହେବାପରେ ହଠାତ୍ ତାଙ୍କର ଗତିଶୀଳ ସାଇକେଲଟି ଖସିଯାଇ ପଡ଼ିଗଲା ଓ ସେ କ୍ଷତାକ୍ତ ହୋଇ ଉଠିଲାବେଳକୁ ରେଲଲାଇନ କଡ଼ରୁ ଦୁଇଜଣ କଳାମଚମଚ ଲୋକ ତାଙ୍କର ଆଡ଼କୁ ମାଡ଼ି ଆସିଲେ । ଜଣେ ସାଇକେଲଟାକୁ ଉଠାଇଲା ଓ ଆରଜଣକ ତାଙ୍କ ପକେଟ୍‌ରେ ହାତ ପୂରାଇ ଟଙ୍କା ପଇସା ଛଡ଼ାଇନେବାକୁ ଗଲାବେଳେ ପଛରୁ ହଠାତ୍ ବସ୍‌ଟାଏ ଆସି ବ୍ରେକ ଦେଲା । ଲୋକଦୁଇଟା ପଳାଇଲେ । ସାଇକେଲ ସାମନାରେ ଯେଉଁ ଟାଏ ଲମ୍ବ ଦଉଡ଼ି ପଡ଼ିଛି, ସେମାନେ ଏଇ ଦଉଡ଼ି ପକାଇଥିଲେ ସାଇକେଲ ଗଡ଼ିଗଲାବେଳେ ଖୁବ୍ ଜୋରରେ ଦଉଡ଼ିକୁ ଟାଣି ଦେଇଛନ୍ତି, ସାଇକେଲ ସହ ସେ ଛିଟିକି ପଡ଼ିଛନ୍ତି । ସନ୍ଧ୍ୟାର ଶେଷ ବସ୍ ସେପାଖ ଦେଇ ଫେରୁଥିଲା ଗ୍ୟାରେଜକୁ । ସେ ସାଇକେଲଟି ସେଥିରେ ଚଢ଼ାଇ ଗାଡ଼ିରେ ଚାଲିଆସିଲେ ମନ୍ଦିର ପର୍ଯ୍ୟନ୍ତ ।

ରାତି ନଅଟା ପରଠାରୁ ସୌମ୍ୟା ବ୍ୟସ୍ତ ହୋଇ ଉଠିଛନ୍ତି । ସେ ଆସି ଫାଟକ ପାଖରେ ଛିଡ଼ା ହୋଇଛନ୍ତି ସମରେନ୍ଦ୍ରଙ୍କ ପରୀକ୍ଷାରେ । ଦୂରରୁ ଯାହାକୁ ଦେଖୁଛନ୍ତି ସାଇକେଲରେ ଆସିବାର ସମରେନ୍ଦ୍ର ବୋଲି ଭାବୁଛନ୍ତି କିନ୍ତୁ ନିକଟ ହୋଇଗଲା ପରେ ଦୀର୍ଘ ନିଃଶ୍ୱାସଟିଏ ପକାଉଛନ୍ତି । ଗେହ୍ଲେଇ ଆଈ ଏଥି ଭିତରେ ଦୁଇ ଥରଅର ଆସି ପଚାରି ପଚାରି ଯାଉଥା'ନ୍ତି—"ଆରେ ମା ! ପୁଅ କ'ଣ ଏ ଯାଏ ଆସିନି ?"

"ନାହିଁ ଆଈ ! ଆସି ନାହାନ୍ତି, ମନଟା ଭଲଲାଗୁନି, ଘରକୁ ଯିବାକୁ ଇଚ୍ଛା ହେଉନି, ଛିଡ଼ା ହେଇଚି ।"

ଶେଷଥର ପସ୍ତର ଦେଇ ବୁଲପଡ଼ିବାବେଳେ ବୁଢ଼ୀର ଆଖି ପଡ଼ିଗଲା ସମରେନ୍ଦ୍ରଙ୍କ ଉପରେ । ବୁଢ଼ୀ ଚିତ୍କାର କରି କହିଲେ, "ହେଇ ତ ପୁଅ ଆସିଗଲେଣି, ଝିଅଟା ଦି ଘଣ୍ଟା ହେଲା ଏମିତି ଏକାଗେଡ଼ି ହୋଇ ଫାଟକ ପାଖରେ ଛିଡ଼ା ହୋଇଚି ଯେ ହୋଇଚି । ମୁଁ ତ ନଅଟା ବାଜିଗଲେ ଶୋଇପଡ଼େ । ଭୁଆସୁଣୀଟା ଫାଟକ ପାଖରେ ଏକା କିମିତି ଠିଆ ହୋଇଥିବ ବୋଲି ଏ ପାଖ ସେ ପାଖ ହଉଚି, ମୋ ଆଖିରେ ବି ନିଦ ନାହିଁ । ଆଚ୍ଛା ପୁଅ, ଏଇଟା ଗୋଟାଏ କଥାର କଥା, ତମେ ରାତି ଏଗାର ବାଆର ଯାଏ ବାହାରେ ରହିବ । ନାତୁଣୀ ବୋହୂଟା ଏକାଲା ଏ ଇମିତି ତମକୁ ଆସି ଦାଣ୍ଡରେ ଗୁହିଁଥିବ ବାରଟା ଯାଏ । ପୁରୁଷ ପିଲା ବୋଲି କ'ଣ ସ୍ତ୍ରୀମନର ଝଡ଼ ପବନ କିଛି ବୁଝିପାରୁନ ! ସମରେନ୍ଦ୍ର ହସି ହସି କହିଲେ, "ଗେହ୍ଲେଇ ଆଈ ଗେହ୍ଲେଇ ବୋହୂଙ୍କୁ ପାଖରେ ବସେଇ ଗୁଲୁରୁ ଗୁଲୁରୁ ହେଉଥିଲେ ଚଳନ୍ତାନି ! ରାତିଟା କ'ଣ କଟା ପଡ଼ନ୍ତା ?"

ବୁଢ଼ୀ ପାକୁଆ ଲୋତରା କୋତରା ମୁହଁରେ ହସର ନିଭୁକଟିଏ ଆଙ୍କି କହିଲେ, "ମୁଁ ଯଦି ଘରର ମୁରବୀ ହୋଇଥାନ୍ତି ନା, ନାତୁଣୀବୋହୂ କାନରେ କୁଞ୍ଚଟାକୁ ଇମିତି ବାନ୍ଧି ଦେଇଥାନ୍ତି ଯେ, ଯେତେବେଳେ ଗୁହଁନ୍ତି ମେଢ଼ୀ ପାଇକୁ ଘୋଷି ରି ଆଣନ୍ତା । ଦେଖନ୍ତି ଲଙ୍କିଆ ବଳାଦର କରାମତିଟା କେତେ !

ସମସ୍ତେ ଏକ ସହିତ ହସିଉଠିଲେ । ବୁଢ଼ୀ ବାଙ୍କ ଠକ୍ ଠକୁ କରି ତାଙ୍କ ଘରକୁ ମୁହାଁଇଲେ । ସମରେନ୍ଦ୍ର ଓ ସୌମ୍ୟା ଗେଟ୍ ବନ୍ଦକରି ଘରଭିତରକୁ ଗଲେ । ନିତ୍ୟକର୍ମ ସାରି ଲୁଗାପାଲଟିଲେ । ରାମାୟଣ ଅଧ୍ୟାୟେ ପଢ଼ି ପୂଜା ଧୂଜା ସାରି ଖାଇ ବସିଲେ । ସୌମ୍ୟା ଅଭିମାନ ଭରା କଣ୍ଠରେ କହିଲେ, "ଏତେ ରାତି-ଯାଏ ବାହାରେ ରହିବା ଭଲକଥା ନୁହେଁ । ମଣିଷ ଆଉ ମଣିଷ ହୋଇ ନାହାନ୍ତି । ଘର ନ ହେଲେ ନାହିଁ ପଛକେ ଜୀବନକୁ ବିପନ୍ନ କରିବା ଉଚିତ ନୁହେଁ ।

ସମରେନ୍ଦ୍ର ବିଶେଷ କିଛି ପ୍ରତିକ୍ରିୟା ପ୍ରକାଶ ନ କରି କେବଳ କହିଲେ Death has no que- କାଳ କମିକତାର ବିଚାର ରଖେନା । ବୟସର କ୍ରମଅନୁସାରେ ମଣିଷ କାଳଗର୍ଭରେ ପଡ଼େନା । ଘରଦ୍ୱାର ସହିତ ଜନ୍ମ ମୃତ୍ୟୁର ସମ୍ପର୍କ କିଛିନାହିଁ । ସେପାରର ଡାକରା ମିଳିଲେ ଘରେ ବି ଜୀବନ ବିପନ୍ନ ନ ହେବ ଏହାର କିଛି ଅର୍ଥନାହିଁ । ଅସୁବିଧା ତ ନିଶ୍ଚୟ ହେବ, ତେବେ ସବୁଦିନେ ନୁହେଁ ଇଚ୍ଛାକରି ବି ନୁହେଁ । ଘରଠାରୁ ବହୁତଦୂରରେ ଜନବସତିଶୂନ୍ୟ ନଥିବା ଜାଗାରେ ଘରକଲେ ଅସୁବିଧା ନିଶ୍ଚୟ ହେବ, ଗୁଣ୍ଡା ତସ୍କରଙ୍କ ହାବୁଡ଼ରେ ପଡ଼ିବା ଅସମ୍ଭବ-

ନୁହେଁ, ବିଳମ୍ବ ହେବା ସ୍ୱାଭାବିକ କଥା । ଜୀବନପାଇଁ ଏଇଟା ତ ଗୋଟାଏ ତାଲିମ । ଯିଏ ନୂଆକରି ଗାଡ଼ି ଚଳେଇ ଶିଖୁଛି, ଆକ୍ସିଡ଼େଣ୍ଟ ହେବ ବୋଲି ଶିଖିବନି । ବିପଦ ପଡ଼ିବ ବୋଲି ଘର କଣବନି ଇଏ କି ଯୁକ୍ତି ।

ଖିଆ ଶେଷ ହେଲା । ଚନ୍ଦ୍ରାଭିଜା ସୌମ୍ୟା ହିଅଙ୍କୁ କୋଳକୁ ନେଇ ଶୋଇ ପଡ଼ିଲେ । ଆଖି ପଲକରେ ନିଦ୍ରାର ଅଞ୍ଜନ ବୋଳା ହୋଇଗଲା । ପଦ୍ମ କୋଳରେ ଆଉ ଗୋଟିଏ ପଦ୍ମ କୋରକ । ଫେନନିଭ ଶଯ୍ୟାଉପରେ ହେମ ଚମ୍ପକ ତନୁଟି ପଶାରିଦେଇ ଶୋଇଛନ୍ତି ସୌମ୍ୟା । ସତେ ଯେପରି ଏକ ରୂପତରଙ୍ଗିଣୀ ତନୁର ଉଚ୍ଛଳ ତନିମା ଢାଳି ପ୍ରବାହିତ ହେଉଛି କ୍ଷୁଦ୍ର ଏକ ଉପତରଙ୍ଗିଣୀ କୋଳରେ ନେଇ । ସମରେନ୍ଦ୍ର ଶୋଇନାହାନ୍ତି । ଖଟ ତଟରେ ବସି ପ୍ରବାହିତ ଶିଶୁ ସମ୍ଭାରର ସମୀକ୍ଷା କରୁଥାନ୍ତି । ରାସ୍ତାରେ ଯଦି ସେ ଦୁର୍ଯୋଗର ଶିକାର ହୋଇଥାନ୍ତେ ଏ ସୌନ୍ଦର୍ଯ୍ୟ କେତେବେଳୁ ମଉଳି ପଡ଼ିନ୍ତାଣି । ବର୍ତ୍ତମାନର ଏଇ ସ୍ପନ୍ଦିତ ପ୍ରକାଶ ଆଉ ନଥାନ୍ତା । ନାରୀ ଜୀବନଟା ଏତେ ପର୍ଯ୍ୟାୟବତୀ ! ବୈବାହିକ ଜୀବନର ପୂର୍ବ ପଟରେ ଯେତେବେଳେ ସୌମ୍ୟା ଏକ କିଶୋରୀ ଥିଲା, ତାରୁଣ୍ୟ ବସା ବାନ୍ଧିବା ପାଇଁ ଶରୀରର ବିଭିନ୍ନ ସ୍ଥାନରେ ନୀଡ଼ ପକାଉଥିଲା, ସେତେବେଳେ ଶତ-ଦୁର୍ଯୋଗ ତାଙ୍କର, ତାକୁ ତ ସ୍ପର୍ଶ କରି ନଥିଲା, ଆଜି କାହିଁକି ଏଡ଼େ ସଂଶୟ । ସତରେ ବିବାହ ଏକ ସାମାଜିକ ଚୁକ୍ତି ନୁହେଁ···ବିଶ୍ୱର ସବୁଠାରୁ ବଳି ଶକ୍ତି-ଶାଳୀ ଦୁଇଟା ମାନସ-ତରଙ୍ଗର ଏକୀଭୂତ ପ୍ରକାଶ ।

ଆଲୁଅ ଲିଭେଇ ଦେଲେ । ଜହ୍ନର ପାଉଡ଼ରର ଝିଲବଢ଼ି ଜଳିଉଠିଲା ଝାଲାଉ କିରଣ ଢାଳି । ଦୃଶ୍ୟପଟ ବଦଳିଗଲା, ଆଃ...କି ଚମତ୍କାର...ସୌମ୍ୟା ସତରେ ସୌମ୍ୟ...ନାଁଟିକୁ ନିବିଡ଼ ଆତ୍ମୀୟତା ଭିତରେ ସାର୍ଥକ କରିଛି । ନୀଳ ସମୁଦ୍ର ଭିତରେ ସତେ ଅବା ଲକ୍ଷ୍ମୀ ଶୟନ କରିଛନ୍ତି । ନୀଳିମା ଆଉ ଶୁଭ୍ରିମାର ମନୋଜ୍ଞ ମିଳନ । ଅଭିଭୂତ ହୋଇ ନିଜର ସ୍ମୃତିକୁ ସେଇ ଦୃଶ୍ୟ ସମ୍ଭାର ଭିତରେ ହଜାଇ ଦେଲେ । କାନ୍ଥ ଘଣ୍ଟା ଓ୍ୱାର୍ଣ୍ଣିଙ୍ଗ୍ ଦେଲା...ରାତି ଗୋଟାଏ ।"



# ୭

"ପଥରଗୁଡ଼ିକ ସଜ୍ଜାହୋଇ ଥୁଆ ହୋଇଛି । ଏଥିଭିତରେ କେତେ ଲୋକ ଆସି ତା' ଉପରେ ନାନା ପ୍ରକାର ମନ୍ତବ୍ୟ ଦେଇ ଚାଲିଗଲେଣି । କିଏ କହୁଛି, ଏ ପଥରରେ ଘର କରିବା ଯାହା ବରଂ ମାଟିରେ ଘର କରିବା ତାଠୁ ଶହେ ଗୁଣରେ ଭଲ । କିଏ କହୁଛି, ପଥର ନ ହେଲେ ମାଟି, ପଥର ଘର ଶହ ଶହ ବରଷ ରହିବ, ମୁଖ ମଣ୍ଡଳବନ୍ନ । ସିମେଣ୍ଟ ଗ୍ରୁଭ୍-ଗଲେ ଏ ପଥର ଗୁଡ଼ାକ ସୁନା ମୁଣ୍ଡାପରି କାହାରୁ ବାହାରିବ । ଆଜି ସିନା ପଥର ଖଣ୍ଡିକ ଦ' ଟଙ୍କା, ଯେତେବେଳକୁ ଏହାର ମୂଲ୍ୟ ବଢ଼ି ଯାଇଥିବ । ଇଏ ବି ଗୋଟାଏ ପ୍ରକାର ସମସ୍ୟା ।

ପ୍ରମୋଦବାବୁଙ୍କ ମଟର ସାଇକେଲ ଆସି ପହଞ୍ଚିଗଲା ।

ଆଜ୍ଞା ନମସ୍କାର ! ଯାହାହେଉ ଭେଟ ମିଳିଗଲା । କାମ ଚାଲିଛି ।

"ପ୍ରମୋଦ ବାବୁ ! ନମସ୍କାର, କାମ ଚାଲିବ କ'ଣ, ଆପଣଙ୍କ ଏ ପଥର ତ କାମ ଚଳେଇ ଦେଉନି···ଚାଲିବ କ'ଣ ?"

"କାହିଁକି, କ'ଣ ହେଲା କି ?"

"କ'ଣ ହେଲା, ଏ ପଥର କହୁଛି ବାଳେ, ଆପଣ ଶେଷରେ ମୋ ପାଖରେ ଇମିତି କାମ କଲେ । ଡ୍ରେସିଂ କରାଇବାକୁ ଗୁଣ୍ଡ ହୋଇଯାଉଛି, ସାଙ୍ଗବାଲା ଟେନ୍‌ରେ ନଅଁାଇଲବେଳେ ମଧ୍ୟ ଭାଙ୍ଗି ଯାଉଛି, ସାଇଟ୍ ଠିକ୍ ଆସୁନି ।"

"ଭୁଝିଲେ ସାର୍, ଅନ୍ୟକୁ ହନ୍ତସନ୍ତ କରି ସେଥିରୁ ଆନନ୍ଦ ପାଇବାରେ ମଣିଷ ଧୂରନ୍ଧର । ସାଙ୍କ୍ଟିକ୍ ପ୍ଲେୟରଠାରୁ ବଳି ବୋଧହୁଏ ବିଶ୍ୱରେ ଆଉ କିଛି ପ୍ଲେୟର ନାହିଁ । ସେମାନେ ନାନା କଥା କହି ଆପଣଙ୍କୁ

ଯେଉଁମାନସିକ ନର୍ଯ୍ୟାତନା ଦେଉଛନ୍ତି, ତାହାହିଁ ତାଙ୍କର ଅନାଦରର ଦ୍ୟୋତକ । ମୁଁ ଅଜ୍ଞା ଆପଣଙ୍କ ପରି ଜଣେ ଗୃହିଣୀ, ଗୃହିଣୀ ଜୀବନରେ ଅନେଷ୍ଟ୍ ଭାବରେ ଘର ଖଣ୍ଡିଏ କରିବା କେତେ କଷ୍ଟକର ମୁଁ ତାହା ଜାଣେ । ଆପଣ ମୋତେ ଏତେ ଅବିବେକୀ ବୋଲି ଭାବନ୍ତୁନ । ଆପଣଙ୍କ ପରି ଜଣେ ସରଳ, ଶାନ୍ତ ନିରୀହ ଭଦ୍ରଲୋକଙ୍କୁ ମୁଁ କ'ଣ, ଶତ୍ରୁ ବି ଠକିବାକୁ ଚାହିଁବନି । ବୁଝିଲେ ମାଷ୍ଟ୍ରେ, ମୋ ନା ପ୍ରମୋଦ, ସମସ୍ତଙ୍କୁ ଆମୋଦିତ କରିବା ପ୍ରମୋଦିତ କରିବାରେ ମୋର ସବୁଠାରୁ ବଳି ଅଧିକ ଆନନ୍ଦ ।"

"ସେ ତ ଅଲଗା କଥା, ମୋ ଅଭିଯୋଗର ଉତ୍ତର ଦିଅନ୍ତୁ ।"

"ଅଭିଯୋଗର ନୁହେଁ...ଏ ଗୋଟାଏ ଭୁଲ ଧାରଣା । ଡ୍ରେସିଂ କଲାବେଳେ ପଥର ଝଡ଼ିବହିଁ ଝଡ଼ିବ । କେବଳ କୋଉ ପଥରଟା ଟିକିଏ ଟାଣ, କୋଉଟା ଟିକିଏ ନରମ, ଖଣିରୁ ତ ବାହାରୁଚି...ପ୍ରେସର୍ ଅନୁଯାରେ କେଉଁଟା ଟିକିଏ ହାର୍ଡ, କୋଉଟା ସଫ୍ଟ୍ । ମିଶାମିଶି ହୋଇ ବାହାରିବ, ତାକୁ କାମରେ ଲଗାଇ ଦେଲେ ଯୋଉ ଟାଣକୁ ହେଇ ଟାଣ । ଏକା ମା ପେଟରୁ ଆଇ. ଏ. ଏସ୍. ବି ବାହାରୁଛନ୍ତି; ଜଡ଼ା, କଣା, ଖୋଳା ବି ବାହାରୁଛନ୍ତି । ପରିବାର ଭିତରେ ତାଙ୍କୁ ମିଳେଇ ନେଉଛେ ନା ନାହିଁ । ଟାଣ ପଥରକୁ ଗୋଟିଏ ଥାକ କରନ୍ତୁ, ନରମକୁ ଆଉ ଗୋଟିଏ ଥାକ କରନ୍ତୁ, ଭଙ୍ଗାଗୁଡ଼ାକ ଗୋଟିଏ ଥାକ ହେଉ, ସାଇଜ କରିଥିବା ପଥର ମଧ୍ୟ ଆଉ ଗୋଟିଏ ଥାକ ହେଉ । ଯୋଉ ପଥର ଯୋଉଠେ ଦରକାର ହେଇଠେ ଲଗାଇବେ । ସବୁ ଜାଗାରେ ତ ସମାନ ପଥର ଲାଗୁନି । ମିସ୍ତ୍ରୀ କ'ଣ ଏ ସବୁ ଜାଣିନି...ସେ କ'ଣ କହୁଚି ଏ ଗୁଡ଼ାକ ଖରାପ ବୋଲି ?"

"ଶଶୁର କ'ଣ ଜ୍ୱାଇଁର ଗଲ୍ଠି ଘଦାରେ ପକାଇ ଦିଏ ? ସେ'ତ ନିଶ୍ଚୟ ତାରିଫ୍ କରିବ ।"

"କ'ଣ କହିଲେ ଅଜ୍ଞା, କିଏ କା'ର ଶଶୁର ?"

"କାହିଁକି ସତ୍ୟସୁନ୍ଦର ଆପଣଙ୍କର ଶଶୁର ନୁହନ୍ତି ?"

"ଏତେ ବଡ଼ ମିଛ କଥାଟାଏ କିଏ ଆପଣଙ୍କୁ କହିଲା ? ଏଇତ୍ ଆପଣ ସ୍ୱା ତା କଥା ଶୁଣି ସତ୍ୟାସତ୍ୟ ବିଚାର ନ କରି ମତାମତ ଦେଉଛନ୍ତି । ବୁଝିଲେ ଅଜ୍ଞା, ଏ କ୍ୟାପିଟେଲ ଗୋଟାକ ସାଇଟରେ ସେ ଶଶୁର, ସବୁ ମିସ୍ତ୍ରୀ, ମୂଲିଆ, ରେଜା, ତାକୁ 'ଶଶୁରଜି' ବୋଲି ଡାକନ୍ତି, ତାର ଇମିଡ଼ କେତେ

ଥିଅ ଯେ ସେ ଏତେ ଜ୍ୱାଇଁ କରିପକେଇଚ ! ସେ ସମସ୍ତଙ୍କର ଯେପରି ଶରୀର ମୋର ବି ସିମିତ ଶରୀର । ମୋଠୁ ପାଉଣାଟକ ପାଇବା ଯାଏ ଶରୀର ତା'ପରେ ଅସୁର । ମିସ୍ତ୍ରୀ ଗୁଡ଼ାକୁ ଆପଣ କ'ଣ ଚିହ୍ନି ନାହାନ୍ତି ।"

ସମରେନ୍ଦ୍ର ହସିଲେ ।

ପ୍ରମୋଦ କଥାର ଖିଅ ଯୋଡ଼ି କହିଲେ, "ମୋର ଏଇ ହସ ଟିକକ ଦରକାର ଆଜ୍ଞା...ବିଜନେସ୍ ନ ହେଲେ ନାହିଁ, ଜଙ୍ଗଲତ ପଡ଼ି ରହନ୍ତୁ । ସ୍ନେହ ଶ୍ରଦ୍ଧା ଯେପରି ସାମାନ୍ୟ କେତେଟା ପଇସା ପାଇଁ ନଷ୍ଟ ନ ହୁଏ । ପଥର ଉପରେ ଆପଣଙ୍କର ସନ୍ତୋଷ ନଥିଲେ ବନ୍ଦ କରିଦଅନ୍ତୁ, ହଜାର ଖଣି ପଡ଼ିଛି । ଯାହାକୁ କହିବେ ସେ ଦେବ । ମୁଁ ତା ହେଲେ ଆସୁଛି ସାର୍ !"

"ପ୍ରମୋଦବାବୁ ! ଅଭିମାନ କଲେ କି ?"

"ବ୍ୟବସାୟୀ ଆଉ ଅଭିମାନ କାହାର ସାଥିରେ କାହାର ମେଳନ-ନ ଥାଏ । କବି, ଦାର୍ଶନିକ, କଳାକାର ଏନ୍ମା ଏଇମାନଙ୍କର ଏକଚାଟିଆ ଅଧିକାରରେ ଥାଏ, ବ୍ୟବସାୟୀଙ୍କ ଶିଉଳିପଡ଼ା ମନକୁ ଆଦୌ ଛୁଇଁ ପାରେନା । ଅସୁବିଧା ହେଲେ କହିବେ, ମୁଁ ପୁଣି ଆସି ପଥର ଚାଲାଣ ଦେଇ ଯିବି ।"

"ଛାଡ଼ନ୍ତୁ ସେ ସବୁ, ଦେଖନ୍ତୁ ନିଜେ ଟିକିଏ ଇଣ୍ଟରେଷ୍ଟ ନେଇ ଆଉ ଗୃଣଟ୍ରିପ ପଥର ଦେଇଥାନ୍ତୁ ।"

"ଇଣ୍ଟରେଷ୍ଟ ନିଶ୍ଚୟ ନେଉଛି, ନେବି ମଧ୍ୟ । ଖଣିକୁ ଯାଇ ଲୋଡ଼୍ କରାଇବି । ବାଛି ବାଛି ପଥର ଆଣିବାକୁ କୁଲିମାନେ ଆଉ ଦି' ଘଣ୍ଟା ନେଲେ ନେବେ, ମୁଁ ଦେବି, ଆପଣ ବ୍ୟସ୍ତ ହୁଅନ୍ତୁନି । ବ ଟ୍ରିପ୍ର ଆଡଭାନସ୍ ଦିଅନ୍ତୁ । ସେତିକ ପଡ଼ିଗଲେ ଆଉ ଡାକ ଦେବେ ।"

"କାଲିକି ପରେ ନେବେ, ଆଗ ପକାନ୍ତୁ, ପଇସା ପାଇବାରେ କ'ଣ କିଛି ଅସୁବିଧା ହେଉଛି ?"

ମୁଁ ତ ସେ କଥା ସ୍ୱପ୍ନରେ ଭାବିନି ଆଜ୍ଞା. ଅସୁବିଧା ଆପଣଙ୍କ ପାଖରେ ହେବ ! ତେବେ ଗାଡ଼ିବାଲା ଆଡଭାନସ୍ ନ ନେଲେ ପଥର ଲଦିବେନି, କଟାଳୀଏ ଚାଟିବେନି । ମୋ ଗାଡ଼ି ଖରାପ ଅଛି...ଏଇଟା ବାହାର ଗାଡ଼ି ।

"ଆଚ୍ଛା, ଦୁ'ଶହ ଟଙ୍କା ନଅନ୍ତୁ · ପରେ ଆଉ ଯାହା କରୁ ।"

"ଏତ ଗୋଟାଏ ଟ୍ରିପ୍‌ର ପଇସା ବ ହେଉନ, ଆଉ ଦୁ'ଶହ ଟଙ୍କା ଦଅନ୍ତୁ, କାଲି ସୁଦ୍ଧା ପଥର ପଡ଼ିଯିବ ।"

ସମରେନ୍ଦ୍ର ଆଉ ତକ ଦେଲେ । ପ୍ରମୋଦ ବାବୁ ସେତକ ପକେଟରେ ରଖି କହିଲେ, "ଆଜ୍ଞା ଆସୁଚ, ଆପଣ କାଲି ଆଠଟାବେଳକୁ ଏଇଠେ ଥିବେ, ଆପଣଙ୍କ ସାମନାରେ ପଥର ପଡ଼ିବ । ଖସ୍ରପତକ ଅଲଗା କରି ଦେବେ । ମୁଁ ତାହା ସହିବ । ନମସ୍କାର ।"

ପ୍ରମୋଦ ଚାଲିଗଲେ । ତା'ପରେ ମନେପଡ଼ିଲା, ରସିଦ ରଖି ପାରିଲେନି । ପରେ ପରେ ଆସି ପହଞ୍ଚିଲେ ମିସ୍ତ୍ରୀ, ମୂଲିଆ···ଆଉମାନେ । ସମରେନ୍ଦ୍ର କାମ ବରାଦକରି ଚାଲିଗଲେ ଅଫିସକୁ ।

ସତ୍ୟସୁନ୍ଦର ଗୋଟାଏ ରେଜାକୁ ପଠାଇ ଦେଲା ଚା', ପାନ ବରାଦ କରିବାକୁ ଦୋକାନକୁ । ବାଲି ପକେଇବାକୁ ଦୁ'ଇଟା ଦଶବର୍ଷିଆ ପିଲା, କଡ଼େଇ ଟେକିପାରନ୍ତି ନାହିଁ, ତାକୁ ବରାଦକଲା ଦଶ କଡ଼େଇ ବାଲି ବେଡ଼ରେ ଗଦେଇବାକୁ । ତା'ପରେ ସେ ଚାଲିଗଲା ଚା' ଦୋକାନକୁ । ପିଲା ଦୁ'ଇଟା ବାଲିଗଦାରେ କଡ଼େଇ ପକେଇ ଦେଇ ଦେଉଳିଆ କରି ବାଲି ଜମାଇଲେ, ଗଛଡ଼ାଳ ଭାଙ୍ଗି ଆଣି ତା' ଉପରେ ପୋତିଲେ । ପଞ୍ଚଗୁଚ୍ଛିକ ନେତ ପରି ଉଡ଼ୁଥାଏ । କଡ଼େଇ ଉଠେଇ ଦୁ'ଖଣ୍ଡ ବାଡ଼ି ଧରି ଦର୍ହେ ମନ୍ଦିରର ଘଣ୍ଟା ବାଜିଲା ପରି ତାକୁ ବାଡ଼େଇଲେ । ଜଣେ ସେଥିରୁ ମନ ଖୁସିରେ ମନ୍ତ୍ରପାଠ ଆରମ୍ଭ କରିଦେଲା । ସଭ୍ୟ, ଅସଭ୍ୟ, ଶ୍ରୁତ, ଅଶ୍ରୁତ, ଲିଖିତ, ଅଲିଖିତ, ଉଚ୍ଚାରିତ, ଅର୍ଦ୍ଧୋଚ୍ଚାରିତ, ଅନୁଚ୍ଚାରିତ କେତେକ ଶ୍ଳୋକ, ଯାହାର ସ୍ରଷ୍ଟା ସେଇ ଦଇଟି ଶିଶୁଶିଳ୍ପୀ ଆନୁନାସିକ ସ୍ୱର ଭିତରେ ସେମାନଙ୍କର ଉଲ୍ଲାସ ସଙ୍ଗୀତ ଶ୍ଳୋକର ରୂପ ନେଇଥାଏ । ତା'ପରେ ବାଲି ଦେଉଳକୁ ଗୋଟାଏ ଗୋଇଠାରେ ଭାଙ୍ଗିଦେଇ ହସି ହସି ନଜନଜ ଉପରକୁ ବାଲି ଫୋପଡ଼ା ଫୋପଡ଼ି ହୁଅନ୍ତି । ଗଣିତ୍‌ର ପ୍ରଶ୍ନ ଉଠୁନି, ଦଉଡ଼ି ଦଉଡ଼ି କେତେ କଡ଼େଇ ବାଲି ଗଦେଇ ଦେଇ ଠିକଏ ହେଲା ଦଶିଲେ ସିମେଣ୍ଟ ମିଶାନ୍ତି । ଅନ୍ୟମାନେ ବଡ଼ଖାଇ ହସଖୁସି ହେଉଥାନ୍ତି ।

ଚା' ଦୋକାନରୁ ଡାକ ଶୁଭେ ସତ୍ୟସୁନ୍ଦରର । ଇଚ୍ଛାପ୍ରବୃତ୍ତି ଛନ୍ନ ପିଲାଏ । ଜଣେ ଦୁ' ଡେକେଟ ସିମେଣ୍ଟ କାଢ଼ି, କାନରେ ବାନ୍ଧ ସାଇକେଲ ପଛରେ ରଖି ଦୋକାନକୁ ଚାଲିଆସିଲା । ଦୋକାନ ଭିତରେ ବସ୍ତା ଥାଏ । ପ୍ରତିଦିନ ଏତିକ

ଲେଖାଏଁ ସିମେଣ୍ଟ ରଖାଯାଏ ସେଥିରେ । ବସ୍ତା ପୁରିଲେ ସିଲେଇ ହେବାର କଥା, ଅଧା ଛଡ଼ପା ହେଲାବେଳେ ଦୋକାନର ପାଉଁଶ ସେଥିରେ ଫେଣ୍ଟାଯାଏ । ଶେଷରେ ମୁହଁ ସିଲେଇ ହୋଇ ବନ୍ଦିପାଇଁ ରଖାଯାଏ । ବାବୁ ସିମେଣ୍ଟ ନପାଇଲାବେଳେ ମିସ୍ତ୍ରୀ ଦିନ ବାରଟାଯାଏ ଖବି ଭଳିରେ ସିମେଣ୍ଟ ଖୋଜ ଖୋଜ ଶେଷରେ ଏଥିରୁ ଦଶେ ଦି'ବସ୍ତା ପହଞ୍ଚାଇ ଦେଇ କହେ, "ଆଜ୍ଞା, ଆପଣଙ୍କ କଥା ଏଣିକି ଆପଣ ବୁଝନ୍ତୁ । ମଣିଷ କେତେ ବୁଲିବ, ପାର୍ଟିକୁ ପାଉନାହିଁ । ବସ୍ତା ଦିଇଟା ସେ ବାବୁଙ୍କଠୁ ପାଇକେଲରେ ଲଦଚ, ସିପେଇଟେ ଦଉଡ଼ି ଦଉଡ଼ି ଆସି ପହଞ୍ଚିଗଲା, ହାଲାକଲା ବ୍ଲେକ୍ ସିମେଣ୍ଟ ବୋଲି । ପାଉଣା ପାଇଗଲାରୁ ଭୂନକରି ଖସିଗଲା ।" ଏଇମିତି ଭିନ୍ନ ଭିନ୍ନ ଦିନରେ ଭିନ୍ନ ଭିନ୍ନ ଖେଳ, ଭିନ୍ନ ଭିନ୍ନ ଗପ ।

ସମରେନ୍ଦ୍ର ସେ ଖେଳ ବୁଝି ପାରନ୍ତିନି, ମିସ୍ତ୍ରୀକୁ ହଇରାଣ ହରକତ ପାଇଁ କିଛି ବକ୍‌ସିସ୍ ଦିଅନ୍ତି । ଚଢ଼ା ଦରରେ ସିମେଣ୍ଟ କିଣନ୍ତି, ସେ ପଇସାରୁ ମିସ୍ତ୍ରୀ ପାଏ ଅଧା, ଆଉ ଅଧାକ ମୂଲିଆ, ରେଜା, ଚା' ଦୋକାନୀ ବାଣ୍ଟି କରି ନିଅନ୍ତି । ପାନ ଦୋକାନୀର ଏଥିରେ କିଛି ଭୂମିକା ନଥିଲେ ବି ସେ ସେମାନଙ୍କ କାରସାଦି ସବୁ ଦେଖେ, ପ୍ରକଟ ନକରିବା ପାଇଁ ଫିସ୍‌ଟା ତାକୁ ମିଳିଯାଏ ।

ଘଣ୍ଟେ ଦି'ଘଣ୍ଟାପରେ ସତ୍ୟସୁନ୍ଦର ଚା'ଦୋକାନ ଆଡ଼ୁ ଗର୍ଜ୍ଜନ କରି କରି ବୋର୍ଡ ପାଖରେ ପହଞ୍ଚେ ।

"ଶାଳ ହାରମଯାଦା ଟୋକାଗୁଡ଼ାକ, ମଣିଷକୁ ବଦନାମ କରିବେ । ଏତେବେଳଯାଏ ମସଲା ବି ଫେଣ୍ଟା ଯାଇନି । ହଇବେ ବାବୁ ଯଦି ପହଞ୍ଚିଯିବ ଆମକୁ ମଣିଷ କହିବ ··ଶାଳା ମଜୁରି ପାଇବବେ ! ହବେ···ଆଠ କଡ଼େଇ ପକେଇଚଟି । ହେ ପୋ ବେଲଚ୍ଚ ମାର ! ପାଣିପକା, ହବେ ଶାଳ ଅନ୍ଧ···ଆଖିକୁ ଦିଶୁନି, ପାଣି ଛାଡ଼ୁଚସେ ମସଲା ଶୁଖିଲାଉଚ । ଖାଲି ବାଲିରେ କ'ଣ ଯୋଡ଼େଇ ହେବ ! ଧର୍ମ ତମକୁ ସହୁଛି ! ଆରେ—

ଧର୍ମ ସିନା ଏକା ମହତ ପଣିଆ
ଆଉ ସବୁ ଅଟେ ଅଡ଼େଇ ଦିନିଆ ।

ଏତିକିବେଳେ ଶଙ୍କ, ପାନ ନେଇ ରେଜା ପହଞ୍ଚିଯାଏ । ଟିକିଏ ରସିକିଆ ସ୍ୱରରେ କହେ ଦୋକାନରେ ଆଖି ନାଖି ଯାଉଚ ଯେ ପାହୁଲା ଫିଟୁନି । ଦେ ଦେ, ବେଗେ ମସଲା ଆଣ ।

ବଡ଼ରେ ଜଅଁ ଲଗେଇ ପାର୍ଟିରେ ଧଣବାବେଳେ ରେଜା ତା ହାତରେ ପାନ ପୁଳ୍‌ଆଣ୍ଟା ଗୁଞ୍ଜି ଦେଇ ଡମ୍‌ଡମ୍‌ ହୋଇ କହେ. ନାଲିଗଲ୍ କେମିତ ମ··· ହେଉ ନ ଡମ ଆଗେ ଅଗେ ଆଉଚ ··ଅଉ କ'ଣ ହନୁମାନ ହେଇଛନ୍ତେ କୃଦା ମାଶଆନ୍ତ !

ସତ୍ୟସୁନ୍ଦର ହସି ହସିକା ଚଗଣ୍ଟାଏ ଯୋଡ଼ିଦଏ—

"ହନୁମାନ ନୋହୁ ହନୁମନ୍ତ ଲେ ହନୁମନ୍ତ
କୁଉଳ ଖୀଉଚୁ ବସୁମନ୍ତ ଲେ ବସୁମନ୍ତ
କଥାକେ କଥାକେ ଡ଼ି
ତୋ ଛଇ ଛଟକ ବୁଝିଁପାରେନା ମୁଁ କେତେବେଳେ କଏ ଛୁ ।"

ଚହଲ କଲସି ପରି ଚହଲି ଉଠେ ସେ ରେଜା, କଡ଼େଇ ଧରି ମସଲ ଉଠାଇ ଧପ ଧପ୍‌ କରି ଆଡ଼େଇ ଯାଏ । ପଥର ମଝିରେ ମସଲ ଅଜାଡ଼ି ଦିଏ ଏ ମୁଣ୍ଡରୁ ସେ ମୁଣ୍ଡ । ବାଲିଗଦା ଉପରକୁ ଯାଇ ଲହୁଡ଼ିଲେ ଲୁଚେଇଥିବା ଗୁଡ଼ାଖୁ ଡବାଟି ବାହାର କରେ । ମେଞ୍ଚାଏ ଆଣି ଆଙ୍ଗୁଠିରେ ଦାନ୍ତ ମାଡ଼ିରେ ବୋଳେ । ଛନ୍ଦାସ୍ଥିତ ଗତରେ ଦାନ୍ତ ମାଡ଼ିର ଦୁ'ପାଖରେ ଅଙ୍ଗୁଳି ଚଳାଏ । ଧାର ଧାର ଉର୍ଜିନ୍ ଲାଳ ପାଟିରୁ ନିଗିଡ଼ି ପଡ଼େ ଶାଢ଼ୀ ଆଉ ବ୍ଲାଉଜ ଉପରେ । ଡେବରି ହାତରେ ସେ ତାକୁ ପୋଛି ପକାଏ । ଡାକକୁ ଶୁଭେ "ମସଲ...ମସଲ... ।" ଚଟ୍‌କରି ଲାଳ ବୋଳା ଆଙ୍ଗୁଳିଟାକୁ ବାଲିରେ ପୋଛି ଦେଇ ପଣତ କାନିଟାକୁ ଉଠାଏ ମୁହଁକୁ । ପରିଷ୍କାର କରି ମୁହଁ ପୋଛି କଡ଼େଇ ଉଠାଏ । ସେପରେ କଲ ପୂରିଗଲେ ଯେଉ ମସଲ ଗଦା ଉପରେ ପକାଇ ଦେଇ ଫେଣ୍ଟି ଦଏ ।

ଫନେ ଫନେ ସମରେନ୍ଦ୍ର ଅଫିସରୁ କହିଦେଇ ଗୁଲ୍‌ଆସନ୍ତି । ସତ୍ୟ-ସୁନ୍ଦରର ଆଖି ଘୁରିଅଡ଼େ ଘର୍ଷିତରି ମାରୁଥାଏ । ଦୂରରୁ ବ.ବୁଲ୍ଙ୍କୁ ଦେଖିଦେଲେ ଜଅଁ ଉପରେ ଛିଡ଼ା ହୋଇଥିବା ପଥରଗୁଡ଼ାକ ଚଟାପଟ ଶୁଆଇ ଦେଇ କଡ଼େଇରେ ବାଲି ସିମେଣ୍ଟ ମିଶେଇ ଦେଇ ସାନ୍ଧବାଲାଙ୍କୁ କହେ ସାନ୍ଧମାଶ ଅଣିବାକୁ । ନିଜେ ବୋର୍ଡ ଉପରେ ଠିଆ ହେଇ ବାଲି ଜମାକରିଏ, ସିମେଣ୍ଟ ବସ୍ତାର ମୁହଁ ଇଶାରେ ଦେଖି ତାକୁ ଫିଟାଏ, ବାବୁ ନିକଟ ହେଇଗଲେ ପିଲାଙ୍କଠୁ ଦେଲଗ୍ରି ଟାଣିଆଣି ନିଜେ ଫେଣ୍ଟି ପକାଏ । ପାଟିରେ କନ୍ଥ ଗାଳି ଗୁଲଜର ଲମ୍ବା ସ୍ରୋତ ବହୁଥାଏ । ବାବୁ ବୋର୍ଡ ଉପରେ ଠିଆ ହୋଇଗଲା ପରେ ବ ତା ପାଟି ବନ୍ଦ ହୋଉନଥାଏ, "ଶାଳ ଏଠିକ ବକଟେ ଲେଖା ପିଲା, ବଡ଼ ମଣିଷର ମଜୁରି ପାଉଚ, କାମ କଲାବେଳକୁ ହାତ ଚଲୁନ । ଖାଇଲା ବେଳକୁ ତ

ଝିଅଆ ତେଉଁ ପାରୁନ । ଲୋକ ମିଳୁଥିଲେ ଚମଗୁଡ଼ାକୁ ନେଇ ମୁଁ କିଆଁ ହଟହଟା ହଉଥାନ୍ତି । କାମ ଆଖିକି ନ ଦିଶିଲେ କା'ମନ ଖୁସିହେବ ।

ପିଲାମାନେ ଜାଣନ୍ତି ଏ ଗାଳିଟା ଛଣ ଛପର ଉପରେ ଖାଲି ଢାଳିଲା ପାଣି ··ତାଙ୍କ ପାଇଁ ନୁହେଁ, ଖାଲି ବାବୁଙ୍କ ପାଖରେ ଭଲେଇ ହେବାପାଇଁ ଗୋଟାଏ ଛଟକ । ସେମାନେ ପାଟି ଚାକୁଳେଇ ଚାକୁଳେଇ କହନ୍ତି । "ସେମିତି କାହିଁକି ହଉଚ ବା, ନିଅ ବଡ଼ ଖଣ୍ଡେ ଟାଣ, ସବୁକାମ ତ ତେମେ ଏକୁଟିଆ କରିପକାନ୍ତି · ଆମକୁ ଡାକୁଚ କାହିଁକି ? ପଇସା ରହିଯାଆନ୍ତା ।"

"ଭେ ପୋକ୍ତ ପକେଇବ ବେଳକୁ ମାଡ଼ ଯେ ଗ୍ରୁଭିକରି ପକେଇବ । ଶାଳା ନିଅବେ, ବାଟେଇ କରି ଫେଣ୍ଟ, ମସଲା ଯିମିତି ଗୁରିଆଡ଼େ ସମାନ ଭାବରେ ମିଶିବ ।" ସ୍ୱର ବଦଳେଇ ଖୁବ୍ ଅନୁଗତ କଣ୍ଠରେ ବାବୁଙ୍କୁ ନିର୍ଦ୍ଦେଶ କରି କହେ "ମଝିରେ ଗ୍ଲଲ ଆସିଲେ ଭଲ କଲେ, ଆମର ଇଚ୍ଛା ମାଲିକ ସବୁବେଳେ ପାଖେ ପାଖେ ଥାଆନ୍ତୁ, ଆମକୁ ଆନନ୍ଦ ମିଳିବ, କାମରେ ଆଉ ଦକା ରହିବନି ।"

ଦିନେ ଦିନେ ଚା'ବାଲା ଓ ପାନ ଦୋକାନୀ ସତ୍ୟସୁନ୍ଦରଙ୍କୁ ରକ୍ଷାକରି- ଦିଅନ୍ତି । ବାବୁ ଆସିବାର ଦେଖିଲେ ତାଙ୍କୁ ଅଟକାନ୍ତି, ଖୁବ୍ ଭକ୍ତିରେ ଚା' କପେ ଖାଇବାକୁ ଦିଅନ୍ତି, ପାନବାଲା ପାନ ଦିଏ । ସମରେନ୍ଦ୍ର ପଇସା ଦେଲେ ସେମାନେ ପଇସା ନିଅନ୍ତିନି । ହସିହସି କହନ୍ତି, "ବାବୁ, ସାନା ଗୋଟାଏ କଥା, ଆପଣଙ୍କ ଆଶ୍ରାରେ ଆମେ ପଡ଼ିଚୁ । ଆପଣଙ୍କ ଦୟାରୁ ନିଇତି ନିଇତି ଆମେ ଦଶ ବାରଜଣ ଗ୍ରାହକ ପାଉଚୁ ଯିଏକି ଆପଣଙ୍କ କାମ କରୁଚନ୍ତି । ଆପଣଙ୍କ ଦେଖା ଦେଖି ଆଉ ଆଉ ବାବୁମାନେ ଘର କରିବେ, ଆମର ଗ୍ରାହକ ବି ବଢ଼ିବେ । ଏବେ ଆଜ୍ଞା କାରବାର ଭଲ ହେଉଚି । ଆପଣମାନଙ୍କ ପରି ଲୋକଙ୍କୁ ପାନ ଖଣ୍ଡେ ଚା' ଟିକିଏ ଦେବୁଯେ ପଇସା ପୁଣି ନେବୁ । ବୁଝିଲେ ଆଜ୍ଞା, ଆମପରି ଛୋଟିପାଟିଆ ଦୋକାନରେ ଆପଣମାନଙ୍କ ପରି ଲୋକଙ୍କର ପାଦ ପଡ଼ିଲେ ଆମ ବ୍ୟବସାୟ ବଢ଼ିଯିବ । ସମରେନ୍ଦ୍ର ବଢ଼ାଇଲା ପଇସାକୁ ପକେଟରେ ରଖି ତରତର ହୁଅନ୍ତି କାମ ପାଖରେ ପହଞ୍ଚି ବାବୁ । ଦୋକାନୀ କହେ, "ଆଜ୍ଞା, ଗୋଟାଏ ମନଲାଖି ମିସ୍ତ୍ରୀ ଆପଣ ପାଇଛନ୍ତି । ସତ୍ୟସୁନ୍ଦରର କାମ ଆପଣ ଦେଖିବେ କ'ଣ ? ଆପଣ ଥିଲେ ଯାହା ନଥିଲେ ତାହା । କାମରେ ଲାଗିଲେ ତା' ହାତ ବନ୍ଦ ହେବନି କି ମୁଣ୍ଡ ଉପରକୁ ଉଠିବନି । ମଝିରେ ମଝିରେ ପାନ ଚା' ପାଇଁ ରେଜାକୁ ପଛକେ ପଠେଇ ଦେବ···ନିଜେ ଉଠିବନି ।"

କଥାର ସ୍ରୋତ ମଧ୍ୟରେ କିଛି ସମୟ ପାଇଁ ଅଟକି ଯାଆନ୍ତି ସମରେନ୍ଦ୍ର- ବାବୁ । ଏହି ସମୟରେ ଭିତରେ ମସଲାବାଲା ଯାଇ ଡାକିକରି ମସଲା

ଫେଣ୍ଟି ଦେଇ ତା' ଉପରେ ଗୁଣ୍ଡ ସିମେଣ୍ଟ ପକାଇ ବେଲଗ୍ସ ମାରି ଦିଅନ୍ତି । ଉପର ସ୍ତର କଳାଦିଶେ । ସମରେନ୍ଦ୍ର କାମ ପାଖରେ ପହଞ୍ଚିଲାବେଳକୁ ଧୁମ୍ ଧାମ୍ କାମ ଚାଲିଥାଏ । ମଯଲାଗଦାକୁ ଦେଖିଦେଇ ଭାବନ୍ତି ଭାରି କଡ଼ାପାକ ହେଉଛି । ସେ ସତ୍ୟସୁନ୍ଦରକୁ କହନ୍ତି, ଦେଖୁଛ ସତ୍ୟ ! ମସଲାସ୍ତର ବେଶ କଡ଼ା ହେଇଯାଉଛି,, ଏତେ ସିମେଣ୍ଟ ଯୋଗାଇ ହେବ କୋଉଠୁ ! ସତ୍ୟସୁନ୍ଦର ତାକିଦ୍ କରି ପିଲାଙ୍କୁ କହେ, "ହଇବେ, ଏଇଟା ମାଗଣା ସିମେଂଟ ଭାବିଲକି, ପି ଡବଲ୍ ଡ଼ି ବାବୁ କୁହନ୍ତି ଯେ ସିମେଣ୍ଟ ମାଗଣାରେ ଆସିଯିବ, ତମେ ମନଇଚ୍ଛା ଆଜାଡ଼ି ଦବ । ଖାଣ୍ଟି ଝାଳବୁହା ଧନ···ପୋଟେ ନଷ୍ଟ ହେଲେ ଦିହରୁ ପୋଟେ ରକ୍ତ ଶୁଖିଯିବ ।"

ସତ୍ୟସୁନ୍ଦର ମଜୁରି ବେଗରେ ପଥର ବସାଇଯାଏ । ହେଲପର୍ କରଣିଧରି ପଛେ ପଛେ ସାନ୍ଧ ମାରିଆଣେ । ବାବୁଙ୍କ ମନ ଭାରି ଖୁସି । ଗଲାବେଳେ କହନ୍ତି, "ମୁଁ ଯାଉଛି ସତ୍ୟସୁନ୍ଦର, ଭଲ କରି ଯଏଣ୍ଟ ମାରିବ ।" ସେ ଚଟ୍‌କରି କହେ— ଆଜ୍ଞା ଆଜି ଦିନଟା ଯାଉ, ସାବଲ ମାରିଲେ ବି କାଲିକି ଭୁକିବନି । ଫାଷ୍ଟକ୍ଲାସ କାମ ହେଉଛି । ବାହୁଡ଼ି ଦେବାର କାହାରି ମୁଁ ନାହିଁ । ହଁ ଗଲାବେଳେ ସାବଧାନରେ ଆଜ୍ଞା ଯିବେ···ମୁନସିପାଲ୍‌ଟିବାଲା ଛକିଚନ୍ତି ବାଟରେ, ସାଇକେଲ ଧରୁଚନ୍ତି ।"

"ଆଚ୍ଛା ତମେ ତ କାମକରୁଚ ଏକଥା ଜାଣିଲ କେମିତି ?"

"ସତ୍ୟସୁନ୍ଦର ଯୋଉଠେ ଥିଲେ ବି ଦୁନିଆର କଥା ତା ପାଖରେ ଆସି ପହଞ୍ଚେ ଆଜ୍ଞା, ଚା' ଦୋକାନକୁ ଯାଇଥିଲି, ଲୋକେ ସବୁ କଥା ହଉଥିଲେ, ଜଣେ କିଏ ଟୋକା ଆଜି ମୁନସିପାଲିଟି ବାଲାଙ୍କୁ କଡ଼ାକରି ପାନେ ଚଢ଼େଇ ଦେଇଚି । ତା' ସାଇକେଲ ସେମାନେ ଧରିଲେ, ସେ କହିଲା ଘରେ ଲାଇସେନସ୍ ଅଛି, ସାଇକେଲରେ ଲଗାଇଲେ ଫିଟେଇ ନେଉଛନ୍ତି । ଏମାନେ ବିଶ୍ୱାସ ନକରି ତା' ସାଇକେଲ ଜବତ କଲେ । ସେ ଟୋକା ଦେଖିଲା ତାଙ୍କ ସାଇକେଲରେ ଲାଇସେନସ୍ ନାହିଁ, ସେଇଥିରୁ ଗୋଟାଏ ଧରିଲା ସିଧା ଘରକୁ ମୁହାଁଇଲା । ପଛରେ ଯେଉଁମାନେ ଦଉଡ଼ିଲେ ତାଙ୍କୁ କହିଲା, ସାବଧାନ୍ ! ମୋ ସାଇକେଲରେ ଲାଇସେନସ୍ ନାହିଁ ଯେ ତମେ ଧରିଚ, ତମ ସାଇକେଲରେ ନାହିଁ ମୁଁ ଧରିଛି । ତମେ ଛାଡ଼ିଲେ, ମୁଁ ବି ଛାଡ଼ିବି । ତମେ ଭିଡ଼ିଲେ ମୁଁ ଏକାଥରକେ ଭିଡ଼ି ଦେବି ଯେ ତମ ସବୁ ଷ୍ଟାପ୍ ମୁହଁ ମାଡ଼ି ପଡ଼ିଥିବ । କହିଲା, ସିଧା ସିଧା ଚାଲିଲା । ତା'ପାଖକୁ ପଚ୍ଛନ୍ତି କିଏ ! "ଆଜ୍ଞା ଚା' ଦୋକାନଟା ଆମର ସମାଜ ଅଫିସ୍।"

"ସମରେନ୍ଦ୍ର ହସିଲେ, କହିଲେ, "ମୋର ଲାଇସେନସ୍ ଅଛି ସତ୍ୟସୁନ୍ଦର ! କିଛି ଅସୁବିଧା ହେବନି । ମୁଁ ଯାଉଚି ।"

"ସାର୍...ସନ୍ଧ୍ୟାକୁ ଆସିବେ ତ ? ଆଜି ପେମେଣ୍ଟ କିଛି କରିବେ ।"

"ହଁ ଆସିବି, ପେମେଣ୍ଟ ହେବ ।"

ସାଇକେଲନେଇ ସମରେନ୍ଦ୍ର ଗୁଲିଗଲେ । ସେ ଟୋକା ଦାଢ଼ିଟା ହସି ହସି ବାଲିରେ ଗଡ଼ିଗଲେ । ରେଜାଟା ବି ହସି ହସି ବେଦମ୍ । "ଶଶୁରାଇର କିମିଆ କମ୍ ନୁହେଁ, ସତରେ ବାବୁଟା କେଡ଼େ ବୋକା ମ ! ମଟ ମଟ ଗୁହୁଁଚି, କିଛି ଧରି ପାରୁନି । ଶଳା, ବାବୁ ହେଇଚି · ମୁଁ ତ ତାକୁ ପାଞ୍ଚବର୍ଷ ପାଠ ପଢ଼େଇବି ସେ କି ବାବୁ ! ବାବୁ ନା ଆବୁ ।"

ସମସ୍ତେ ହସି ହସି ଗଡ଼ି ଯାଅନ୍ତି । ସତ୍ୟସୁନ୍ଦର ପାଟିଟା ଆଁ କରିଦିଏ, ଏତକବେଳେ ଯେ ରେଜାଟା ତା କାନରୁ ପାନଖିଲଟି ଫିଟେଇ ସତ୍ୟସୁନ୍ଦର, ପାଟିରେ ଦେଇ ଦେଇ କହେ, "ସପନା ! ତୁ ଯିମିତି ହଉଚୁନା, ଯେବେ ବାବୁଙ୍କଠୁ ପାନେ ପାଇବୁ ଯେ, ମନ ଘର ଧରିଯିବ । ମୂରୁଖର 'ସି' ଅକ୍ଷର ବିବର୍ଜିତ, ଇଏ ପୁଣି ପାଠ ପଢେଇବ ବାବୁଙ୍କୁ ! ଏଥର ବାବୁ ଆସୁ, ତୋ ଗୁମର ସବୁ ଖୋଲିଦେବି ।" ସ୍ୱର ବଦଳେଇ ଶଶୁରାଇକୁ କହେ, ଶଶୁରାଇ ! ହେଲେ, ବାବୁଟାକୁ ଦେଖିଲେ ମୋତେ ବଡ଼ ବିକଳ ଲାଗେ, ଫୁଙ୍କିଦେଲେ ପେଟ୍ରୋଲଟାଙ୍କି ଯାଏ ଉଡ଼ିଯିବ । ଆଖି ଦୁଇଟା ଭିତରକୁ ଗାଢ଼େ ଗାଢ଼େ ପଶିଗଲଣି । ଗାଲ ପଶିଗଲଣି ଅପିମିଆଙ୍କ ପରି, କ'ଣ ବାବୁ ଚଲମ ଫିଲମ ଟାଣେ ନା କ'ଣ ?"

ସତ୍ୟସୁନ୍ଦର ହସି ହସି କହେ, ନା···ନା···ବାବୁଟା ଖୁବ ଚେହେରା-ବାନ୍ ଆଗେ ଥିଲା, ଏବକୁ ଦୁହ ଦୁଃଖରେ, ଚିନ୍ତାରେ ଇମିତି ଟିକିଏ ଝଡ଼ି ଯାଇଚି । ଆମେ ସିନା କହୁଚେ, ଘର ଖଣ୍ଡିଏ କଲେ ମଣିଷର ଛଅପା ରକତ ଶୁଖିଯାଏ । ବାବୁ ବଡ଼ ଘରର ପିଲା, ଖାଇବା ପିଇବା ବେଶ୍ ଭଲ । ମୁଁ ତାଙ୍କ ଘରେ ଥରେ ଦି'ଥର ଖାଇଚି । ମା' ତ ବାବୁଙ୍କଠୁ ଆହୁରି ଭଲ, ଗୋଟେ କ'ଣ ବଡ଼ ଗୁକିରି କରିଚନ୍ତି, ଦେଖିବାକୁ ରାଜରାଣୀ ପରି ଚେହେରା, ରାଗ ତାଙ୍କ ସୀମା ମାଡ଼ିନ; କିନ୍ତୁ ବାବୁଟା ଅଣ୍ଡା ଦିନାସର ଲୋକ ଯେ, ରାଗିଲାବେଳେ ଦୁର୍ବାଶା । ମୁହଁରେ ପଶି ପାରିବନି ମଣିଷ ।

କଥାବାର୍ତ୍ତା ଚାଲିଥାଏ, ତାରି ଭିତରେ ସାଙ୍ଗବାଲା ଜଡ଼ା ମସଲାରେ ସିମେଣ୍ଟ ମାରି ଆସୁଥାନ୍ତି । ସତ୍ୟସୁନ୍ଦର ଶୁଖିଲିଆ ବାଲିଆ ମସଲା ପକାଇ ପଥର ବସାଉ ଥାଏ । ରେଜା ସିମେଣ୍ଟ ବାଲି ଏକାଠି ମିଶାଇ ପାଣି ନ ଦେଇ ଝୁରୁ ଝୁରିଆ ବାଲି କଡ଼େଇରେ ନେଇ ଦୁ ପଥର ମଝିରେ ଅଜାଡ଼ି ଦେଇ ଯାଉଥାଏ ।

ସତ୍ୟସୁନ୍ଦର କୁଲି ମୂଲିଆଙ୍କୁ ମଝିରେ ବତାଏ, "ତମେ ଗୁଡ଼ାକ ମଣିଷ ହେବନି, ଯେତେ କହିଲେ ବାବୁଙ୍କ ଉପରେ ନଜର ରଖିଥିବ, ହେଲାନି । ବାବୁ ମଝିରେ ମଝିରେ ଏଇମିତି ଚେକ୍ ଚୁକ୍ କରିବାକୁ ଚାଲି ଆସିବେ । କ୍ୟାପିଟେଲ୍ ରେ ତ ଚାରିଆଡ଼େ ସାହା, ସବୁ ଆଡ଼ିକୁ ନଜର ରଖ । ବାବୁଟା ଯେତିକି ଥଣ୍ଡା, ସେତିକି ଗରମ । ସେ ଆସିଲେ ତୁନ୍ ତାନ୍ କାମ କରି ଯିବ, ତା ଆଗରେ ହେଁ ହେଁ ଫେଁ ଫେଁ ହେବନି । ବଡ଼ ଲୋକଆନା, ସେମାନଙ୍କୁ ଏ ଗୁଡ଼ାକ ଭଲ ଲାଗେନା । ସମସ୍ତଙ୍କୁ କହିଲି, ଏ ଶଳା ସପନା, ଶଳା ମାଇକିଆ, ଏ ଘଇତା ଖାଲି କର୍ଣ୍ଣିକୁ ପାରିଲାନି । ଏ ଠିକଟା ଏମିତି ହେଲେ ବାଲିଗଦା ଚମକିଲା, ପଥର ଗୁଡ଼ାକ ନଅଁରୁ ଉଠି ନାଚିଲେ, ବୋର୍ଡ ଝାଳି ଉଠିଲା ପଡ଼ିଲା । ତମ ଠିକଟାଙ୍କୁ ଏଥର ବଦଳେଇ ଦେବ । ମଣିଷକୁ ନ ହେଲେ ଅପଦସ୍ଥ କରିଦେବ ତମେ ଗୁଡ଼ାକ । ହଇବେ ମାଇକିଆ ଦଳ, ମୋ କଥା ମନେରଖ, ନ ହେଲେ ଘରେ ବସି ଡମ୍ବ ଗଣୁଥିବ ।" ବାବୁ ଗୁଡ଼ାକେ ସମ୍ମାନରଙ୍କ । ତାଙ୍କୁ 'ସାର୍' ଶବ୍ଦଟା ଶୁଣାଇ ଦେଲେ ତାଙ୍କ ମନଟା ଭାରି ଖୁସି । ମନେରଖ ଏଥର ବାବୁଙ୍କୁ 'ସାର୍' ବୋଲି କହିବ । ହଁ ସାର୍, ଯାଉଛି ସାର୍, ନଉଛି ସାର୍, କରୁଛି ସାର୍, ନଅନ୍ତୁ ସାର୍, ଦଅନ୍ତୁ ସାର୍ ଏଇମିତି କହିବ ! ସପନା ତା ପାନଖିଆ ଦାନ୍ତ ମାଢ଼ିକି ଖୋଲି ଦେଇ କହିଲା, "ଠିକ୍ ଅଛି"

"ଏଣେ ଡାକୁଥିବୁ ସାର୍ ସାର୍
ତେଣେ ପକାଭାକ ହୋଇବୁ ପାର୍ ।"

ସତ୍ୟସୁନ୍ଦର ରାଗିଯାଏ । କହେ, "ସପନା ! ତୁ ବଦ୍ମାସ୍ ସିମିତି ହଉଚୁନା, ଦିନେ ଏମିତି କରଣି ଦିହ ଖାଇବୁ ଯେ ତୋର ପାହାଡ଼ ପରି ବାହାରା ଦାନ୍ତ ଗୁଡ଼ାକ ଏକାଥରକେ ଖସି ପଡ଼ିବ । ଶଳା ନକଲିଆ କଥା କହୁଚୁ ନୁହେଁ ! ବାବୁ ଜାଣନ୍ତେ ଏକଥା ପଡ଼ିଲେ ଏକାଥରକେ ଅଜଲ୍ ଭୁଡ଼ୁମୁ କରିଦେବ । ଜାଣିଚୁ, ଆଖିଥିବ ଦେଖୁଥିବୁ, କାନଥିବ ଶୁଣୁଥିବୁ, ହେଲେ ପାଟିରୁ କଥା ବାହାର କରିବୁନି । ସାବଧାନ କହି ଦଉଚି ।"

ସପନା ନିଜ କାନ ଦୁଇଟା ମୋଡ଼ି ହୋଇ ନିଜ ଗାଲକୁ ଦି' ଥାପଡ଼ ଦେଇ ହସି ହସି କହିଲା, "କକା...ଆଉ ଦନେ ପେଟ କଥା ପାଟିକୁ ଆସିବନି । କାନ ମୋଡ଼ିହେଲି । ତେବେ ସେ ଗୁଡ଼ାକ ପେଟରେ ରହି ରହି ଯଦି କବଚ ହୋଇଯିବ ନଡ଼ାତେଲ ଖାଇ ଗାଁରେ ପଡ଼ିଛେ ସଫା କରିବ...ଇମିତ ସ୍ୱାଇଟ୍ ଉପରେ ନୁହେଁ ।

ହସି ହସି ସମନ୍ତେ ବେଦମ ହୋଇଗଲେ । କିଏ କହିଲା, "ଜାବେ ତତେ ନଡ଼ା ତେଲ ଖାଇବାକୁ ପଡ଼ିବ ।"

—ହଁ...ସାର୍ ।

—ଜବେ ସାର୍ କ'ଣ ଆମକୁ !

—ସାର୍ ସାର୍ ବୋଲି ଏଥର ସମସ୍ତଙ୍କୁ କହିବ ସେ ଅଭ୍ୟାସଟା ରହିଯିବ । କଣି ପଚାରିଲା, "ମୁଁ ଡାକିଲେ ସାର୍ ବୋଲିବୁ ନା ?"

"ତତେ...ତତେ ସାର୍ କହିବ ନା ସାରଆଣୀ କହିବ । ବୁଝିଲ କକା, ଏଇ କଣିକୁ ତମେ ଇମିତ ମୁଣ୍ଡ ଦେଇଚ ଯେ ସେ ଆମ କାହାରି କଥା ଶୁଣୁନି । ତମ ବଳ ପାଇଚି ବୋଲି ତା ପାଟିରୁ ଇମିତ କଥା ବେଳେ ବେଳେ ବାହାରୁଚି ଯେ କାନରେ ମଣିଷ ଶୁଣିବନି । ଆମେ ଅଣ୍ଡିରା ପିଲା ହୋଇ ବି ଆମ ପାଟିରେ ସେ ସବୁ କଥା ପଶୁନି । ମୋତେ କ'ଣ, ଏଥର ତାକୁ ଶାସନ କର, ତା ପାଟିକୁ ଜବତ୍ କର । ସେ ଯଦି କେତେବେଳେ କ'ଣ ବାବୁଙ୍କୁ କହିଦେବ ନା ଏକାଥରକେ ଦଫାରଫା ଶେଷ ।"

"'ନା.. କହିବନି ନା ! ବାବୁବୋଲି ଡାକିଯିବ । ତା' ବାବୁପଣିଆ ତା' ଘରେ । ଆମ ଉପରେ ସେ କିଏ ? ଦେଖିବୁଟି, ବାବୁଟା ଯଦି କେବେ କ'ଣ ମୋତେ କହିବ, ତା ହେଲେ ତା ସାତ ପୁରୁଷ ଉଖାଳି ଦେବ, ତା ତଣ୍ଟି ଝୁଣ୍ଟି ଦେବ । ଦେଖୁନୁ ସେଦିନ 'ମାଇକିନା' ବୋଲି କହିଦେଲା ଯେ ପାଠ ଶିଖେଇ ଦେଲି, ଏକାଥରକେ ଚୁପ୍, ଆଉ ତା' ପାଟି ଫିଟୁନି ।' ତମେ 'ସବ୍ ସାର୍ ଫାର୍ କହ, ମତେ ସେ ଗୁଡାକ କହିଆସିବନି ।

ସତ୍ୟସୁନ୍ଦର କଥାର ଖିଅ ଧରି କହିଲା, "ବୁଝିଲୁ କଣି, ସେଦିନ ରୁ ଯାହା ଶୁଣେଇଲୁନା, ବାବୁ ତା ସାତ ଜନମରେ ଶୁଣିନଥିବ । ମୁଁ ମନେ-ମନେ ଭାରି ଖୁସିହେଲି । ମଝିରେ ମଝିରେ ଇମିତ ପାନେ ପାନେ ନ ଦେଲେ

ତାଙ୍କ ମୁହଁ ବନ୍ଦିଯିବ । ମନେରଖ, ବାବୁ ତମକୁ ଗାଳି ଦେଲାବେଳେ, ମୁଁ ତମ ସପକ୍ଷରେ କିଛି କହିବନି, ବାବୁ ପକ୍ଷ ହୋଇ ତମକୁ ଓଲଟି ତାଗିଦ୍ କରିବ । ନ ହେଲେ କାମ ମିଳିବନି ଯେ । ବାବୁଙ୍କୁ ଟିକିଏ ଚେକାଚେକି କରିଦେଲେ କାମ୍ ଫତେ । ଗାଳି ଗୁଲଜ୍ ଯାଏ କଥା ଯିବ କାହିଁକି ? ମିଠା କଥା କହିବା ଆମର ବ୍ୟବସାୟ । ତାଙ୍କମାନଙ୍କ ପାଖରେ ଧନ, ସମ୍ପତ୍ତି, କ୍ଷମତା ଠୁଳ ହୋଇଛି, ସେମାନେ ବୁଝନ୍ତି ଆଉ ସମସ୍ତଙ୍କୁ ନିଜର ପ୍ରଜା ବୋଲି ମନେ ମନେ ଭାବନ୍ତି । ଜମିଦାର ନିଜ, ସ୍ତ୍ରୀ, ପିଲା ଟିଲା···ସମସ୍ତଙ୍କପାଇଁ ସେଇ ଭାବନା ଉଣା ଅଧିକେ ଥାଏ । ମିଠାକଥା ତାଙ୍କ ପାଖିକୁ ଆସିବ କୋଉଠୁ । ମନଖୋଲା ହସ ଟିକିଏ ସେ ଶିଖିବେ କୋଉଠୁ । ମଦ, ଚୁପା, ଆଦବ କାଇଦାର କଥା, ହସ, ଚାଲିଚଳନ । ସେମାନେ କନ୍ଦର କାଗଜ ଫୁଲ, ଆମେ ତ ସବୁ ବଣମାଲତୀ । ହସିବା ହସେଇବା, ରସିବା, ରସେଇବା, ବାସିବା ବାସେଇବା ଆମର କାମ । ସାର୍ ସାର୍ କହି ଚେକାଚେକି କରିଦେଲେ ଯୋ ଗୁଡ଼ାକ ଆଖି ପିଛୁଳାକେ କଣା ହୋଇ ଯାଆନ୍ତି । ତେଣିକି ପଇସା ଆପେ ଆପେ ଆସିବ, ଯିବ କୁଆଡ଼େ ।

ସପନା ପଦନା ଏକା ସାଥିରେ କହିଲେ, "ଠିକ୍ କହିଲ · ଠିକ୍ କହିଲ ଶଶୁରାଇ । ସାର୍ ସାର୍ କହି ଇଏ ତ ସବୁ ପକେଇ ଦେବୁ ଯେ ବାବୁ ହାତରୁ ଚକ୍କର ଖାଇବନି । ଜଇଁଠାକୁ ବଦଳେଇ ଦାଉନ କକା, ସେ ଆମ ସାଥିରେ ପାରିବନି, ତା ମୁହଁ ଖରାପ । ଦେଖୁନ ତମ ପାଖରେ ପୋଷା ବିଲେଇ ପରି ମ୍ୟାଉଁ ମ୍ୟାଉଁ ହେଉଛି, ହାତପାଦ ଗୁଟି ପକାଉଛି, ବାବୁଙ୍କୁ ଦେଖିଲେ ଲାଙ୍ଗୁଡ଼ ଅଗରେ ଠିଆ ।"

"କାଲିଠୁ ସେ ମୋ ସାଥିରେ ଆଉ କାମକୁ ଯିବ । କେବେ ନବେଇ, ତୁ ସବୁଦିନେ ହେଲପର୍ ହୋଇ ସାତଟଙ୍କା ପାଉଥିବୁ ନା କାମଧାମ କରି ମିସ୍ତ୍ରୀ ହେବୁ । ଦେଖ, କାଲିଠୁ ତୁ ଏଇଠି ପଥର ଯୋଡ଼େଇ ଏମାନଙ୍କୁ ନେଇ କରିବୁ । ମଝିରେ ମଝିରେ ମୁଁ ଆସି ଦେଖିଦେଇ ଯିବି । ବାବୁ ଆସିଲେ କହିବ, ଏଇ ଅମୁକ ଠିକ ଯାଇଛି, ସମୁକ ଠିକ ଯାଇଛି, ଅବ ତ ସାଇଛି, ଆସିଯିବ ଆପଣ ବ୍ୟସ୍ତ ହୁଅନ୍ତୁନି । ମନଦେଇ କାମ କରିବ । ବାବୁ ବିଗିଡ଼ିଲେ କହିବ, ଅଜ୍ଞା, ଆପଣଙ୍କର ଏଇ ଗୋଟିଏ କାମରେ ପେଟ ପୁରିବ ? ପାଞ୍ଚ ଜାଗାରେ ପାଞ୍ଚ କାମ ନେଇଚୁ, ଶଶୁରାଇ ଖାଲି ଆପଣଙ୍କ ମୁହଁକୁ ଚାହିଁ ଆପଣଙ୍କ କାମରେ ଏତେବେଳଯାଏ ଖଟୁଚି । ଆଜି ଆଉ ବାବୁମାନେ ତା' ଉପରେ ଖପା । ଅଜ୍ଞା, ସେ ତ ଆମର ମାଲିକ, ଆମେ ତ ତା'ର ମିସ୍ତ୍ରୀ ମୂଲିଆ । ମାଲିକ ତ କାମ କରିବ

ଆମେ ସବୁ କରିବୁ କ'ଣ ? ଆପଣଙ୍କର ତ ଠିକା କାମ, ଯେତିକି କରିବ ସେତିକିର ପଇସା ନେବ, ଭାବୁଛନ୍ତି କାହିଁକି ?"

ଜଣେ ସେଥିରୁ ଉଠିପଡ଼ି କହିଲା, "ବାବୁଟା କ'ଣ କଥାରେ ଆମର ଚଳିଯିବ ! ଦେଖିବ ଶଶୁରାଇ, ଗୁରୁଠାରୁ ଚେଲାଏ ବଳିଯିବେ । ଏମିତି ବେଳ ଆସିବ ଯେ, ବାବୁ ତମକୁ ଆଦୌ ଖୋଜିବେନି, ତା ପାଖିରେ କହିବ, "ଏ ପିଲା-ମାନେ ଭଲ କାମ କରୁଛନ୍ତି, ତମେ ସତ୍ୟସୁନ୍ଦର ନ ଆସିଲେ ଚଳିବ । ହେଲେ କାଲି ଏ ଟୋକା ଦ'ଇଟା ଯାହା କଲେନା, ମଣିଷର ଇଜ୍ଜତ ଦ'କଡ଼ାର ହୋଇଯିବ । ମିସ୍ତ୍ରୀ ହେଇ କଏ ବା ହେବାର ଫେର ନକରୁଛ, ଏ ଦେ ପୋ, ପଦନା ଆଉ ସପନା, କେତେବେଳେ ଯାଇ ସୁ' ଦୋକାନୀ ସାଥିରେ ସଲ୍ଲା ହେଇ, ବଡ଼େ ସିମିଣ୍ଟିରେ ବସ୍ତାଏ ସରୁ ବାଲି ମିଶାଇ ତାକୁ ଦି'ବସ୍ତା କରିଛନ୍ତି । ନଗଦ ପଚିଶ ଟଙ୍କା ଅଧିକ ମିଳିଯିବ, ତିନିଜଣ ବାଂଟି ନେବେ । ବାବୁଟା ନେଇଗଲା ସିନା, ବାଟରେ ସାଇକେଲରୁ ବସ୍ତାଟା ଖସି ପଡ଼ିଲା । ସିଦୁ ରାସ୍ତା ତ ଦର୍ପଣ ପରି ହେଇଚି । ବସ୍ତାରୁ ଝଡ଼ି ପଡ଼ିଲା ସରୁବାଲି ଦି'କି ତିନି ଅଞ୍ଜୁଳା, ସେଇଠୁ ତ ଖପ୍ପାହେଇ ଫେରିଲା । ଏଥିରେ ମାଡ଼ଖାଇଲା ସୁ' ଦୋକାନୀ । ଯୋଗକୁ ମୁଁ ଥିଲି ବୋଲି କଥାଟା ସବୁର୍ ହୋଇଗଲା; ଭିତରକୁ ପଶିଯାଇ କାଢ଼ି ନାଦି ଦି' ଆପଡ଼ ସପନା ଆଉ ପଦନ ପିଠିରେ ଥୋଇଦେଲି । ହାତ୍ଯାକରି କହିଲି, "ଶାଳା, ତମ ଦି'ହିଙ୍କ ହାତରେ ବୋର୍ଡରୁ ବାଳ ପଡ଼ିଲା ଶୁଖିଲା ମସଲାତକ, ପଠେଇଲି ରଖିଦବାକୁ ଯେ ତମେ ତାକୁ ବିକି ଦେଇଚ । ବାବୁ ଅବକା ଫେରି ନଥିଲେ ମୋତେ ତ ବାପଠିଆ ମାରିଥାନ୍ତେ । ଶାଳା, ତମକୁ କୋଉ ବିଶ୍ୱାସ ଅଛୁବେ । ବାବୁ ସୁ' ଦୋକାନକୁ ବାଡ଼ଉଚ କାହିଁକି ? ଏ ଶାଳା ହଳକୁ ଛେଚ, ପୁଲିସରେ ଦିଅ । ତାର କ'ଣ ଦୋଷ ?"

ବାବୁ କହିଲେ, "ସେ ବିକିଚି ତା'ର ଦୋଷ ନାହିଁ ଆଉ କା'ର ?" ସୁ' ଦୋକାନୀ ଯେତେହେଲେ ବୁଢ଼ିଆ ପିଲା । ଚଟ୍‌କିନା ମୋ କଥାର ମରମ ବୁଝିଗଲା । କହିଲା, "ବାବୁ ସାବଧାନ, ଦିହରେ ହାତ ଦେଲେ କଡ଼େଇକ ଯାକ ଗରମ ପାଣି ଅଜାଡ଼ି ଦେବି ଯେ ହୃଦରୁ ସିଧା ସିଧା ଫୋଟକା ଉତୁରି ଆସିବ । ମୋ ସିମିଣ୍ଟି ବସ୍ତାଟା ତମକୁ ଦେବାକୁ ଏମାନଙ୍କୁ କହିଲି, ପିଲା ଦୁଇଟା ସେ ବାବୁଙ୍କ ଶୁଖା ମସଲାତକ ତମକୁ ଦେଇ ଦେଲେ, ମୁଁ କ'ଣ ଜାଣିଚି ନା ସେ ଘରକୁ ଯାଇଚ । ମୋ ବସ୍ତାକ ଯିମିତି ସିମିତି ଥୁଆ ହେଇଚି ।"

ମୁଁ ସେଠୁ ମାଡ଼ିବସି କହିଲି, "ହବେ ଶଳେ, ସକଉଚ କରିବେ କଥା, ମୋ କାକପ ମୋ ବସ୍ତା ପାଖରେ ଥୁଅ । ତା ସିମିଣ୍ଟିଟା ଆଣି ବାବୁଙ୍କ ସାଇକେଲରେ

ଲାଦ । ମୁଁ ଯେତେ କହିଲି ଏକାଠି ସମସ୍ତଙ୍କ ମାଲ୍ ରଖିବାର ଉତ୍ତମ ବଲମ ହୋଇପାରିବ ଏଇଟି ହେଲନା, ସଭାଙ୍କୁ ବାଣ୍ଟିଦେଲେ । ଆଉ ସିମେଣ୍ଟଟା ଆଣି ଛାତର ଉପରେ ମାଟି ପରି ଦେଖେଇ ବୋଧବାଧ କରି ଛାଡ଼ିଦେଲେ । ବାବୁ ଜାଣିଲେ ବଦଳ ହୋଇ ଯାଇଥିଲେ, ଏଥର ବଡ଼ିଆ ମାଲ୍ ମିଳୁଛି, କିନ୍ତୁ ସେଥିରେ ପାଏ ପାଉଣ ପାଏ ଅଙ୍ଗାର ମିଶିଛି । ତା ବୋଧ ବି ଧରି ପାରିବନି ।

ସତ୍ୟସୁନ୍ଦର ମୁହଁ ଟିକିଏ ଗମ୍ଭୀର କରି କହିଲା, "ବୁଝିଲ ପିଲେ, କଣ୍ଟ୍ରେ ମାଲିକର ସିମେଣ୍ଟ ଚୋରିକରି ଆଉ ମାଲିକକୁ ଠକିଲେ, ମୁଁ ସେଥିପାଇଁ କିଛି କହୁନି । ସେଥିରେ ପୁଣି ଏଣ୍ଟୁ ଡେଣ୍ଟୁ ମିଶେଇବ, କମ୍ପାନି ତ କିଛି ମିଶେଇଛି, ଦୋକାନୀଙ୍କ ଲୋକ ଲଗେଇ ଦାନପାତ୍ର ମିଶଉଛି ପୁଣି ତମେ ବାକି ଯାହା ଅଛି ପୂରଣ କରୁଛ, ଏଇଟା ଭଲ କଥା ନୁହେଁ । କାମ ତ ଆମେ କରିବା···ସେ କାମ କ'ଣ ରହିବ । ଏତେ ପରିଶ୍ରମ କରି ଯାହା କରୁଛେ ତା' ଯଦି ନ ରହିଲା, ତେବେ ପରିଶ୍ରମର ମୂଲ୍ୟ କ'ଣ ? ପଇସା ନଉଛେ ବୋଲି ଆମ ପରିଶ୍ରମର ନିଜପାଇଁ କିଛି ମୂଲ୍ୟନାହିଁ । କିଏ କେବେ ଆମରି ଏଇ ଲିଙ୍ଗରାଜ ମହାପ୍ରଭୁଙ୍କ ମନ୍ଦିର ଗଢ଼ିଥିଲା, ଆମେ ପୁଣି ଆଜି କହୁଛେ କି ନାହିଁ—"ଆମ ବାପ ଅଜା ଗଢ଼ିଥିଲେ ବୋଲି ।" ଠକିବାକୁ ମୁଁ ମନା କରୁନି, ହେଲେ ଧର୍ମ ସହିଲା ଭଳିଆ ଠକ । ମାଲିକ ସହିଲା ଭଳି ଠକ । ନିଜ ମନ, ବିବେକ, ଆତ୍ମାକୁ କଷ୍ଟ ନଦେଲା ପରି ଠକ । ଏ ସଂସାରଟା ତ ଠକାମିରେ ଚାଲିଛି । ଶିବ ପାର୍ବତୀଙ୍କୁ ଠକି ନାହାନ୍ତି ନା ଅହଲ୍ୟା ଗୌତମ ଋଷିଙ୍କୁ ଠକି ନାହାନ୍ତି । କିଏ କାହାକୁ ନଠକୁଛି । ଧର୍ମ ଦେବତା ପରା ସେଇଥିପାଇଁ ଦେଖିବାକୁ 'ଠ' ପରି । ଦିନେ ସମସ୍ତଙ୍କୁ ଠକି ଦେବେ ବୋଲି ତାଙ୍କ ଚେହେରାରେ ଜଗତବାସୀଙ୍କୁ ତାଗିଦ୍ କରୁଛନ୍ତି । ଧର୍ମ ରଖ, ନହେଲେ ଠକି ଦେବ ।

ସପନା ଟିକିଏ ଭାବପ୍ରବଣ ହୋଇଉଠିଲା, କହିଲା, "କକା, ଧର୍ମଦେବତା ଠକିବ କଣ । ମୁଁ ତା ମରମଟା ପାଉନି ।

କାଇଁ, କାଇଁ କାଇଁ କରି ହସି ପକେଇ କହିଲା, "ଗୁରୁଙ୍କୁ ପଚାରିଲେ···ସେ ବତେଇ ଦେବେ ।"

ସତ୍ୟସୁନ୍ଦର ତାର ତତ୍ତ୍ୱ କଥାକୁ ପୁଣି ଆରମ୍ଭ କଲା, କହିଲା "ସୂର୍ଯ୍ୟ ଦେବତାଙ୍କୁ ଉଇଁଲା ବେଳେ ଦେଖିଛୁ । ତାଙ୍କ ଦେହରୁ ଯେଉଁ କିରଣ ବାହାରେ ସେଇଟା ଧର୍ମର ତେଜ, ତାଙ୍କ ଦେହରେ ମିଶିଛି । ଜଗତକୁ ସେ ପଠେଇ

ଦଅନ୍ତି, ସଂସାରକୁ ଅଧର୍ମ ଅନ୍ଧାରରୁ ରକ୍ଷାକରିବେ ବୋଲି । ଅଧର୍ମ ବେଶି ହୋଇଗଲେ ଯେ କରଣ ଭେଦବନ୍ଧ, ଶେଷକୁ ସେ ନିଜେ ଶୀତଳ ହୋଇଯିବେ । ଖାଲି ରହିଯିବ ତାଙ୍କ '୦' ଶରୀରଟି । ସେ ହେବେ '୦'ର ଅବତାର । ସଂସାର ବୁଡ଼ିଯିବ ।

ପଦନା କ'ଣ ବୁଝିଲା କେଜାଣି, ଆନନ୍ଦରେ ବିହ୍ୱଳ ହୋଇ ନାଚି ଉଠିଲା, କହିଲା "କକା ! ଏଥର ବୁଝିଗଲି···ବୁଝିଗଲି, '୦' ମାନେ ଠକ । '୦' ଟାକୁ ଗୋଲ କହନ୍ତିନି କି ? ହଁ··ଶୂନ ବି କହନ୍ତି । ସତରେ ଯୋଉଠେ ୦ ସେଇଠି ଠକାମି, ସେ କମଟା ଗଲା · ଫଳ ଶୂନ ।

ସପନା ହସି ହସି କହେ, "କକା ସିନା ଆମକୁ ଏତେ କଥା ବତାଉଛନ୍ତି, ହେଲେ ନିଜେ କ'ଣ କରୁଛନ୍ତି ! ଏଇ ଦେଖୁନା, କନ୍ଧ ମୁହଁଟା '୦', ସେ ପୁରା ଠକଲା । କାମନାନ୍ଧି, ଧାମନାନ୍ଧି, କକାତ ପୁଣି ତା '୦' ମୁହଁ-ଟାକୁ ଗୁହିଁ ଠକେ···ଯେତେକ ୦ ମୁହାଁ ସମସ୍ତେ ପୁରା ଠକଲା ।"

ପଦନା କହେ, "ସତରେ କହୁଛଟା ବ '୦', ସେ ବ କମ୍ ଓସ୍ତାଦ ନୁହେଁ-ଦେହରଦନ କାମ, ପଦରଦନ ଠକାମି । ମଣିଷର ଆଖି ତୋଳା ଦଇଟା ବ '୦' । ପୁରାଣରେ ଅଛୁ ପଣ୍ଡିମାନେ ତାଙ୍କ ଆଖିର '୦'ରେ ଠାଣି ହାଣି ସରଗପୁରର ବଡ଼ବଡ଼ ବବାଜୀ ଗୁଡ଼ାକୁ ପସ ଇଙ୍ଗିତ ଠକେଇ ଦଅନ୍ତି ଯେ ସେମାନେ ଅଣ, କମଣ୍ଡଳୁ ଛାଡ଼ି ତାଙ୍କ ଖୋସରେ ବସା ବାନ୍ଧନ୍ତି ।

ସମସ୍ତେ ହସି ହସି ଭୁଇଁରେ ଲେଟିଯାଆନ୍ତି । ଶରୀରର କ୍ଲାନ୍ତି କୁଆଡ଼େ ଉଭେଇ ଯାଏ । ନୂତନ ଉତ୍ତେଜନା, ନୂତନ ଆନନ୍ଦ, ନୂତନ ପ୍ରେରଣା ନେଇ ପୁଣି କାମରେ ଲାଗିପଡ଼ନ୍ତି ।



୮

"ଆଜ୍ଞା ନମସ୍କାର, ବାବୁ ଚିହ୍ନିପାରୁଚନ୍ତି ?"

ପଛକୁ ଚାହିଁଲେ ସମରେନ୍ଦ୍ର, ଗୋଟିଏ କଳା ମଚ୍ ମଚ ମଣିଷ କୋଟରଗତ ଆଖି ଦୁଇଟିରେ ହସର ବିଜୁଳି ଜଳାଇ ତାଙ୍କ ଉଦ୍ଦେଶ୍ୟରେ ହାତ ଟେକୁଛି । ସାରା ଶରୀର ଫୁଲି ଯାଇଛି ଦୁଦୁରା ଫଳ ପରି । ଦେହରେ ସତେ ଯେମିତି ଟୋପାଏ ବି ରକ୍ତ ନାହିଁ । ସେ ପ୍ରତି ନମସ୍କାର ଜଣାଇଲେ । ପଚାରିଲେ—

"କ'ଣ ବାବୁ, ମୋତେ ଡାକୁଥିଲ ?"

"ଆଜ୍ଞା ଆପଣ କ'ଣ ମୋତେ ଚିହ୍ନି ପାରିଲେନି, ମୁଁ ସରି ଦୁଃଖୀ ।"

"ଦୁଃଖୀ ! ଓଃ...ଦୁଃଖୀ, ଆଚ୍ଛା ଆଚ୍ଛା...ହଁ ହଁ ମନେପଡ଼ିଲା ଦୁଃଖିଆ । କିନ୍ତୁ ତମେ ଏମିତି କ'ଣ ଦିଶୁଚ ! କ'ଣ ତମର ହୋଇଚି କି ? ସେ ଦିନଠୁ ଆଜଯାଏ ତମକୁ ଦେଖାନଥିଲି, କୁଆଡ଼େ ଯାଇଥିଲ ନା କ'ଣ ?"

"ମୋର ତ କିଛି ହୋଇନି ଆଜ୍ଞା, ଖାଲି ନାଁ ପାଖରେ ଚେତହରା ମିଶି ଯାଇଚି । ସଂସାରରେ କାହାର ନା ପାଖରେ କାହାର ଚେତହରା କାମ ଧାମ ମିଶେନି ବୋଲି ସମସ୍ତେ କହନ୍ତି । ସେଇ ଆପଣଙ୍କ ସତ୍ୟଯୁଗରକୁ ଦେଖ-ନାହାନ୍ତି, ବିଲକୁଲ ଓଲଟା । ମୋ ମା' ବୋଧହୁଏ ନାଁର ଓଲଟା ଫଳକଥା ଜାଣିଥିଲା, ଭାବିଥିଲା ଦୁଃଖ ନାଁଟା ଦେବି ଯେ ପୁଅ ମୋର ସୁଖ ପାଇବ । ତା' କରମକୁ ଫଳ ଲେଉଟିଲାନି, ନା ଟା ଯାହା ହେଲା, କରମ ବି ତା ହେଲା । ମା'କୁ ବାଟେଇ ଦେବାକୁ ଘାଟକୁ ଯାଇଥିଲି ।"

"ବାଟେଇ ଦେବାକୁ ?"

"ହଁ ମ ଆଜ୍ଞା, ବିଦା କରିବାକୁ । ଆପଣ ତ ଜାଣିଥିଲେ ସେ ବାଧିକା ଝଡ଼ିଥିଲା । ଠିକାଦାର ତ ପଇସା ଦେଲାନି, ଯାହାତାହା ଦି' ପଇସା ନେଇ ଗାଁକୁ

ପଳେଇଲି । ଗାଁରେ ପହଞ୍ଚିଲି ବେଳକୁ ବୁଢ଼ୀ ପନ୍ଦରଦିନ ଜରରେ ସଢ଼ି ସଢ଼ି ତା' ପ୍ରାଣବାୟୁ ଉଡ଼ିଯିବା ଉପରେ । ଗାଁ ଲୋକେ ଚୁପ୍ ହୋଇଗଲେ, କହିଲେ "ଆରେ ବୁଢ଼ୀର ଜୀବନ ଯାଉନି, ତତେ ଦେଖିବ ବୋଲି ବହୁତ ଖୋଜୁଥିଲା । କହିଲା ଖବର ଦେବାକୁ, । କିଏ ବା ତୋ ଠିକଣା ଜାଣେ ଯେ ଖବର ଦେବ । ଯାହାହେଉ ତା' ନିଃଶ୍ୱାସ ତତେ ଟାଣି ଆଣିଲା ।"

ମୁଁ ମା' ପାଖକୁ ଗଲି, ଦେଖିଲି ପଞ୍ଜରାପଞ୍ଜରା ଦିହସାରା ଘା, ବାସିଗଲାଣି, ସାଇଲୋକେ କିଏ କେତେବେଳେ ଆସି ତୁଣ୍ଡି ମୁହଁ ଦେଇଦିଅନ୍ତି । ମା...ମା... ବୋଲି ଖୁବ୍ ଜୋରରେ ପାଟିକରି ଡାକିଲି, ଦେଖିଲି ଆଖି ଡୋଳା ଦି'ଟା ଏପାଖ ସେପାଖ ଟିକିଏ ହଲିଲା ଦିହଟା ଟିକିଏ ହଲ୍ ଚଲ୍ ହେଲା । ମୋ' ମୁହଁକୁ ଆଉଁସି ଦେବାକୁ ବୋଧହୁଏ ହାତ ଉଠେଇଲା କିନ୍ତୁ ପାରିଲେନି । ଦେଖିଲି ଆଙ୍ଗୁଳି ଦିଇଟା କାନ୍ଥଉପରେ ଭରି କଷ୍ଟରେ ମେଲେଇଛି । ତା' ମନକଥାଟା ତା' ଭିତରୁ କିଛି ଠଉରେଇ ପାରିଲିନି ଅଜ୍ଞା । ସେ କ'ଣ ଠାରୁଥିଲା । କିଛି ବୁଝି ପାରିଲିନି । ତା' କାନ ପାଖରେ ଆଉଥରେ ଜୋରରେ ଡାକିଲି, ମା...ମା...ମା...ମୁଁ ଦୁଃଖୀ...ଆସିଛି । ତୋ ଦୁଃଖୀ ପଙ୍ଖାଳକୁ ଟିକିଏ ଚାହାଁ ଏତେ ଲୋଭ କରିଥିଲୁ...ଚାହିଁବୁନି ? ଏଥର ତା' ଭିତରୁ ଗୋଟାଏ ଶବ୍ଦ ଗଁ ଗଁ ହୋଇ କଣ୍ଠ ବାହାରି ଆସିଲା । ବୁଝିହେଲାନି, ତେବେ ମୁଁ ଜାଣିଲି ମା'ର ଚେତା ଚଇତନ ଅଛି । ମୋ ମା' ଡାକର ଉତ୍ତର ଦେଲା । ମା'କୁ କୁଆ ଡାକିବ, ସେ ପୁଣି ଉତ୍ତର ଦେବନି ! କୁଆ ନାହିଲେ ପରା ମା'ର ମଡ଼ା ଚହଲି ଉଠିବ ।' ଜୀବନ ଦୀପର କୋଉ କଣରେ ତେଲ ଟିକିଏ ଲାଗିଛି, ସଳିତା ଟାଣୁଛି ।

ଆଚ୍ଛା ଦୁଃଖୀ, ବୁଢ଼ୀ କେତେ ଦିନ ଆଉ ବଞ୍ଚିଲା ? ଖୁବ୍ ଗମ୍ଭୀର ହୋଇ ପଚାରିଲେ ସମରେନ୍ଦ୍ର ବାବୁ ।

ଆଜ୍ଞା, ବେଶି ସମୟ ନୁହେଁ ଠିକ୍ ଏତିକି ବେଳେ ଆମ ଗାଁର କୁମୁଟି ମହାଜନ ପାଞ୍ଚବୁଢ଼ା ଆସି ପହଞ୍ଚିଲେ । ମୋତେ କେତେ ବୋଧ ବାଧ ଦେଲେ । କହିଲେ ବୁଢ଼ୀ ଯିବା ଆଗରୁ ଜାଣି ଗଲାଣି ଯେ ତା ଗଣ୍ଠିଧନ କୋଳକୁ ଫେରିଛି । ତା' ମା ମନଟା ଆନନ୍ଦରେ ଦିହଟାକୁ ଚହଲେଇ ଦଉଛି । ତତେ ଆଉଁସିବାକୁ ହାତ ଉଠଉଛି, କ'ଣ ଖାଇବାକୁ ଦବ ବୋଲି ଆଖି ଡୋଳା ଦିଇଟା ଏପାଖ ସେପାଖ ବୁଲଉଛି । ଏଇ ଯୋଉ ଆଙ୍ଗୁଳି ଦିଇଟା ଟେକିଛି ବୋଧ ହୁଏ କୋଉଠେ ଶହେ ଦଶଟି ରଖିଛି ଯେ, ଠାରୁଛି...ଖୋଜିବୁ । ନିଶ୍ଚୟ ପାଇବୁ । ସେ ମହାଜନ ମୋ

କାନ ପାଖକୁ ଲାଗି ଆସିଲା । ଫୁସ୍ ଫୁସ୍ କରି ଅଜା ଯାହା କହିଲା, ମୋ ପାଟିରେ ମୁଁ ଧରିପାରୁନି ।"

ଦୁଃଖୀ କଇଁ କଇଁ ହୋଇ କାନ୍ଦିଲା. ଆଖିରୁ ତାର ଧାର ଧାର ଲୁହ ବାହାରି ଆସିଲା, କହିଲା ଆଜା ସେ ଯାହା କହିଲାନା ମୋ ବୁକୁ ବିଦାରି ହୋଇଯାଉଚି ଓହୋ ମଣିଷ କେମିତି ହୋଇପାରେ ।"

"କଣ କହିଲା ଦୁଃଖୀ ?"

ଆଜା ମୋ ପାଖକୁ ଲାଗିଆସି କାନରେ ଖୁବ୍ ଚୁପ୍ ଚୁପ୍ କରି କହିଲା, ଭୂତ ଘରେ ନଥିଲୁ, ବୁଢ଼ୀକୁ ବାଙ୍କସାଙ୍କ ଦେଇ ଏଯାଏ ଚଳେଇ ନେଲୁ, ମୁଁ ଥାଉ ଥାଉ ଖାଇବା ବିନା କ'ଣ ବୁଢ଼ୀଟା ମରିଥାନ୍ତା । ହିସାବରେ ଗଣ୍ଡେ ଟଙ୍କା ହଉଚି । ସୁବିଧା କରି ଦେଇଦେବୁ, ନହେଲେ ବୁଢ଼ୀ କାନରେ ଯୋଉ ନୋଳି ଦିଇଟା ଅଛି ସେ ଗୁଳିଗଲା ପରେ ସେଥିରୁ ଗୋଟେ ଦେଇଦେବୁ । ବାକିତକ ପୂରି ହୋଇଯିବ । ବୁଢ଼ୀ ଋଣରୁ ମୁକ୍ତ ପାଇବ । ତାକୁ ସରଗ ମିଳିବ । ବୁଢ଼ୀକୁ ଶୁଦ୍ଧ ହେବାଲାଗି ପଇସା ଅଭାବ ହେଲେ ଆଉ ନୋଳିଟା ବି ଦେଇ ଦେବୁ । ମୁଁ ଆଉ ଗଣ୍ଡେ ଦେଇ ଦେବି । ତାକୁ କିଛି କହିପାରିଲିନି ସିନା; ହେଲେ ଭାବିଲି, ଶାଗୁଣା ମଲା ଜୀବର ଗନ୍ଧ ପାଇ ଆସିଲା ପରି ଏ ଶାଗୁଣାଟା ବି ମୋ ମା'ର ମରଣ ଗନ୍ଧ ପାଇ ନ ମରୁଣୁ ଆସି ପହଞ୍ଚିଯାଇଚି । ନିଶ୍ଚୟ ସେ ଗୁଳିଯିବ । ତାକୁ ବିକଳ ହୋଇ ଚାହିଁଲି, ଦେଖିଲି ସେଇ ଆଙ୍ଗୁଳି ଦିଇଟି ଉପରକୁ ଉଠିଚି, ଭାବିଲି ହରିନାମ ପାଇଁ କହୁଚି । ତା' କାନପାଖରେ ଆଉ ମା ମା ନଡ଼ାକି ରାମ..ରାମ କହିଲି । ଆଙ୍ଗୁଠି ଦିଇଟି ତଳକୁ ଖସି ଆସିଲା, ଆଖି ଡୋଳା ଦିଇଟି ଏପାଖ ସେପାଖ ହେଉଥିଲା ଯେ, ଆସ୍ତେ ଆସ୍ତେ ଥିର ହୋଇଗଲା । ତୁଳସୀ ପାଣି ଆଣୁ ଆଣୁ ପ୍ରାଣ ବାୟୁ ଉଡ଼ିଗଲା ଆଜା । ତାକୁ କୁଣ୍ଢେଇ ମା...ମା ବୋଲି ରଡ଼ିଛାଡ଼ିଲି । ଯୋଉ ଗଛ ଛାଇରେ ବସି ମୋ ଦୁଃଖିଲା ଜୀବନ ଶୀତଳ ସୁଲୁସୁଲିଆ ପବନ ଟିକିଏ ପାଉଥିଲା, ସେଇଟା ଉପୁଡ଼ି ପଡ଼ିଲା ଆଜା ।

ଦୁଃଖୀ କୋହ ସମ୍ଭାଳି ପାରିଲାନି, ଅଧୀର ହୋଇ କାନ୍ଦିଉଠିଲା ପିଲାଟି ପରି । ସମରେନ୍ଦ୍ର ତାକୁ ବୋଧ ବାଧ ଦେଇ କହିଲେ, "ଦୁଃଖୀ ଜନମ ମରଣ ସଂସାରର ଖେଳ । ବୁଢ଼ୀ ତା' ଖେଳ ସାରି ଗୁଳିଗଲା ତା'ର ଲାଭ ଆମର କ୍ଷତି । କ'ଣ କରିବ, ସହିବାକୁ ପଡ଼ିବ । ଆଉ ଲୋକମାନେ ସାହାଯ୍ୟ କଲେ ତ ?

ଦୁଃଖୀ କୋହ କମ୍ପିତ କଣ୍ଠରେ କହିଲା, "ବାବୁ ଏ ସଂସାରଟା ଅସଲବେଳେ ତା'ରୂପ ଦେଖାଇଦିଏ । ଅନ୍ୟବେଳେ ବଡ଼ ସୁନ୍ଦର । ଘା' ଗନ୍ଧରେ ଲୋକେ କ'ଣ

ମଡ଼ା କାନ୍ଦେଇଥାନ୍ତେ । ଉଦ୍ଧବା ଜଣେ ଆସିଥାନ୍ତା, ସେଇ ମାଲ୍ ଭାଇମାନଙ୍କୁ ଉକ୍ତ ପୁଞ୍ଜାଏ ତ ଦେଇପାରିନଥାନ୍ତି । ନୂଆ ସୂତା ଖିଏ ମଧ୍ୟ ଯୋଗାଡ଼ କରିପାରିନଥାନ୍ତି । ମୋ ମା'ର ସେଇ ସାତସିଆଁ ସନ୍ତର ଗଣ୍ଠିଆ ଚିରା ଲୁଗାରେ ଦେହ ଘୋଡ଼ାଇଲା, ଗଲାବେଳେ ବି ନୂଆ କନା ଖଣ୍ଡେ ଦେଇ ପାରିଲିନି । ଅଜ୍ଞା ସତ କହୁଚ, ଭଗବାନ ଖୁବ୍ ବଡ଼ ଲୋକ । ଆପଣ ତ ମୋ ପୁଲୁକିଆ ଦେହକୁ ଦେଖୁଚନ୍ତି, ଫୁଙ୍କିଦେଲେ ଉଡ଼ିଯିବ, ହେଲେ ସେତେବେଳେ କେଉଁଠୁ ଏମିତି ବଳ ଆସି ପହଞ୍ଚିଲା ଯେ ମା'କୁ ଶନୋ ଶନୋ ଉଠେଇ କାନ୍ଧରେ ପକାଇଲି । କାଠ ଖଣ୍ଡ ପାଇଲିନି, ଯାହାଲଟେ ପାଇଲିନି । କାମ ଉପରୁ କେବେ ଛଡ଼ ଖଣ୍ଡେ ଆଣିଥିଲି ସେ ଖଣ୍ଡ କୁଆରେ ଯୋତା ହୋଇଥିଲା, ବୁଢ଼ୀ ସେଥିରେ କୁକୁର ଛୁଆଟାଏ ବାନ୍ଧିଥିଲା । ସେ ଖଣ୍ଡକ ଧରି ଏକା ମୁହାଁ ହୋଇ ନଈଆଡ଼କୁ ମୁହାଁଇଲି ।

"ଇସ୍ ତତେ କେହି ଟିକିଏ ସାହାଯ୍ୟ କଲେନି ?" ପଚାରିଲେ ସମରେନ୍ଦ୍ର ।
"ଭଗବାନ ସାହାଯ୍ୟ କଲେ, ଏତେ ବଳ ଦେଲେ, ଆଉ କ'ଣ ଦେଇଥାନ୍ତେ । ମୁଁ ମୁନିଆଁ ଛଡ଼ିଟି ଧରି, ମା'ର ମଡ଼ାକୁ କାନ୍ଧରେ ପକେଇ ନଈ ଭିତରକୁ ପଶିଲି । ଅଣ୍ଠିଆ, ଅବାଟିଆ ଦେଖି ବାଲି ଉପରେ ମା'କୁ ଶୁଆଇଦେଲି । ଶେଷଥର ପାଇଁ ତା ମୁହଁକୁ ଚାହିଁଲି । ତା ଅଚଳ ହାତଟା ଉଠାଇ ମୋ ହୃଦୟରେ ବୁଲାଇ ଆଣିଲି । ସେ ଇ ମା' ପଣିଆର ଶେଷ ଅଭିଳାଷ । ପାଦ ଦୁଇଟି ଉପରେ ମୁଣ୍ଡ ରଖି ମୁଣ୍ଡିଆ ମାରିଲି । ମୋ କାନ୍ଧରେ ଯେଉଁ ପୁରୁଣା ଗାମୁଛାଟି ଥିଲା, ତାକୁ ଆଣି ତା' ଉପରେ ଘୋଡ଼େଇ ଦେଲି । ଛଡ଼ ଖଣ୍ଡକରେ ଭୁସ୍ ଭୁସ୍ ବାଲି ଖୋଳି ପକେଇ ତାର ପାପରେ ଗାତଟିଏ ଆଣ୍ଠୁଏ ଗଭୀର କଲି । ନଈକୁ କହିଲି, "ତୁ ଆମ ସମସ୍ତଙ୍କର ମା, ଆମକୁ ପାଳୁଚୁ । ତୋ ଛୁଆକୁ ତୋ କୋଳରେ ଶୁଆଇ ଦେଇ ଯାଉଚି । ଦଶ ଦିଗପାଳଙ୍କୁ କହିଲି, "ହେ ଦଶଦିଗପାଳେ, ମୋର ଦୋଷାଦୋଷ ମାର୍ଜନା କରିବ, ତମରି ଚଉହଦିରେ ମୋ ମା'କୁ ରଖିବ, ସେ ମୋତେ ସପନରେ, ଥରେ ଅଧେ ଦେଖାଦେବ । ଆଖିରୁ ଝରଝର ଲୁହ ଗଡ଼ି ପଡ଼ିଲା, ଶେଷଥର ପାଇଁ ତାକୁ ଦର୍ଶନ କରି ଆଖିବୁଜି ବାଲି ଢାଳେଇ ଦେଲି । କହିଲି, "ମାଟିଲି ଶୋଇଥା, ଆଉ ଅଳପ ଦିନରେ ମୁଁ ତୋ କୋଳକୁ ଆସିବ ଯେ ।"

ତୋ କଥା ଶୁଣି ଭାରି ଦୁଃଖ ଲାଗୁଚି ରେ ଦୁଃଖୀ...ଆଉ ସେ ନୋଳିକଥା କ'ଣ ହେଲା ।"

ବାଲି ଢାଳେଇ ଦେଲା ବେଳେ ମୋ ମା କାନରେ ସେ ଦଇଟା ସିମିଠି ଦାଉ ଦାଉ ହୋଇ ଜଳୁଥିଲା । ସତେ ଅବା ମହାକାଳ ଚୂଡ଼ାର ଆଖି ଦଇଟା ଜଳୁଚି ।

ମୋ ହାତ କମ୍ପୁ ଉଠିଲାନି ଅଜ୍ଞା ! ତା କାନ ଖାଲି କରିଦେବାକୁ । ସାରା ଜୀବନରେ ତ ତାକୁ କଷ୍ଟ ଦେଇନି, ନେଇଯିବ କେମିତି ! ବାପା ମଲା ପଇସାରୁ ପଇସେ ଅଧଲେ ରଖି ମୋ ଜନମ ଦିନକୁ ମା ପାଇଁ ସେଇ ନୋଳି ଦିଇଟି ଆଣି ଦେଇଥିଲା । ମା ସବୁବେଳେ ସେଇକଥା ମନେପକେଇ ବାପାକୁ ଝୁରି ଝୁରି କାନ୍ଦେ । ସେ ଆରପୁରକୁ ଗଲେ ବାପାକୁ ଦେଖେଇବ, କହିବ ମୋ ପୁଅର ଜନମ ଦିନକୁ ଉପହାର ଯାହା ଦେଇଥିଲେ, ଏଇଟି ସାଥିରେ ଆଣିଛି । ପୁଅ ଛଡ଼େଇକରି ରଖି ନ

''ଆଚ୍ଛା ବୁଢ଼ୀଟା, ସାଇ ଷାଇ କେନ୍ଦୁ ସାଥିରେ ଗଲେନି । ବଡ଼ ଆଶ୍ଚର୍ଯ୍ୟକଥା !

''ନଗଲେ ଭଲକଲେ, ଯା'ଗୁଡ଼ାକ ବାସି ହୋଇ ସଢ଼ିଥିଲା, ତା ବାସନାରେ ଲୋକେ ପଶିପାରୁନଥାନ୍ତେ; ପେଟରୁ ଭାତ ବାହାର କରି ଆଣିଥାନ୍ତା । ମୋ ପେଟରେ ତ ଭାତ ନଥିଲା, ଖାଲି ଅନ୍ତବୁଜୁଳାକୁ ବାହାର କରି ଆଣିବା ସହଜନୁହେଁ ହେଲେ ମୁଣ୍ଡଟା ମୋର ଝାଇଁଝାଇଁ ହୋଇ ଯାଉଥିଲା । ଲୋକେ ସିନା ଆସିଲେନି, ବୁଢ଼ୀର ପୋଷା କୁକୁରଟା ପଛେ ପଛେ ଆସିଲା । ଯେତେ ଅଡ଼େଇଲି ଗାଁକୁ ଫେରିଲାନି । ସବୁ କାମ ସାରି ଯେତେବେଳେ ବାହାରିଲି, ଦେଖିଲି କୁକୁରଟା ବୁଢ଼ୀର ବାଲିଗଦା ଉପରେ ପାଦ ଦିଇଟା ଲମ୍ବାଇ ତା ଉପରେ ମୁହଁ ଦେଇ ଶୋଇଛି । ଆସିଲାବେଳେ ତାକୁ କହିଲି, ବୁଢ଼ୀକି ଜଗିଥା ମୁଁ ଯାଉଛି । ସେ କାନ ଦିଇଟା ଉଠାଇ ଏପାଖ ସେପାଖ କରି ମୋ କଥାକୁ ଶୁଣିଲା, ଆଖି ତୋଳା ଚାହିଁ ମୋତେ ଦେଖିଲା ପରେ ପାଦ ଉପରୁ ମୁଣ୍ଡ ଟେକିଲାନି । ରାଗରେ ଗୁରୁ ଗୁରୁ ହେଉଥାଏ କି କାନ୍ଦୁଥାଏ, କି ମୋତେ ଗାଳି ଦେଉଥାଏ ମୁଁ ଜାଣେନା, ଚାଲି ଆସିଲି ଆଜ୍ଞା !

ଆଚ୍ଛା ଆଜି ଯାଏ ଥିଲୁ କୁଆଡ଼େ ?''

''ଏଇ ଭୁବନେଶ୍ୱର ଲିଙ୍ଗରାଜଙ୍କ ପାଖକୁ ପଳେଇ ଆସିଲି ଆଜ୍ଞା, ବୁଢ଼ୀର ଦଶଦିନ ଘଟକାମ କଲି । ଦି' ଜଣ ବାଭୁଣଙ୍କୁ ବାସୁଦେବଙ୍କ ଭୋଗ ଖୁଆଇଲି । ଟଙ୍କେ ଟଙ୍କେ ଦକ୍ଷିଣା ଦେଲି । ଯାହା ପଇସା ଥିଲା ସବୁ ସରିଗଲା, ଦେହ ବି ଖରାପ ହୋଇଗଲା । ମୁଣ୍ଡ ଲଣ୍ଡାହୋଇ ଗାଧେଇ ପଡ଼ିଲି ତ, ଥଣ୍ଡକରେ ବି ରହିଗଲି, ସାଥି ସାଥି ଧରିଦେଲା । ଦେଉଳ ପଛରେ ଯୋଉଁ ମେଡ଼ିକାଲ ଅଛି, ସେଠି ଦି' ମାସ ପଡ଼ିଲି । ବେଡ୍‌ରୁ ଆଜ୍ଞା ପଳେଇଛି ଆଜି ।

କରେ ପଳେଇଲୁ କାହିଁକି ? ତୋ ଦେହ ଭଲ ହୋଇଯାଇଥିଲେ ଆସି-ଥାନ୍ତୁ, କାମ ପାଇଟି କରି ପେଟ ପୋଷିଥାନ୍ତୁ । ଏବେ କରିବୁ କ'ଣ ? କାମ ତ କରି ପାରିବୁନି, ପେଟ ପୋଷିବୁ କେମିତି ?

ମେଡ଼ିକାଲରେ ଖାଇବା ପିଇବାକୁ ମିଳୁଥିଲା । ଔଷଧ ପଥ୍ୟ ବି ମାଗଣା ମିଳୁଥିଲା, ଡାକ୍ତର ବାବୁ ଭଲ ଦୟାଳୁ ଲୋକ ।

"ତା' ହେଲେ ପଳେଇଲ୍ କାହିଁକି ?"

ଅପମାନରେ ପଳେଇଛି । ସେ ଯୋଉ ବେହେରାଟା ଆମ ଖାଇବା ପିଇବା କଥା ବୁଝେ, ଔଷଧ ପଥ୍ୟ କଥା ବୁଝେ, ସେ ଟିକିଏ ହିଙ୍ଗାପି କରି କହୁଥିଲା । କହୁଥିଲା ବୁଢ଼ାଟା ଗୋଟିଏ ବଳ୍ପ ଠକ, କାମ ନ କରିବା ବାହାନାରେ ଡାକ୍ତର ଖାନାରେ ପଡ଼ିଛି, ଖାଲି ଖାଉଛି ଶୋଉଛି । ତୋତେ ଖାଇବାକୁ ଦିଆଯିବନି ।

"ତୁ ଡାକ୍ତର ବାବୁଙ୍କୁ କହିଲୁନି ।"

ଆଜ୍ଞା ନୋଉ ରୋଗୀଠୁ ସେ ଶ୍ରଦ୍ଧା ପାଏନି ! ରୋଗୀଙ୍କ ଖାଦ୍ୟରେ ତା' କୁଟୁମ୍ବ ଚଳନ୍ତି । ଡାକ୍ତର ବାବୁ କ'ଣ ଜାଣନ୍ତି ନା । ରୋଗୀଙ୍କୁ ଭାରି ଖରାପ ବେବହାର କରେ, ତା ନାଁରେ ସବୁବେଳେ ଆପତ୍ତି । ଥରେ ଦିଥର ସସ୍ପେଣ୍ଡ ହେଇଛି । ନୂଆ ଲୋକ ରହୁଛନ୍ତି, ହେଲେ ତା' ଭଳିଆ କାମ କେହି ଚଳେଇ ପାରୁନାହାନ୍ତି । ତା'କୁ ପୁଣି ଡାକିଆଣି କାମରେ ମୁକରର କରାଯାଉଛି । ତା' ପାଟିଟା ଆଜ୍ଞା ଭାରି ଖରାପ, ହେଲେ କାମଟାରେ ଗଲତ ନାହିଁ । ମୁଁ ତ ପାଟି ସମ୍ଭାଳି ପାରେନି, ପଳେଇଲି । ଆଜ୍ଞା ଆଉ ଗୁଟେ କାରଣ ଅଛି, ପେଟ ଭିତରୁ ତଣ୍ଟି ଯାଏ ଆସୁଛି ପୁଣି ଫେରି ଯାଉଛି ।

"ଭଲରେ କହୁନୁ, ଏତେ କଥା ତ କହିଲୁ, ସେଇଟା ବା କି କଥା ଯେ କହିପାରୁନୁ । ତୋ ଉପରେ ମୋର ସ୍ନେହ ଅଛି ବୋଲି ଏତେ କଥା ଶୁଣିଲି, ନହେଲେ ତ ମୁଁ ମୋ ବାଟରେ ଯାଇଥାନ୍ତି । ତୁ ତୋ ବାଟରେ ଯାଇଥାନ୍ତୁ ।"

ବୁଢ଼ାର ମୁହଁ ଥମ୍ ଥମ୍ ହେଇଗଲା । ଆଖିରୁ ଦ' ଧାର ଲୁହ ଗଡ଼ିଆସିଲା । ସେ କହିଁ କହିଁ ହୋଇ କହିଲା, "ଆଜ୍ଞା, ସେଇ ସେନେହ ଆଦର ଟିକିକ କାହାଠୁ ପାଉନି । ସବୁ ରୋଗୀଙ୍କ ନିଜ ଲୋକ ଆସି କେତେ ଆଦର ସେମାନଙ୍କୁ ଦେଖାନ୍ତି, କେତେ ସେବା କରନ୍ତି, ମୋ ପାଇଁ ଆହା କହିବାକୁ କେହି ନାହାନ୍ତି । ନିଜର ବୋଲି ଯାହାର ସଂସାରରେ କେହିନାହିଁ, ସେ ଏ ସଂସାରରେ ରହିବା ଦରକାର କ'ଣ ! କାହାପାଇଁ ରହିବ ? କୋଉଥିପାଇଁ ରହିବ । ମନକଥା ଶୁଣିବାକୁ ଯାହାର ସଂସାରରେ ମଣିଷ ନାହାନ୍ତି, ତା'କୁ କ'ଣ ସଂସାରଟା ଭଲ ଲାଗିବ ଆଜ୍ଞା ! ଆପଣ ତ ପାଠ ପଢ଼ୁଆ ଲୋକ, ମୋଠୁ ବେଶି ବୁଝିବ ଚତୁର । ଆପଣ ବେଶି ଜ୍ଞାନ ପାଇଛନ୍ତି । କହନ୍ତୁ, ମୋ ସାନ ବୁଦ୍ଧିରେ ମୁଁ ଯାହା କହୁଛି, ସେ କଥାଟା କ'ଣ ମିଛ । ନା ନାଁକରି !

ସମରେନ୍ଦ୍ରଙ୍କର ଅନ୍ତର ଭିତରୁ ବାହାରି ଆସିଲା···ସତ···ସତ··· ବିଲକୁଲ ସତ । ସେ ତାଙ୍କ ମନ ଭିତରେ ତାହା ଚାପିନେଇ ଅନ୍ୟ କଥାଟିଏ କହିଲେ । ' ବୁଝିଲୁ ଦୁଃଖୀ, ତୁ ଖାଲି ନିଜ ଲୋକର ସ୍ନେହ ଶ୍ରଦ୍ଧା ପାଇଚୁ, ଆଉ ସେଇଟା ପାଇଲୁନି ବୋଲି ଏତେ ଅଭିମାନିଆ କଥା କହୁଚୁ । ପର ମଣିଷଙ୍କୁ ମୁନିବ କରି ଏ ସଂସାରଟା ଚାଲୁଚି, ନ ହେଲେ କୋଉ ଦିନୁ ବନ୍ଦ ହୋଇ ଯାଆନ୍ତାଣି । ପରକୁ ନେଇ ଘର । ସଂସାରଟାତ ପର ଲୋକରେ ଖାଲି ହାଉଯାଉ ହେଉଛି ତାଙ୍କର ଭିତରୁ କାହାକୁ ନିଜର କରିନେଲେ ହେଲା । ନିଜ ଘର ଭିତରେ କ'ଣ ଲୋକ ନାହାନ୍ତି, ଯେଉଁମାନେ ନିଜର ତାଲିକାରେ ଥାଆନ୍ତି କିନ୍ତୁ ପର ପରି କାମ କରନ୍ତି । ନିଜର ପରି ସ୍ନେହ, ଶ୍ରଦ୍ଧା, ସେବା ସବୁ ଦିଅନ୍ତି, ଏମିତି ଭିତରେ ଭିତରେ ପରଠୁ ବି ବଳିଯାଆନ୍ତି ।

ଦୁଃଖୀ କ'ଣ ବୁଝିଲା କେଜାଣି, ତା' ଶୁଖିଲା ଓଠରେ ହସର ଶୀତଳ କାକର ଟୋପାଏ ବୋଳିଦେଲା । ସ୍ନେହ ଶୋଷିଲା ଜିଭଟା ଓଠ ଉପରେ ପହଁରିଗଲା । କହିଲା ବାବୁ, "ତମକୁ କ'ଣ କଥାରେ ମୁଁ ଜିତିବି । ସତରେ ପରକୁ ନେଇ ଘର । ହେଲେ ଦୁଃଖୀର······ । ଆଖି କୋଣକୁ ଆଙ୍ଗୁଠିରେ ପୋଛିଆଣିଲା ।

"ଆଚ୍ଛା, ମୋ ସାଥିରେ ଆମ ଘରକୁ ଆ । ରାତିଟା ରହିଯିବୁ, ସକାଳ ହେଲେ ବିଚାର କରିବା ।"

"ଆଜ୍ଞା, ମୁଁ ତ' କାମିକା ଲୋକ, କାମଧାମ ନ କରି ଦି'ମାସ ହେଲା ଗୋଡ ହାତ ପଙ୍ଗୁ ହୋଇଗଲାଣି । ମୋର ମଜୁରି ଦରକାର ନାହିଁ ଆଜ୍ଞା, ମୋତେ ଘରେ ଚାକର କରି ରଖନ୍ତୁ, ମା'ଙ୍କ ଉପରେ ଘର କାମ ବେଶି ପଡ଼ୁଥିବ, ପୁଣି ଛୁଆ କଥା, ସିଆଡ଼େ ଫେର୍ ଚାକିରି । କୋଉ ଆଡ଼େ ସେ ବୁଲିବେ ? ମୁଁ ବାସନ ମାଜିବି, ଲୁଗାପଟା ସଫାକରିବି, ଘରଦ୍ୱାର ଓଳାଇବି, ଗାଈଥିଲେ ତା' କଥା ବୁଝିବି, ହାଟ-ବାଟ କରିବି, ସଉଦା ପାତି ଆଣିବି । ମା'ଙ୍କ ହାତ ତଳେ ପଡ଼ି ଦି'ଇଟା ଏ ପେଟରେ ପଡ଼ିଲେ, ଦି' ଦିନରେ ଆଜ୍ଞା ନେଉଟିଆ ଶରୀର ମାଲୁମାଲୁ ହୋଇ ଉଠିବ । ଦିହରେ ଟିକିଏ ବଳ ହୋଇଗଲେ ସିଧା ଚାଲିବି ନୂଆ ଘରକୁ । ମିସ୍ତ୍ରୀ ସାଥିରେ କାମ କରିବି । ସେ ଟଙ୍କା ପାଇବିନି । ତାଲେଇ ଦି'ଇଟା କାନ୍ଥକୁ ଲଗେଇ ଘେରାଇ ଦେଲେ ରାତିରେ ବି ରହିଯିବି । ସିମେଣ୍ଟ, ଛଡ଼ ସେଇଠେ ରଖିବା । ନଇତ ନଇତ କେଉଁଠାରେ ନେଇ କାମ କରିବାକୁ ଟଙ୍କା କେତେ ଅଧିକା ହେଉଚି, ସେତକ ତ ରହିଯିବ ।

"ଅଚ୍ଛା ଆ । ତୋ' ଦେହ ଆଗେ ଭଲ ହେଉ ତା'ପରେ ଦେଖିବା ।" ଦୁହେଁ କଥାବାର୍ତ୍ତା ହୋଇ ଘରକୁ ଫେରିଲେ । ସୌମ୍ୟା କୁନ ଝିଅଟିକୁ କାନ୍ଧରେ ପକାଇ କବାଟ ଖୋଲିଲେ । ଦୁଃଖୀ ହସି ହସି ମାଆଙ୍କୁ ନମସ୍କାର ଜଣାଇଲା । ସମରେନ୍ଦ୍ର ହସି ହସି କହିଲେ, "କିଓ ସ୍ୱାଙ୍କୁ ଚିହ୍ନୁଚ ?"

ଦୁଃଖୀ ପାଟିରୁ କଥା ଛଡ଼େଇ ନେଇ କହିଲା, "ମା ମୋତେ ଚିହ୍ନିବେନି । ସେଦିନ ନୂଆ ଘରଟେ ଏତେବେଳଯାଏ କଥାବାର୍ତ୍ତା ହେଉଥିଲେ···ଚିହ୍ନିବେନି ? ମୁଁ ଆଜ୍ଞା ଦୁଃଖୀ ।"

"ଓ···ତମେ ଦୁଃଖୀ ! ହଁ ହଁ ଚିହ୍ନିଲି ।" ହସି ହସି କହିଲେ ସୌମ୍ୟା ।

ଦୁଃଖୀ ଉତ୍ସାହିତ ହୋଇ ପଚାରିଲେ, "କୁନ ମା କଣ ଶୋଇ ପଡ଼ିଚାନ୍ତି ନା କ'ଣ ! ବାବୁ, ଏଥର ବଢ଼ିଆ ହେଲା । ରବର ଘୋଡ଼ା, କାଠ ଘୋଡ଼ା କାହିଁକି କିଣିବେ ? ଜୀଅନ୍ତା ଘୋଡାଟା ଏ ତ ପାଇଗଲେଣି । ମୁଁ ଏଣିକି ଘୋଡ଼ା ହେବି, କୁନ ମା ମୋ କାନ ଧରି ପିଠିରେ ସବାର ହେବେ । ମା ଏଇ ଗୋଟିକ ନା ଘରେ ଆଉ କୁନ ବାବୁ ଅଛନ୍ତି ?"

ସୌମ୍ୟା ଲଜ୍ଜିତ ହୋଇ ଘର ଭିତରକୁ ଚାଲିଗଲେ । ସମରେନ୍ଦ୍ର ଭିତରକୁ ଗଲେ । ଦୁଃଖୀ ପିଣ୍ଡାରେ ବସିଲା···ଦାଣ୍ଡ ପିଣ୍ଡାରେ । ଦୁଃଖୀର ଦୁଃଖମୟ ଇତିହାସ ଶୁଣି ସୌମ୍ୟା ଖୁବ୍ ସହାନୁଭୂତିର ସହିତ ତା'ର ଖାଇବା, ଶୋଇବା, ରହିବା କଥା ବୁଝିଲେ । ଦୁଃଖୀ ଏତେଦିନ ପରେ ଘରର ବାତାବରଣ, ସ୍ନେହ ଶ୍ରଦ୍ଧା ପାଇ ଆଶ୍ୱସ୍ତ ହେଲା । ବହୁଦିନର କ୍ଷୁଧା ତା'ର ମେଣ୍ଟିଗଲା । ଇସ୍ କି ଭଲ ଲାଗୁଚି ଏ ଘରଟା ମ, ସତେ ଯିମିତି ସ୍ୱର୍ଗ । ଯୋଉ ଘରେ ମା ଜାତିର ମଣିଷଟିଏ ନାହିଁ ସେ ଘରଟା କ'ଣ ଘର ।

ବର୍ଷେ ତଳର କଥା, ଦୁଃଖୀର ମନେପଡ଼ିଲା । ସେ ସେଦିନ ସେ ବାବୁଙ୍କର ଘରେ ଚୂନ ଦେଉଥାଏ । ମହଲା ମହଲା ଘର । ଘୁଡ଼ାଏ ଖାଲି ପଡ଼ିଚି, ଚାକରବାକର ଜଣେ ଅଧେ ଚୋଟେ ଘରେ ଅଛନ୍ତି । ବାବୁ ଏକା, ଧନଲୁଣ୍ଟା ବଙ୍ଗଳାରେ ଆଲମାରି ଆଲମାରି ବହି । ବାବୁ ଦିନସାରା କାଗଜ ଖଣ୍ଡେ, କଲମଟେ, ବହି ଖଣ୍ଡେ ଧରି ଦିନସାରା ତା'ରି ଭିତରେ ବସିଥାଏ । କା ସାଥିରେ କଥା ନାହିଁ କି ବାର୍ତ୍ତା ନାହିଁ । ବାବୁର ଗାଡ଼ି ଘୋଡ଼ା ଅଛି । ଦେଖିବାକୁ

ରାଜପୁତ୍ର ପରି ଚେହେରା । ସେ ହସି ହସି ତାଙ୍କୁ ଯାଇ ପଚାରିଲା, "ବାବୁ, ମା' କ'ଣ ବାପଘରକୁ ଯାଇଛନ୍ତି ?"

ସେ ବାବୁ ହସି ହସି ଲୋଟିଗଲେ, ଦୁଃଖୀ ବୁଝିପାରିଲାନି ତା'ର ଭୁଲ ହେଲା କେଉଁଠି । ବଲ୍‌ବଲ୍ ହୋଇ ତାଙ୍କ ମୁହଁକୁ ଚାହିଁଥିଲା । ବାବୁ ହସିହସିକା କହିଲେ, "ନା, ମାନଙ୍କୁ ବାପା ଘରୁ ଆସିନାହାନ୍ତି । ଆସିବାର ଆବଶ୍ୟକତା ବି ନାହିଁ । ଦୁଃଖୀ ଟିକିଏ ସାହସ ପାଇ କହିଲା, "ଆପଣ ତା ହେଲେ ମାଆଙ୍କୁ ତ' ହାତ ହେଇନାହାନ୍ତି ! ଏଇଟା ଭଲ କଥା ହେଲା ? ଦେହ ମନ ଠିକ୍ ରହିବନି ଆଜ୍ଞା... ଶୀଘ୍ର ଖୋଜଖବର କରି ନାଆ ଖାଇବରେ ମିଶିଯାଆନ୍ତୁ, ଅନାଦରଆ ହେଇ ଆଉ କେତେଦିନ ରହିବେ । ସେ ପୁଣି ହସିଲେ । ବୁଝିବ ବାକଣ୍ଡ ମାନେ ଘରୁ ବାହାରି ଆସିଲେ ବାବୁଙ୍କର କ'ଣ ହେଇଗଲା ବୋଲି । ସମସ୍ତେ କହିଲେ "ବାବୁ ଏତେ ଜୋରରେ ହସିବାର ଆମେ କେବେ ଦେଖି ନଥିଲୁ । ତମେ କ'ଣ କହି ଦେଲ କି ଓ ।" ଆଉଦିନେ ହେଟିଲବେଳକୁ ବାବୁର ଦେହରେ ଖଇଫୁଟା ତାତି । ଦଶଦିନ ହେଲା ତା ଘରକୁ ଯାଇନି । ସାଙ୍ଗମାନଙ୍କ ଘରେ ଦି ଦି ଦିନ ରହି ସେବା ପଥ୍ୟ ପାଇ ଏପାଖ ସେପାଖ ଘୂରୁଛି । ପଚାରିଲେ କହୁଛି ଘରେ କିଏ ଅଛି ଯେ ଘରକୁ ଯିବି । ଘରଟା ମୋ ଉପରେ ମାଡ଼ି ବସୁଛି । ଘରକୁ ବୋହୂ ମା'ଟିଏ ଆଣିଥିଲେ ଘର କ'ଣ ମାଡ଼ି ବସୁଥାନ୍ତା । ସେଇ ଗୋଟାଏ ମାଇପିଲୋକ ପରା ସବୁ ଘରା ବୋହି ବାବୁ ଦେହରୁ ତାତି ଓହ୍ଲାଇ ଦିଅନ୍ତାଣି । ଦୁଃଖୀ ଇମିତି କେତେକଥା ଭାବି ଭାବି ଆକାଶକୁ ଚାହିଁଛି ।

ସେତେବେଳକୁ ସେ ଖାଇ ସାରିଥାଏ । ଖୁବ୍ ମନଭରି ଖିଆ । ଜୀବନରେ ଏତେଆନନ୍ଦ ସେ ଖାଇବାରୁ କେବେ ପାଇନଥିଲା । ମା'ର ପାଣିସଲୁଲା ତାକୁ ଖାଇ ଭଲ ଲାଗେ । ଗୋଟି ଗୋଟି ଶୋଭେ ଫୁଟିଥିବ, ରଶୁଣ ବଘାର ହେଇଥିବ, ବଡ଼ିଟେ ପଡ଼ିଥିବ, ଥରେ ହାପୁରି ଦେଲେ ପାଟି ଆଉ ପେଟ ଭିତରଟା ସୁଆଦରେ ଭରପୂର । ଆଜିର ତିଅଣଟା ଠିକ୍ ସିମିତି ହେଇଥିଲା । ମା' ପଥି ରାନ୍ଧିକରି ବୋଧହୁଏ ଦେଇଥିଲେ । ପୁରୁଣା ସରୁ ଚାଉଳଭାତ, ଶାଗୁଆ ହରଡ଼ ଡାଲି, ଘାଣ୍ଟ ତରକାରୀ, ସନ୍ତୁଳା, ବଡ଼ି ଭଜା, ଚଟଣି । ପରମ ପରିତୃପ୍ତିରେ ସେ ଖାଇଛି । ଆଃ · କି ଆନନ୍ଦ ସେ ଅନୁଭବ କରୁଛି ସତେ ଯିମିତି ଶତସିଂହର ବଳ ତା' ଦେହରେ ସଞ୍ଚାର ହେଇ-ଗଲାଣି । ଖାଇସାରିବା ପରେ ଗଦ୍ ଗଦ୍ ହେଇ କହିଲା, "ମୁଁ ନୂଆ ଜୀବନ ଫେରି ପାଇଲି ମା' ! ଆଉ ଦି ଦିନରେ ଭଲ ହେଇଯିବି । ବାସନ କୁସନ ଆଜି ମୁଁ ମାଜି ଦେବି ।"

ବ୍ୟସ୍ତ ହୁଅନ୍ତି ଦୁଃଖୀ...ଆଉ ଦି'ଚାରିଦିନ ଯାଉ । ଡକ୍ତରଙ୍କୁ ଡାକି ଆସିଯାଉ । କାମତ କରିବ ତରବର କାହିଁକି । ହସିହସି କହନ୍ତି ଅଭୟ ଦିଅନ୍ତି ସୌମ୍ୟା ।

ସମରେନ୍ଦ୍ର ପ୍ରତିଦିନ ଶୋଇବା ପୂର୍ବରୁ ଆସି ଅଧଘଣ୍ଟାଏ ଦାଣ୍ଡ ପିଣ୍ଡାରେ ବସନ୍ତି । କୁନି ଝିଅଟି କୋଳରେ ବସିଥାଏ । ତାକୁ ଆକାଶର ଚାଲିବାଦଲ, ତରା, ଜହ୍ନମାମୁଁ, ଉଡ଼ିଯାଉଥିବା ପକ୍ଷୀ, ପବନରେ ହଲଚଲ ହେଉଥିବା ଗଛପତ୍ର ଦେଖାନ୍ତି । ପିଲାଟି ଆନନ୍ଦରେ କୋଳରେ ବସି ସେଇ ନେଳି ଆକାଶ ଆଉ ତାର ଦୃଶ୍ୟ ସମ୍ଭାର ଆଡ଼କୁ ଚାହିଁ ରହିଥାଏ କୁତୁକୁତୁ ହୋଇ । କେତେବେଳେ ହାତ ହଲଉଥାଏ କେତେବେଳେ ପାଟିରେ ଆଙ୍ଗୁଠି ପୂରାଇ ଚୁଚୁମ୍ ଚୁଚୁମ୍ ଖେଳେ । ମଝିରେ ମଝିରେ ଅସ୍ପଷ୍ଟ କଳଗୁଞ୍ଜନ ବାହାରିଆସେ । ପାଟିରୁ ବହି-ଆସୁଥିବା ଲାଳ ଫେଣଫେଣ ବୋଲି ହୋଇଯାଏ । ସମରେନ୍ଦ୍ର ନିଜ ଲୁଗା କାନିରେ କେତେବେଳେ ପୋଛିଦିଅନ୍ତି । ଦିନେ ଦିନେ ସୌମ୍ୟା ଆସି ସମରେନ୍ଦ୍ରଙ୍କ କୋଳରେ ଟିକିଟିକି ଗୋଡ଼ ଦୁଇଟି ଲମ୍ବାଇ ବସିଥିବା କୁନି ଝିଅର କଅଁଳ କୋଡ଼ରେ ମୁଣ୍ଡ ଦେଇ ଶୋଇବାର ଅଭିନୟ କରନ୍ତି । ସୌମ୍ୟାଙ୍କର ଆସ୍ମିତ-ସୌମ୍ୟ ବଦନରେ ଟିକି ଝିଅର କଅଁଳ କୋଳ ପୁରିଯାଏ । ଶିଶୁଟି ତାର କର୍ଣ୍ଣ-କଢ଼ି ପରି କଅଁଳ ହାତରେ ମା'ର ମୁହଁକୁ ଆଉଁସୁଥାଏ । କାନ, ନାକ, ପାଟିରେ କୁନିକୁନି ଅଙ୍ଗୁଳି ସବୁ ପଶୁଥାଏ । ସଲ୍‌ସଲ୍ ଲାଗିଲେ ସୌମ୍ୟା ହସିଉଠନ୍ତି । ହସିଲା-ବେଳେ ପାଟି ଭିତରର ସଫେଦ୍ ଦାନ୍ତଗୁଡ଼ିକ ଶିଶୁର ମନକୁ ଆକର୍ଷଣ କରେ, ପାଟି ଭିତରେ ଥିବା ଲାଲ ଲମ୍ବ ଜିଭଟାର ସଞ୍ଚରଣ ତା'ର କୌତୂହଳ ବଢ଼ାଏ । ସେ ଚମ୍ପାକଢ଼ି ପରି ଆଙ୍ଗୁଳିଗୁଡ଼ିକ ପାଟି ଭିତରେ ଭର୍ତ୍ତିକରି ଦାନ୍ତଗୁଡ଼ିକୁ ଘଷିବାକୁ ଚେଷ୍ଟାକରେ, ଜିଭଟାକୁ ଧରିବାକୁ ହାତ ବଢ଼ାଏ, ସୌମ୍ୟା ପାଟି ବନ୍ଦ କରିଦେଇ ତା କୁନି ହାତକୁ ବନ୍ଦ କରନ୍ତି । ଖୋଲି ଦେଲେ ସେ ଚଟ୍‌କରି ହାତ କାଢ଼ି ଆଣି ମା'ର କାନତଳେ ଦୋହଲୁଥିବା ଝୁମୁ ଝୁମୁ ଝୁମ୍ପି କୁନ୍ତଳଗୁଡ଼ିକୁ ମୁଠା ମୁଠା କରି ଟାଣି ଆଣି ପ୍ରତିଶୋଧ ନିଏ ।

ଦିନେ ଦିନେ ସୌମ୍ୟା ତା' କୁନି ଗୋଡ଼ ଦି'ଇଟି ଏକାଠିକରି ମୁଣ୍ଡ ଦେଇ ଶୁଅନ୍ତି । ଏପରି ଭାବରେ ମୁଣ୍ଡ ଥୋଇଥାନ୍ତି ଯେ ତା'ର ଭାର ଯେପରି ପିଲା ଉପରେ ନ ପଡ଼ିବ । ଝିଅର ମୁହଁକୁ ଚାହିଁ ହସନ୍ତି, ତା ଟିକି ଟିକି ହାତ ଦୁଇଟିକୁ ଟାଣିଆଣି ନିଜର ଫୁଲ କଅଁଳ ପୂରିଲା ପୂରିଲା ଗାଲରେ ଥାପୁଡ଼େଇ ଥାପୁଡ଼େଇ ଅଭିନୟ କରନ୍ତି ସତେଯେପରି ସେ ମା' କୋଳରେ ଛୁଆ ଶୋଇଛି ।

ପିଲାଟିର କଣ୍ଠରେ କଳଗୁଞ୍ଜନ କୁହୁଳି ଉଠେ । ତା' ସହିତ ତାଳ ପକାଇ ସେ ଜଣେ ଗାଇ ଉଠନ୍ତି—

"ଜୁନା ଫୁଲ ଉ ମୌଳ　　　　ଜୁନା ବୋଉ ମୋ
ତ ଗ୍ରାମେ ଜଗତେ ନାଏ ତ ଭଲ !
ଝୁଧ ଛଲ ଯେତେ　　　　ଦଉଡି ଯୋଗାଇ,
ଲୁଉଚ୍ଚି କଲ ଫଡ଼କେ ଶୋଇ ।"

ହସର କଲରୋଳରେ ଘରଯାକ ଉଚ୍ଛୁଳି ଉଠେ । ଆକାଶରେ ଜ୍ୟୋତ୍ସ୍ନା ସନ୍ଧ୍ୟାଟି ସହିତ ଏହି ହସର ହିଲ୍ଲୋଳ ମିଳନ ହୋଇଯାଏ । ଦୁଃଖର ଉପଯୁକ୍ତ ଓ ଆଜି ସେସବୁ ଦୃଶ୍ୟର କ୍ରମାଗତ କାର୍ଯ୍ୟକ୍ରମରେ ପରିବର୍ତ୍ତନ ଆସିଛି । ହସ ଉଚ୍ଛୁଳା ସନ୍ଧ୍ୟାରେ ଆଜି ଗାମ୍ଭୀର୍ଯ୍ୟ ପରିବେଶର ଆଲୋଡ଼ନ ।

ସମରେନ୍ଦ୍ର ବସିଛନ୍ତି ଚେୟାରରେ । ଚିନ୍ତାଏ ଚିନ୍ତିତ ଥିବାପରି ଜଣାପଡ଼ୁଛନ୍ତି । ମାରଦତା ଉଙ୍ଗଳର ଦୁଃଖୀ ପଚାରିଲା—

"ଅଜ୍ଞା, ଗୁଡ଼ ପଡ଼ ସାଉଦଣି ବୋଧହୁଏ ।"

"ଗୁଡ଼ ପଡ଼ିଲାଣି ! ମୂଳରୁ ମିଲ୍ଲ ଉପରକୁ କାମ ଯାଉଛି, ଯାହାକିଛି ଯାଉଛି କିଛି ନୁହେଁ । ସେଇଥା ପଥର ବି ନୁହେଁ ।"

"ଏତେ ଚିନ୍ତା, ମୋର ତ ଧାରଣା ଥିଲା ଗୁଡ଼ ପଡ଼ିଯିବଣି । ପଲପ୍ରଙ୍ଗ ବାକିଥିବା ଯେତିକି ଧୀରେ ସୁଚନ୍ତ କରିବେ । କ'ଣ କିଛି ଅସୁବିଧା ହେଲା କି ଅଜ୍ଞା ।"

"ମେସିନର ଭାଗ୍ୟ ଖରାପ ନହେଲେ ଏମିତି ଦୁଃଖ ପାଏନା । ତୁ ଯେଉଦିନ ମୋତେ ଯାହା କହିଥିଲୁ ଠିକ୍ ସେଇଆ । ପ୍ରଥମରୁ ସେଇ କଥା ପାଇଁ ଲାଗି ମେସିନଟାକୁ ବାହାର କରିଦେଇ ଆଉ ଜଣେ ଭଲ ଲୋକକୁ ଲଗାଇଥିଲେ କାମ ଏତେବେଳକୁ ସରନ୍ତାଣି ।"

"ବୁଝିଲେ ଅଜ୍ଞା, ଲଙ୍କାପୁରୀର ଯେତିକି ସମସ୍ତେ 'ରାକ୍ଷସ ।' କେହି କାହାକୁ ଊଣା ନୁହନ୍ତି । ନାଏ ସାତ ହେଲେ କାଏ ସତର । ସତ୍ୟସୁନ୍ଦର କ'ଣ ଆଉ କାମ କରୁନ ?"

"ନାହିଁ, ସେ ନକଲେ ବି ତା ଏଜେଣ୍ଟ କରୁଛି । ମିଲ୍ଲ ଯାଏ କୌଣସିମତେ କାମଟାକୁ ଉଠେଇ ଦେଲା । ଲଭାଂଶ ଖାଇସାରିବା ପରେ ଉପର କାମ ବେଳକୁ

ଜମିଟ । ପଗ୍ରୃଣଟେଲ କହିଲି, "ରେଜ୍ ପୋଷାଇଲି ନାହିଁ । ମୁଁ ଆଉଜଣେ ମିସ୍ତ୍ରୀ ଦଉଚି, ସେ ଏ କାମଟା କରିବ ।" ମୁଁ ତାକୁ ପଚାରିଲି—ଆଚ୍ଛା, କେତେ ହେଲେ ତୋତେ ପୋଷେଇବ ? ସେ ଦ' ଗୁଣ ଗୁର୍ଜ କଲା । ବାଧ ହୋଇ ତା ପଇସା-ପଜ ତୁଟାଇ ଦେଲି । ଲୋକ ବଡ ବୋଲି କହୁ ମଧ୍ୟେ ଦଉଡ଼େଇଲା । ଆଜ୍ଞା ଆଜି ଯିବ, କାଲିଯିବ, ଏଇ ସପ୍ତାହରେ ଯିବ, ଆପଣ ବୁଲନ୍ତୁ ମୁଁ ତାକୁ ପଠଉଚି । ମୁଁ ନଇଁଥି କିଇଚ ବଉଛି ଅଣଆସ୍ତ ହେଲି । ଶେଷରେ ଆଉ ଜଣେ ଆସିଲା ସେ ତା କଥା କ'ଣ କହିବ, ସେ ଗୋଟାଏ ଧର୍ମ ଅବତାର ।"

"ଏଁ ଧର୍ମ ଅବତାର । ସ୍ବାଠୁ ବଢ଼ିଆ ଲୋକ, ତା'ହେଲେ ତ ଭଲକାମ-କରିଥିବ" ପଚାରିଲା ଦୁଃଖୀ ।'

"କାମ, ଖୁବ୍ ବଢ଼ିଆ । ବେକରେ ତୁଳସୀ ମାଳି, କପାଳରେ ରାମାନନ୍ଦୀ ଚିତା, ପ୍ରତିକଥା କଥାକେ କୃଷ୍ଣ; ଜଗନ୍ନାଥ, ରାମ, ହରି ପାଟିରୁ ବାହାରି ଆସନ୍ତି । କାମ ବୁଲିଥିବ, ଗୁଳିଥିବ ହଠାତ୍ ଜଣେ ଉଠିଦେଇ ଜଗନ୍ନାଥଙ୍କ ଠାକୁରଙ୍କ ମୂର୍ତ୍ତି ଆସନ୍ତି । ମୋତେ ଦେଖିଲେ ଲମ୍ବ ହୋଇ ସାଷ୍ଟାଙ୍ଗ ପ୍ରଣାମ । ସତ୍ୟସୁନ୍ଦର ଚେହେରା ଦେଖିଗୁଣରେ କାମ ଆରମ୍ଭକଲା । ପଥର ଦ' ଖଣ୍ଡ ରଖା ବସିଛି କି ନାହିଁ କାମ ବନ୍ଦ । ଆଚ୍ଛା କଥା, ଘଟଣା କ'ଣ ? କହିଲା ପଥର ଲାଇନ୍ ଠିକ୍ ନାହିଁ, ଭଲ ଡ୍ରେସିଂ ହୋଇନି । ଖଟେଇ ପଥରରେ ବଡ଼େ ସିମେଣ୍ଟ ମିଳିବା କଥା, ଏବେ ଦ'ବସ୍ତା ଲାଗୁଛି, କେତେ ସିମେଣ୍ଟ ଯୋଗାଇବେ । ଆଉ କୋଡ଼ିଏ ଟଙ୍କା ଦିଅନ୍ତୁ, ବାକି ପଥରଗୁଡ଼ାକ ଡ୍ରେସିଂ କରିକି କାମ କରିବା । ବାଧ ହେଇ ଟଙ୍କା ଦେଲି, ଡ୍ରେସିଂ ମାନେ ପ୍ରତି ମିନଟରେ ପ୍ରତି ପଥରରେ ଗୋଟାଏ ଲେଖାଏଁ କୁରାଢ଼ି ଚୋଟ । ବାସ୍ ଡ୍ରେସିଂ ସରିଗଲା, ପଥର ବଢ଼ିଆ ହୋଇଗଲା ଏଥର । ଏଥର କାମକର, ପୁଣିକାମ ବନ୍ଦ । କଉ ଅଟକିଗଲା କାହିଁକି ? ଉତ୍ତର ଆସିଲା—ଆଜ୍ଞା, ମୋ ନଜର ନୂଲିଆ ମେଳା ନାହାନ୍ତି । ମୁଁ ସ୍ବାକୁ ତାଙ୍କୁ ଅନୁରୋଧ କରି ଡାକଉଛି । ଆଡଭାନସ୍ ନପାଇଲେ ସେମାନେ ମୋ ପାଖକୁ ଆସିବେନି । ସେଥିପାଇଁ ମଧ୍ୟ ପଚ୍ଚିଶଟଙ୍କା ଦେଲି ।"

"ସେ ପୁଣି କାମ କଲାନି ଠକିଲା ? ଏ ଶାଳୀ ସେ ପୋକ୍ତ ଅଦୌ ବିଶ୍ୱାସ ନାହିଁ ଆଜ୍ଞା, ଟଙ୍କା ନେଇ ନେଇ ମାଲିକକୁ ଶଳେ ଲଣ୍ଡାକରି ଦେବେ ।" ଦୁଃଖୀ ବ୍ୟସ୍ତ ହୋଇ କହିଲା ।

ସମରେନ୍ଦ୍ର କହିଲେ, "ମୁଁ ପରା ତା'ପରଦିନ, ଛୁଟିନେଇ ତାକୁ ଜଗିଲି । ଏଗାରଟାବେଳେ ଆସି ମୁହଁ ଦେଖାଇଦେଇ କହିଲା, "ଆଜ୍ଞା, ସିମେଣ୍ଟ ଫେଣ୍ଟାଫେଣ୍ଟି

କରୁଥାନ୍ତି...ମୁଁ ଏଇ ଆସୁଚି, ଫେଣ୍ଟା ସର ନଥିବ ମୁଁ ଆସି ପାଇଯିବି, ହରହେ ରକ୍ଷାକର ।" ମୋ ପାଟିରୁ କଥା ବାହାରିଲାବେଳକୁ ସେ ସାଇକେଲରେ ଚଢ଼ିଲାଣି, ପଛରୁ ଡାକଲେ ବି ଶୁଣିଲେନି । ଲୋକଟାଏ ନେଇ ସିମେଣ୍ଟ ଗୋଳାଇଲା, ଏପଟ ଗୁଡ଼ିଲା, ସେପଟ ଗୁଡ଼ିଲା, ସେ ଆସିଲେନି । ଲୋକ ପଠେଇଲି ମୋ ସାଇକେଲ ଦେଇ ତାଙ୍କୁ ଖୋଜିବାକୁ । ସେ ବୁଲି ବୁଲି ଆସି ଘଣ୍ଟାଟାରେ ପହଞ୍ଚି କହିଲା, "ଆଜ୍ଞା, ଖୋଜି ଖୋଜି ହାଲିଆ ହେଲିଣି, ତାଙ୍କୁ ପାଇଲିନି, ମୁଁ ଯାଉଚି ।" ତାକୁ କୌଣସିମତେ ବୁଝାଇ ସୁଝାଇ ପଠେଇଲି । କହିଲି ତୁ ଥା, ମୁଁ ଟିକିଏ ଖୋଜିନିଏ । ଖୋଜାଖୋଜି କରୁ କରୁ ଦେଖିଲି ଗୋଟାଏ ଗୁ ଦୋକାନରେ ବସି ଗୁ ଖାଉଚି । ମୋତେ ଦୂରରୁ ଦେଖିଲା କ୍ଷଣି ଚଟ କରି ଉଠିଯାଇ ଘୋଡ଼େଇ ହୋଇ ଘର ଭିତରେ ଶୋଇଲା । ମୁଁ ଗୁ'ବାଲାକୁ ପଚାରିଲି, ସେ କହିଲା, ନା...ନା, ମୋ ଦୋକାନକୁ ଆପଣଙ୍କ ରାମାନନ୍ଦୀ ମିସ୍ତ୍ରୀ ଆସିନି । ସେ ଶଳା ସାଥିରେ ମୋର ଅପଡ଼ । ସେ ଶଳାଟା ଗୋଟାଏ ଠକାଟା ଆଜ୍ଞା, ଭିତରେ ମୋ ଲୋକ ଶୋଇଚି । ଆପଣ ଭୁଲରେ ଦେଖିଥିବେ । ସେତେବେଳକୁ ସେ ମୁହଁ ଘୋଡ଼ାଇ ଆମ କଥା ସହିତ ତାଳଦେଇ ଘଡ଼ଘଡ଼ି ମାରୁ ଥାଏ । ସିମେଣ୍ଟତକ ସେଦିନ ନଷ୍ଟ ହେଲା ।

ଦୁଃଖୀ ଭାରି ବ୍ୟସ୍ତ ହୋଇ କହିଲା, "ଆଜ୍ଞା, ଆପଣ ସେ ଶଳାକୁ ପାରିବେନି । ସେ ରାମାନନ୍ଦୀ ମିସ୍ତ୍ରୀ ସାଥିରେ ମୁଁ କାମ କରିଚି । ତାଙ୍କୁ ହାଡ଼େ ହାଡ଼େ ଚିହ୍ନିଚି । ତାକୁ ଆଡ଼ଭାନ୍‌ସ ଆଉ ଦେବେନି । ଥରେ ପାଇଗଲେ ସେତକ ନସରିବା ଯାଏ ସେ ଧରାଛୁଆଁ ଦେବନି । ସେ ହେଉଚି ସତ୍ୟ-ସୁନ୍ଦରର ଚେଲା, ଠକାମିରେ ତା'ଠୁ ଆଉ ଦଶଗୁଣ । ଦିନ ରାତି ମଦରେ ଗାଧୁଏ । ପଇସା ପାଇଗଲେ ସେ ପିଇ ଦେଇ ପଡ଼ିଥିବ ଯେ ଆପଣ ତାର ପତ୍ତା ପାଇବେନି । ବାରମାସରେ ତାର ତେର ପର୍ବ । ସନ୍ଧ୍ୟା ହେଲେ ଗିନି ବାଡ଼େଇବ । ଫୁଲରେ ଠାକୁରଙ୍କୁ ମଣ୍ଡଣୀ କରି ହରେ କୃଷ୍ଣ କହି କହି ନାଚିବ । ଏତିକିବେଳେ ଭୁଲରେ କୌଣସି ମାଲିକ ତା ପାଖରେ ପହଞ୍ଚିଗଲେ ତାଙ୍କଠୁ ଠାକୁରଙ୍କ ପାଇଁ କିଛି ଚାନ୍ଦା ଆଦାୟ କରିବ । ତାଙ୍କୁ ହଁ ହଁ କରି ବଦାକରି ଦେବାପରେ ଏକ ନିଃଶ୍ୱାସରେ ଛୁଟିବ ଭାଟିକୁ । ବୋତଲଟାଏ ଆଣି ଫୁଲ ତୁଳସୀ ଛଡ଼େଇ ସବୁତକ ଏକ ନିଃଶ୍ୱାସରେ ଢକ୍ ଢକ୍ କରି ପିଇଦେବ । ତା ପରେ ଲଙ୍ଗଳା ମୁକୁଳା ହୋଇ ପଡ଼ିଯିବ । ଲୋକ ଦେଖି କହନ୍ତି ରାମାନନ୍ଦୀ ଭକ୍ତିରେ ବିଭୋଳ ହୋଇ ଧ୍ୟାନରେ ବସିଛି ।"

"ଅଚ୍ଛା ଦୁଃଖୋ ତାଙ୍କୁ ଲୋକେ କାମ ଦିଅନ୍ତି କମିତ ?"

"ଆପଣ ଆଜ୍ଞା ଯିମିତ ଦେଖୁଚନ୍ତି । ଆପଣ ତ ଚନ୍ତି ନାହାନ୍ତି ତାଙ୍କୁ, ତା' ଚରଣିଆଙ୍କ ହାତୁଡ଼ରେ ପଡ଼ିଗଲେ, ଶଗୁଣ ଆପଣଙ୍କୁ ଅବା ମୁଣ୍ଡାଇ ଦେଲା, ଯାହା ଦାଉ ଟେକୋଟେକ କରି ଆପଣଙ୍କୁ ଘାଲରେ ପକାଇ ଦେଲା ପରେ କାମ ଫିଟେ । ସେମାନେ ପାଣ୍ଡୁଥିବେ, ଆପଣ କାନ୍ଦୁଥିବେ । ତାଙ୍କ ଭିତରେ କେତେଟା ମେଳ ଗଢ଼ିଛ ଆଜ୍ଞା ! ସେ ଗୁଣ୍ଡ ଅଜଣ ଏକାଠି ହୋଇଛନ୍ତି, ଜଣେ କୋଉ ମାଲିକର କାମ ବନ୍ଦ କରିଦେଲେ, ଅନ୍ୟମାନଙ୍କୁ ଯାଇ କହିଦେବ । ତାଙ୍କ ଭିତରୁ ଜଣେ ଆସି ମାଲିକଙ୍କୁ କହିବ କାମ କରିବାକୁ । ଆଉ ମିସ୍ତ୍ରୀକୁ ଗାଳି ଦେଇ ତା ହାତ ପୁରୁଷ ଉଣ୍ଟାଇ ଦେବ । କହିବ ଆଜ୍ଞା, ସେଟା ଗୋଟାପଣେ ଠକ, ଆପଣ ତା' ହାତୁଡ଼ରେ ପଡ଼ିଲେ କମିତ ! ଯାହା ହେଉ ରକ୍ଷାପାଇଗଲେ, ଏଣିକି କିଛି ଅସୁବିଧା ହେବନି । ମୋ କଥା ଠିକ୍, କାମ ବି ଠିକ୍ । ଦେଖନ୍ତୁ ଆଜ୍ଞା, ମୋ ସୁଯୋଗଟା ଏତେ ଖରାପ ଯେ ଯେତେକ ଖଣ୍ଡିଆ କାମ ସବୁ ଯାଇ ମୋ ପାଖରେ ମୁଣ୍ଡୁଛି । ମୁଁ ତ ଟିକିଏ ଉତ୍ତ୍ରୁଷ ଏଡ଼ି ପାରେନା ଆଜ୍ଞା ! ଆପଣମାନଙ୍କ ପରି ଲୋକ ମୋତେ ଅନୁରୋଧ କରିବେ, ମୋ ଭଲିଆ ଲୋକ ତାଙ୍କୁ ଏଡ଼ାଇ ଦେବ । ଆଜ୍ଞା ଇମିତିଆ ପାଟୁଳିଆ କଥା କହି ମାଲିକଙ୍କୁ ଭୁଲାନ୍ତି । କାମ ପାଇଗଲେ ସେମାନେ ରଜା, ଆପଣମାନେ ତାଙ୍କର ପ୍ରଜା, ବେକ ଯୋଉଆଡ଼କୁ ମୋଡ଼ିବେ ଦେଖାଇବାକୁ ପଡ଼ିବ ।"

"ପଥର ସେମାନଙ୍କୁ ପଥର କରି ଦେଇଚ । ସେମାନଙ୍କ ପାଖରେ ମଣିଷପଣିଆ ନାହିଁରେ ଦୁଃଖା, ମଣିଷପଣିଆ ବାହାରେ । ସ୍ଵା ବୋଲି ଭଲ ମିସ୍ତ୍ରୀ କ'ଣ ନାହାନ୍ତି, ନଥିଲେ ଏତେ ବଡ଼ ବଡ଼ କାମ ପୁରୁଣୁବୁରେ ହେଉଚ କପରି ?"

"ଭଲ ଲୋକ ନଥିଲେ ସଂସାର ଚଳନ୍ତାକି ଆଜ୍ଞା, ସେମାନଙ୍କୁ ଖୋଜି ପାଇବା କଷ୍ଟ । ତାଙ୍କ ରେଟ୍ ଅଧିକା କାମ ଚୋଖା । ଏମାନଙ୍କ ରେଟ୍ ଟିକିଏ କମ୍ ହେଲେ ସେମାନେ ଯାହା ଠକନ୍ତି ସେଥିରେ ମାଲିକର ମୂଳ ବୁଡ଼ିଯାଏ ।"

ଏତିକିବେଳେ ରୁଗ୍ଣସ୍ତ୍ରପକ ରୁଗ୍ଣ ଆଲୁଅ ଭିତରେ କିଏ ଜଣେ ଧୋବ-ଧାଉଳିଆ ବାବୁ ଫାଟକ ପାଖରେ ଛିଡ଼ାହୋଇ ଡାକିଲେ—

"ବାବୁ ଅଛନ୍ତି ?"

ଦୁଃଖୀ ଉଠିଯାଇ ଗେଟ୍ ଖୋଲିଦେଲା । ସେ ବାବୁ ଭିତରକୁ ଆସିଲେ ।

"ଆଜ୍ଞା . ନମସ୍କାର, କ'ଣ ବସିଛନ୍ତି, ଫୁଲୁଫୁଲୁଆ ପବନ ତ ହେଉଚି, ବାହାରେ ଟିକିଏ ବସିଗଲେ ଭାରି ଆରାମ । ଆମେ ଆଜ୍ଞା ସବୁଠୁ ଦୁଃଖୀ, ରାତି ଅଧରେ ବି କାମ, ଜୀବନରେ ଟିକିଏ ବି ବିଶ୍ରାମ ନାହିଁ ।"

"ହଁ ପ୍ରମୋଦ ବାବୁ ! ଆପଣ ଏତେ ରାତିରେ ! ଏତେ ଦିନପରେ ଆମେ ଆପଣଙ୍କର ମନେ ପଡ଼ିଲୁ କିମିତି ? ବସନ୍ତୁ ।"

"ବୁଝିଲେ ଆଜ୍ଞା, ସେଦିନର ଘଟଣା ପରଠାରୁ ମୋ ମନ ଭାରି ଅଶାନ୍ତ । ଆପଣ ମୋତେ ଭୁଲ ବୁଝିଲେ । ମୁଁ ପଥର ନପକାଇ କ'ଣ ଆପଣଙ୍କୁ କହିଲି ପଥର ପକାଇଚି ବୋଲି । ଆପଣଙ୍କର ଅଯଥା ସନ୍ଦେହ ମୋର ଶିକ୍ଷା ସଂସ୍କୃତି ଆଉ ଆଭିଜାତ୍ୟ ଉପରେ ଖୁବ ଆଘାତ ଦେଲା । ଆପଣ କ'ଣ ଭାବୁଚନ୍ତି ଏ ସଂସାରଟା କେବଳ ଅନ୍ୟାୟରେ ଚାଲୁଚି । ମୋ ବ୍ୟବସାୟ ଏପରି ଅନ୍ୟାୟରେ ଆଉ କେତେ ଦିନ ଚାଲିବ । ମୁଁ ପ୍ରକୃତରେ ଶଠ, ପ୍ରତାରକ ନୁହେଁ । ନିଶ୍ଚିତ ଭାବରେ ମୁଁ ଅଲଗା ଧାତୁର ଏକ ମଣିଷ । ଗତାନୁଗତିକତା ଠାରୁ ଟିକିଏ ଭିନ୍ନ ।"

"ପ୍ରମୋଦ ସାହାଣିଙ୍କର ଖ୍ୟାତି ଅଛି । ତାଙ୍କୁ ମୁଁ ଶଠ, ଶଇତାନ କହି ନପାରେ । ଅତୀତ କଥାଗୁଡ଼ାକ ତ ମୁଁ ଭୁଲିଯାଇଥିଲି, ପୁଣି ମନେ ପକାଇବାକୁ ଆସିଲେ କାହିଁକି ? ଆଉ କ'ଣ କିଛି କାମ ଥିଲେ କହନ୍ତୁ ।"

"ମୋ ମନ ବୁଝିଲାନି ଆଜ୍ଞା, ଆପଣଙ୍କ ଭଳିଆ ଲୋକଙ୍କ ମନରେ କଷ୍ଟ ଦେଇ ମୋତେ ଶାନ୍ତି ମିଳିନି । ଆଜି ଆଉ ଦି'ଟ୍ରିପ୍ ପଥର ଆଣି ଜାଗା ଉପରେ ପକେଇ ଦେଇଚି । ପୂର୍ବ ରାଗ ଭୁଲିଯାଆନ୍ତୁ । ଏଥର ଗୋଟାଏ ନୂଆ ସର୍ତ୍ତ । ଆପଣ ପଥର ଗଣତି କରିବେ, ବେସାଇଜ୍ ପଥର ରିଜେକ୍ଟ କରିବେ, ହିସାବ କରି ପଇସା ଦେବେ । ପେମେଣ୍ଟ ପୂର୍ବରୁ ପଥର ଚୋରି ହେଲେ ମୁଁ ସହିବି । ପଥର ଖରାପ ହୋଇଥିଲେ ଆପଣ ରଖିବେନି, ମୁଁ ଉଠାଇ ନେବି । ସେଥିପାଇଁ ବ୍ୟସ୍ତତାର କାରଣ ନାହିଁ ।"

"ଆପଣ ପଥର ପକାଇବା ପୂର୍ବରୁ ପଚାରିଲେ ନାହିଁ କାହିଁକି ? ମୁଁ ତ ସ୍ଥିର କରିଚି ଏଣିକି ଇଟାରେ କରିବି ।"

"ପଥରବାଲା ଦୋଷ କରିବ, ପଥର ଦଣ୍ଡ ପାଇବ, ଏଇଟା କ'ଣ ଗୋଟାଏ କଥା । ପଥର ଘର ନ ହେଲେ ଇଟାଘର । ଦରଦାମ ସିମିଣ୍ଟ ବଢୁଚି, ଆଜି ପଥର ଖଣ୍ଡିକର ଦାମ୍ ଦ' ଟଙ୍କା କିନ୍ତୁ ପଚିଶ ବର୍ଷ ପରେ ଏଇ ପଥର ଖଣ୍ଡିକ ସୁନା ପାଲଟି ଯାଇଥିବ । ଖଣ୍ଡିକ ଦଶଟଙ୍କାରେ ବି ପାଇବେ କି ନାହିଁ ସନ୍ଦେହ ! ଇଟାକୁ ଆପଣ ଇଚ୍ଛା ଭାବରେ ସେତେବେଳେ ପାଇବେନି । ଘର ଭାଙ୍ଗିଗଲେ ତାହା ଟେକାରେ ପରିଣତ ହୋଇଥିବ; କିନ୍ତୁ ପଥର ତକ ଥରଥର ଟେକି ଦେଲେ ଖଣ୍ଡିଏ ବି ଭଙ୍ଗା ପାଇବେନି । ରହି ରହି ପୁଣି ଏତେ ଟାଣ ହେଇଯାଇ ଥିବ ଯେ ଶାବଳ ବି ଭୁଷିବନି । ଇଟା ବୁଦ୍ଧି ଆପଣଙ୍କୁ ଦେଲା କିଏ ? ଯେଉଁଗୁଡ଼ାକ ସରକାରୀ କାମକୁ ସୁହାଏ । ଘରୋଇ କାମକୁ ନୁହେଁ । ମୋ ପଥର ନ ରଖିଲେ ନ ରଖନ୍ତୁ ପଛକେ ପଥରରେ କାମ କରନ୍ତୁ । ଇଟା ପୂରା ପୋଡ଼ ଖାଇ-ନଥାଏ, ରଙ୍ଗଦେଇ ତାକୁ ପୋଡ଼ାଇଟା ପରି କରିଥାନ୍ତି, ସାଇଜ୍ ମଧ୍ୟ ସମାନ-ନୁହେଁ । ଯେ କଥା ମନରୁ ବିଲ୍‌କୁଲ୍ ଛାଡ଼ିଦିଅନ୍ତୁ ।

ମୁଁ ଏତେ ହଇରାଣ ହରକତ ହେଇ ପାରିବନି ପ୍ରମୋଦ ବାବୁ । ଶହେ ବର୍ଷ ପରେ ମୋତେ କ'ଣ ମିଳିବ ମୁଁ ଆଜିଠୁ ତାର ହିସାବ କରି ଏତେ ଦହଗଞ୍ଜ ହେବିନି । ଯେତେବେଳକୁ ମଣିଷ ପଥରରେ ଘର କରିବ କି କାର୍ଡ଼ ବୋର୍ଡ଼ରେ ଘର କରିବ କିଏ କହିବ । ବିଜ୍ଞାନ ଯେପରି ଆଗେଇଲାଣି ମୁଁ ତ ଭାବୁଚି ଯେତେବେଳକୁ ମଣିଷ ପ୍ଲାଷ୍ଟିକ୍ ଘର ତିଆରି କରି ରହିବ । ସିମେଣ୍ଟ ଗୋଡ଼ର ଆଉ ଆବଶ୍ୟକତା ପଡ଼ିବନି କି ଏ ମିସ୍ତ୍ରୀ ପଥରବାଲାଙ୍କଠେ ଏତେ ହଇରାଣ ହରକତ ହେବିନି ।

ଘର କରିବା ମାନେ ହଇରାଣ ହରକତ ହେବାକୁ ପଡ଼ିବ ଆଜ୍ଞା, ଅବାଞ୍ଛିତ ଲୋକମାନଙ୍କୁ ଅବଧାରିବାକୁ ପଡ଼ିବ । ଠାକୁର ତ ପୁଣି ଅସମୟରେ ଗଧପାଦ ଧରିଥିଲେ । ସଂସାରରେ ଚଳିବାକୁ ହେଲେ ବାଞ୍ଛିତ ଅବାଞ୍ଛିତ ସମସ୍ତଙ୍କୁ ନେଇ ଚଳିବାକୁ ପଡ଼ିବ । ଯାହାକୁ ଆପଣ ଅନ୍ୟସମୟରେ ଅପଦାର୍ଥ ବୋଲି ଭାବୁଛନ୍ତି, ସେ ଯେ ଆପଣଙ୍କର କୌଣସି ଏକ ଅସମୟରେ ପଦାର୍ଥର ରୂପ ନେଇପାରିବ ଆପଣ ତାହା ଅସ୍ୱୀକାର କରିପାରିବେନି । ଯାହାକୁ ଆପଣ ଖୁବ୍ ବିଶ୍ୱସ୍ତ ନିକଟତର ବୋଲି ଭାବୁଥିବେ, ସେ ଯେ ତା' ବେଳପଡ଼ିଲେ ପ୍ରକୃତରୂପ ଦେଖେଇ ନଦେବ ତାର କିଛି ମାନେ ନାହିଁ । ସମୟନେଇ ଏ ସଂସାରରେ ସବୁ ଦରକାରୀ, ସବୁ ଅଦରକାରୀ । ସମସ୍ତେ ଭଲ ସମସ୍ତେ ବି ମନ୍ଦ । ଇଟାରେ କଲେ ବି ହଇରାଣ ଯେ ନ ହେବେ ତା'ର କିଛି ଅର୍ଥ ନାହିଁ । ବିନା ହଇରାଣରେ ସଂସାରରେ କିଏ ଘର କଲାଣି । କଲେ କଳାଧନବାଲା କରିପାରିବେ । ସାଧାରଣ ଲୋକଟିଏ ଘର କଲେ ଅଧା ରକ୍ତ

ଶୁଖିଯିବ, ଓଜନ ଅଧା କମିଯିବ, ବର୍ଷକୁ ଥରେ ବି ପିଲଙ୍କୁ ଡ୍ରେସ ଦେଇ ହେବନି । ସିନେମା ଦେଖା ବନ୍ଦ । ସ୍ତ୍ରୀଙ୍କ ପାଇଁ ଜନ୍ମଦିନକୁ ଶାଢ଼ୀ ଖଣ୍ଡିଏ ଦେଇ ହେବନି । ସବୁଠୁ ଦୁଃଖର କଥା ଯେଉଁମାନେ ସିଠି ମିଠିଖିଆ, ଭାତ ପାଖକୁ ଆମିଷ ଟିକିଏ ନହେଲେ ଭାତ ଛୁଅନ୍ତେନି, ତାଙ୍କୁ ଶେଷରେ ଖାଲି ଡାଲିମାରେ ସନ୍ତୁଷ୍ଟ ହେବାକୁ ପଡ଼େ । ଛିଣ୍ଡା ଚପଲରେ କାମ ଚଳିଯାଏ । କଳା ମଚମଚ କୁଞ୍ଚୁ କୁଞ୍ଚିଆ ବାଳତକ ଧୋଇ ପାଲଟିଯାଏ । ଲୋକଙ୍କର ବି ଫୁଡ଼ ପ୍ରେମର ହୋଇଯାଏ । ଆପଣ ଯେ କ ହୁଇଲ୍‌ଣ ହରକତ ହେଲେଣି ଯେ ଏତେ ବ୍ୟସ୍ତ ।

ଯିଏ କଣ୍ଟା ମାଡ଼ିଥାଏ ସେ ଯନ୍ତ୍ରଣାଟା କ'ଣ ବୁଝେ, ଅନ୍ୟମାନେ ବୁଝିବେ କିପରି ପ୍ରମୋଦ ବାବୁ । ଆପଣ ଯାହା ସବୁ କହିଗଲେ ମୁଁ ଯେ ସେସବୁ ଭୋଗୁନି, ଆପଣ ଜାଣିବେ କିପରି ।

ବୁଝିଲେନି ସାର୍, ବହୁତ ଲୋକଙ୍କୁ ମୁଁ ଦେଖିଛି, ତାଙ୍କ ସଂସ୍ପର୍ଶରେ ଆସି ଏଇମିତି ଯନ୍ତ୍ରଣା ଦେଇଛି, ତାଙ୍କ ପ୍ରତିକ୍ରିୟା ଭୋଗିଛି. ତାଙ୍କୁ ମୋର ଉଚିତ୍ ଉପଦେଶ ଓ ମଦଦ ଦେଇ ଖୁସି ତାଜା କରେଇଛି, ଭାଙ୍ଗି ଯାଇଥିବା ସମ୍ପର୍କକୁ ପୁଣ ଯୋଡ଼ିଛି, ଫେର୍ ଫୁଲ୍ ଦମ୍‌ରେ ବିଜିନେସ୍ ଚଳେଇଛି । ଯୋଉ ଘଟଣା ଗୁଡାକ ଆପଣଙ୍କୁ ଗମ୍ଭୀର ଭାବରେ ସ୍ପର୍ଶ କରୁଛି, ସେଗୁଡ଼ାକ ଆମର ପଥୁରିଆ ଦେହକୁ ଛୁଇଁ ପାରନ୍ତିନି । ପଥର ବ୍ୟବସାୟୀଙ୍କର ପଥର ଶିଖେଇଛି ଆମକୁ ପଥର ହୋଇ ଯିବାକୁ । ଯୋଉ ଗାଡ଼ି ପଥର ବୋହୁଛି ସିଏ ଶିଖେଇଛି ରାଇଟ୍ ଟାଇମ୍‌ରେ ରାଇଟ୍ କାମ କଲେ ରାଇଟ୍ ଫଳ ମିଳିବ । ଦଶ ପଇସିଆ ନଟ୍ଟିଏ ଗାଡ଼ିରେ ଦରକାର ହେଉଥିଲେ ତାହା ଯଦି ଯଥା ସମୟରେ ରିପ୍ଲେସ କରାନଯିବ, ତା'ହେଲେ ଦଶ-ଟଙ୍କିଆ ନୋଟ୍ଟିଏ ଖର୍ଚ୍ଚ କରିବାକୁ ହେବ । ଆପଣ ଯେତିକି ରାଗିବେ, ସମସ୍ୟା ଆପଣଙ୍କୁ ସେତିକି ସତେଇବ, ଯେତିକି ହସିକରି ଉଡ଼େଇ ଦେବେ, ସମସ୍ୟା ସେତିକି ଓହରି ଯିବ । ସମସ୍ୟାଟା ଗୋଟାଏ ନୃଶଂସ ଜନ୍ତୁପରି । ଅନ୍ୟର ଯନ୍ତ୍ରଣା ଦେଖିଲେ ତା'ର ଜାନ୍ତବ ପ୍ରବୃତ୍ତିଟା ବଢ଼ିଯାଏ । ମୁଁ ଯାହା, ସବୁ ପଥରବାଲା ସେଇଆ, ସବୁ ଇଟାବାଲା ବି ସେଇଆ, କେବଳ ଡିଗ୍ରୀର ବସ୍ ଫରକ । ଆପଣ ମୋତେ ଛାଡ଼ି, ଆଉ ଯାହାକୁ ଧରିବେ, ସେ ବି ଆପଣଙ୍କ ମନମୁତାବକ ହେବନି । ଆପଣ ଛାଡ଼ି ଛାଡ଼ି ଶେଷକୁ ବିରକ୍ତ ହୋଇଯିବେ । ଶେଷରେ ଜଣେ ଲୋକ ରହିବ, ସେ ଯାହା କରୁ ପଛକେ ତାକୁ ବଦଳେଇବାକୁ ଆଉ ମନ ବଳିବନି । ସେ ପ୍ରକାର ଲୋକର ଅତ୍ୟାଚାର କାହିଁକି ସହିବେ, ମୋ ପରି ବୁଝିଲା ସୁଝିଲା ପାଠ ପଢ଼ୁଆ ଲୋକ ପାଖରେ ବିଜିନେସ୍ ରଖିବେନି କାହିଁକି ? ମୁଁ ତ ସେମାନଙ୍କ ପରି କ୍ଲଣ୍ଟ

ହୋଇ ପାରିବନି । କିଛି କହୁଥିବେଲକୁ କିମ୍ବା କରିଥିବେଲକୁ ଶହେଥର ଚିନ୍ତା କରିବ । ଦେଖନ୍ତୁ, ଏଣିକି ଆପଣଙ୍କ ଇଚ୍ଛା ।

ସମରେନ୍ଦ୍ରଙ୍କ ମନ ବଦଳିଗଲା । ଯେ ଖାଲି ସହରରେ କୋଉ ଲୋକଟା ଭଲ ! ପଢୁଆ ଲୋକଟାକୁ ଗ୍ରହଣ ଲାଭ କ'ଣ । ମୂର୍ଖ ଲୋକଗୁଡ଼ାକ ସାଙ୍ଘାତିକ ଗାବରେ କୁଣ୍ଠା ··ତାଙ୍କ ଭିତରେ ଅନେକ ସରଳ ଲୋକ ବି ଅଛନ୍ତି, ତେବେ ସେମାନେ କ'ଣ ତାଙ୍କପାଇଁ ମିଳିବେ ! "ଆଚ୍ଛା ପ୍ରମୋଦବାବୁ, ମୁଁ କାଲି ସକାଳ ସାଢ଼େଟାରେ ଜାଗାପାଖରେ ପହଞ୍ଚିବି, ଆପଣ ଆସିଥିବେ, ପଥର ଗଣତି କରି-ଦେଇ ପେମେଣ୍ଟ କରିଦେବି । ଦେଖନ୍ତୁ ଏଥର ଯେପରି ମୁଁ ଠକାମିରେ ନ ପଡ଼େ ।"

ଠକାମି ଶବ୍ଦଟା ପାଟିରେ ଧରନ୍ତୁନି ଆଜ୍ଞା ! ଭୁଲ୍‌ ହୋଇପାରିଥାଏ, ସେଥିପାଇଁ କ୍ଷମା ଦେବେ, ପେମେଣ୍ଟ ପାଇଁ ମୁଁ ଆଦୌ ବ୍ୟସ୍ତ ନୁହେଁ, ଗ୍ରହ ପଡ଼ିବା ପରେ ବି ପେମେଣ୍ଟ କଲେ ଚଳିବ, ମୋର ପଇସା ଅପେକ୍ଷା ସ୍ନେହ ବେଶି ଦରକାର । ଶୁଭେଚ୍ଛା ଦରକାର । ବ୍ୟବସାୟଟା ପଇସାରେ ଚଳେନି, ଲୋକଙ୍କ ଶୁଭ ଉଇଲରେ ଚଳେ ଆଜ୍ଞା । ନମସ୍କାର, ଏତେ ରାତିରେ ହଇରାଣ କଲି, କିଛି ମନେ କରିବେନି । ଆସୁଛି । ନମସ୍କାର ।

"କିରେ ଦୁଃଖୀ, କ'ଣ କିଛି ଭୁଲ ହୋଇଗଲା ?" ଲୋକଟା ଯେତେ-ବେଳେ ପଥର ପକେଇ ସାରିଲାଣି, ଆଉ କାହିଁକି ହଇରାଣ ହୋଇଥାନ୍ତା । ସେ ତ କଣ୍ଟ୍ରାକ୍ଟ ଠିକ୍ ଭାବରେ ଦେବ, ପଥରରେ ତ ଅରାମ୍ଭ କରିଚେ, ଆଉ ବଦଳେଇବା କାହିଁକି ?"

ଭଲକଥା ଆଜ୍ଞା, ହେଲେ ଆପଣ ଏତେ ଦୟାଳୁ ହେବେ କାମ ଆଦୌ ଚଳିବନି । କି ପାଠ ସେ ପଢ଼ିଚି ··କଥାକହି ଭୁଲେଇବାରେ ତା ପାଠ ଶାଠ କାମ କରେ, ନହେଲେ ସେଇଟା ଗୋଟାଏ ଏକ ନମ୍ବର ଠକ ଥାଜ୍ଞା, ଦେଖିବେନି, 'ଫଳେନ ପରିଚୟତେ ।'

ସମରେନ୍ଦ୍ର ଦୁଃଖୀ ପାଟିରୁ ସଂସ୍କୃତ ଶବ୍ଦ ଗୁଡ଼ାକର ଉଚ୍ଚାରଣ ଶୁଣି ମନେ ମନେ ହସିଉଠିଲେ । ସୌମ୍ୟ ଘର ଭିତରୁ ବାହାରି ଆସି କହିଲେ ସେ ଲୋକଟା ତ ସବୁବେଳେ ଠକୁଚି, ତା ସାଥିରେ ଏତେ କଥାବାର୍ତ୍ତାର କାରଣ କଣ ! ଦେଖିଲ, ତମେ କଣ ତାକୁ କଥାରେ ପାରିବ । ଅଫିସ, ପଦେ ପଦେ କଥାରେ କିବିଙ୍କ ମନକୁ କିଣି ନେଇ ହଜାର ଟଙ୍କାର ବିଜିନେସ୍

କରିନେଇ ଚାଲିଗଲା । କିଏ ତାଙ୍କୁ ତ ଚାହିଁଥିଲା, ତା ମିଠାକଥାର ଅଠା-କାଠିରେ ପୁଣି ପଡ଼ିଲା କାହିଁକି ? ଆଜି କିଛିଦିନ ଭୋଗ କରିବାର ଯୋଗଅଛି ।

ଠିକ୍ ଅଛି, ଭୋଗିବାର ଥିଲେ ଭୋଗିବି । ମୋ'ପରି ଆଉ ଆଉ ଲୋକମାନେ ତ ପୁଣି ଘର କରୁଛନ୍ତି, ଏଇପରି ଦୁଃଖ ଯାତନା ବି ଭୋଗୁଛନ୍ତି । ଏଇଟା ମନ୍ତ୍ରୀ ବା ରାଜାଙ୍କ ଘର ନୁହେଁ ଯେ ସ୍ବର୍ଗର ବିନ୍ଧାଣୀ ଆସି ଏପରି ସରଳ ଲୋକକୁ ରାଜମହଲ ତିଆରିକରି ଚାଲିଯିବ । ଏଇଟା ଗରିବର ଘର, ସେ ତା ହାଡ଼କୁ ଖଣ୍ଡ ଖଣ୍ଡ କରି ଇଟା ପଥରରୂପେ ଖଞ୍ଜିବ, ଦେହର ମେଦରେ ତା ସନ୍ଧି ସବୁ ବୁଜିବ, ମାଂସରେ ତାକୁ ପଲସ୍ତରା କରି ତା ଉପରେ ରକ୍ତର ରଙ୍ଗ ବୋଳିବ, ତା ହେଲେ ତା' ଘର ଖଣ୍ଡିକ ଛିଡ଼ା ହେବ । ଯିଏ ଯାହା ଠକିବାର ଠକିଲେ, କିଛି ନ ମିଳିଲେ ବି ଲୋକ ଚରିତ୍ରଗୁଡ଼ିକର ନମୁନା ତ ମୋ ଡ୍ରୟରକୁ ଆସିଯିବ । ତାକୁ ନେଇ ମୁଁ ଆଉ ଗୋଟାଏ ଘର ଗଢ଼ିବି । ପ୍ରଭେଦ ଏତିକି ଏ ଘରଟାରେ ଆମେ ରହିବା, ସେ ଘରଟାରେ ସେମାନେ ରହିବେ । ଆମେ ପୁଣି କିଛିଦିନପରେ ମରିଯିବା କିନ୍ତୁ ସେମାନେ ସେ ଘରେ ଅମର ହୋଇ ରହିଯିବେ ।

ସୌମ୍ୟା, ହସି ଉଠିଲେ । ଦୁଃଖୀ ବୋଧହୁଏ କଥାର ମର୍ମଟା ବୁଝି ପାରିଲାନି, ସେ ସେମାନଙ୍କର ହସ ସହିତ ଗୋଟାଏ ଅବୋଧ ହସ ମିଶାଇ ଦେଇ କହିଲା—ବାବୁ ରାତି ଅନେକ ହେଲାଣି, ଏଥର ବିଶ୍ରାମ ନିଅନ୍ତୁ । ସମରେନ୍ଦ୍ର ଓ ସୌମ୍ୟା ଚାଲିଗଲେ । ଦୁଃଖୀ ସେଇ ବାରଣ୍ଡାର ଗୋଟିଏ କୋଣରେ ଅଖା ପାରି ତା ଉପରେ ଲୁଗା ଖଣ୍ଡେ ବିଛେଇ ଗଡ଼ିପଡ଼ିଲା । ବିଛଣା ଧରିଲେ ତ ମୃଦୁ ଘୁଙ୍ଗୁଡ଼ି ଆରମ୍ଭ ହୋଇଗଲା । ସୌମ୍ୟା ଗୋଟିଏ ମଶିଣା, ଖଣ୍ଡେ କନ୍ଥା ଓ ତକିଆଟିଏ ନେଇ ଆସିଲାବେଳକୁ ଦୁଃଖୀର ଗଭୀର ନିଦ । ସେ ତାର ସୁଖ ନିଦ ଭାଙ୍ଗିଲେନି ଭିତରକୁ ଫେରିଯାଇ କବାଟ ବନ୍ଦକଲେ ।



# ୯

ସମରେନ୍ଦ୍ରଙ୍କର ନୂଆଘରର ପାଖାପାଖି ଆଉ ଗୋଟିଏ ଘର ତିଆରି ହେଉଛି । ବହୁତ ଦିନ ଆଗରୁ କାମ ଆରମ୍ଭ ହୋଇଥିଲା; କିନ୍ତୁ ବିଶେଷ କିଛି ଆଗେଇନି । ସେ ଘରଆର ସବୁ ଲୋକେ ସେ ବାବୁଙ୍କୁ ଚିହ୍ନନ୍ତି । ସମସ୍ତେ କହନ୍ତି କଟକବାବୁ । ସେହି ସୁପରିଚିତ କଟକ-ବାବୁଙ୍କ ପାଖରେ ସମରେନ୍ଦ୍ରଙ୍କର ପରିଚୟ ନ ଥାଏ । ସେ ମନେ ମନେ ତାଙ୍କୁ ଖୋଜୁଥାନ୍ତି ଅନୁଭୂତିର ବିନିମୟ ପାଇଁ । ବୁଃଖା ଅନେକ ଥର ତାଙ୍କ କଥା କହୁଛି, ସେ ଘର ଶେଷ କରିବାରେ କେତେ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି···ମିସ୍ତ୍ରୀମାନେ ତାଙ୍କୁ କେତେ ଠକିଛନ୍ତି । ଲୋକଟି ସତ୍ୟ ଭାରି ଉଦାସୀନ, ଭାରି ସରଳ । ଠକାଠକି ତାଙ୍କ ଜାତକରେ ନାହିଁ । ଜଣେ ପଛରେ ଠକାମିର ଶିକାର ହୋଇଛନ୍ତି, କିନ୍ତୁ କାହାକୁ ଠକିବାକୁ ଯାଇ ଶିକାର କରିନାହାନ୍ତି ।

ସେଦିନ ସମରେନ୍ଦ୍ର ବସିଛନ୍ତି, ଘରକାମ ଚାଲିଛି, ଏତିକିବେଳେ ଜଣେ ଭଦ୍ରବ୍ୟକ୍ତି ସେଇ ଆଡ଼କୁ ମୁହାଁଇଲେ । ହଠାତ୍ ଲୋକମାନଙ୍କ ମଧ୍ୟରେ ଗୋଟାଏ ସ୍ପନ୍ଦନ ଖେଳିଗଲା । ସମସ୍ତଙ୍କ ପାଟିରୁ ବାହାରି ଆସିଲା କଟକବାବୁ କଟକ-ବାବୁ । ବୁଝିପାରିଲେ ନି ଲୋକଙ୍କ ଭିତରେ ଏ ଚହଲ କାହିଁକି ? ବୋଧହୁଏ ବାବୁଙ୍କର ସରଳ ଶାନ୍ତ ବ୍ୟବହାର ପାଇଁ ସମସ୍ତେ ତାଙ୍କୁ ଭଲପାଆନ୍ତି, ମୁହଁରେ ତାଙ୍କର ଏତେ ଅସୁବିଧା ଭିତରେ ବି ଟିକିଏ ହସ ଲାଗିଥାଏ । ନତୁବା ତାଙ୍କର ଅତି ମାର୍ଜିତ ସରଳତା ଭିତରେ ବି ଯେଉଁ ନୂଆ ରୂପଟି ନେଇଥିଲେ, ତାହା ସମସ୍ତଙ୍କର କୌତୂହଳ ବଢ଼ାଇ ଦେଇଥିଲା । ତାଙ୍କୁ ଦେଖିଲେ ସମସ୍ତେ ଭିତରେ ଭିତରେ ଚହଲିଉଠନ୍ତି । ଲୋକମାନେ ଚାପା-ହସର ହିଲ୍ଲୋଳ ଭିତରେ ହାତ ଟେକି କହିଲେ, "ବାବୁ ନମସ୍କାର, କିଏ କହିଲା ସାର୍ ନମସ୍କାର, ରେଜାଙ୍କ ଭିତରୁ କିଏ ଜଣେ ଅଧେ ବି ନ ଛାଡ଼ିଲା

କଣ୍ଠରେ କହିଲେ, ବାପ୍ପୁ ଓଳକ ।" ସପନାଁଟା ତୁନି କରି କହିଦେଲା, ଯେଉଁକ ଯେଉଁକ । ନମସ୍କାରର ସଂକ୍ରମଣ ଭିତରେ ସେ ବି ତାଙ୍କୁ ହାତ ଟେକିଲା । ସେ ପ୍ରତି ନମସ୍କାର କରିଇଲେ ।

କଟକବାବୁ ! କଟକ ନାଁଟା ପଛରେ ଯେଉଁ ମନସ୍ତାତ୍ତ୍ୱିକ ଗାମ୍ଭୀର୍ଯ୍ୟ ଓ ଚତୁରତାର ଚମକଥାଏ, ବାବୁଙ୍କ ଭିତରେ ସେ ତାହା ଦେଖିବାକୁ ପାଇଲେନି । ତାଙ୍କର କଳ୍ପିତ କଟକବାବୁଙ୍କ ସହିତ ଏ ଭଦ୍ରବ୍ୟକ୍ତିଙ୍କର ସାମଞ୍ଜସ୍ୟ ପ୍ରାପ୍ୟ ନାହିଁ । ଘର ଗ୍ରାଷର ଯାହାର ଗଳ୍ପ ପିଇଛୁ ସେ କଂଣ ଏତେ ଚଟୁଳ ଓ କୋଣ ସବୁଜ ମଣିଷ ହୋଇପାରେ ?

ସେ ଆସି ପାଖରେ ବସିଲେ । ତାଙ୍କର ମଧୁର ଆଳାପର ଆଲିଙ୍ଗନ ଭିତରେ ସମରେନ୍ଦ୍ର ନିଜକୁ ହଜାଇଦେଲେ । କଥାରେ ତାଙ୍କର ଖୁବ୍ ଆତ୍ମୀୟତା ଥିଲା । ପ୍ରକାଶ ଭଙ୍ଗୀରେ ଖୁବ୍ ସରଳତା ଥିଲା । ଆଭିଜାତ୍ୟର ଅଭିମାନ ବୋଧହୁଏ ମନକୁ ସ୍ପର୍ଶ କରି ନଥିଲା । ପ୍ରକୃତି ଥିଲା ପାହାଡ଼ ଝରଣାର କଳ କଳ ନିନାଦ ପରି ଟିକିଏ ସାମାନ୍ୟ ଫେମିନାଇନ୍ ଅଥଚ ଅତି ଆତ୍ମୀୟ । କଥା ପ୍ରସଙ୍ଗରେ ଜଣାଗଲା, ସେ ଅବକାଶ ବିଭାଗରେ କାମ କରନ୍ତି, ଯେଉଁଠାରେ ପଇସା ପାହାଡ଼ରେ ମଣିଷ ବସେ ବୋଲି ଲୋକଙ୍କର ଗୋଟାଏ କିମ୍ଭୂତ-କିମାକାର ଧାରଣା । ସେ ଥିଲେ ଅଗଣିତ ଗଡ଼ଜାତ ଦରବାରର ଗୃକିରଥା । ଶିକ୍ଷକତା ହିଁ ଥିଲା ତାଙ୍କର ପ୍ରଥମ ବୃକିଶ । ଶିକ୍ଷକତାରେ ସୁନାମ ଅର୍ଜନ କରିବା ପରେ, ରାଜା ସାହେବଙ୍କର ଧାରଣା ହେଲା ଯେ ଜଣେ ଯୋଗ୍ୟ ଚରିତ୍ରବାନ୍ ଶିକ୍ଷକ ଅବକାଶ ବିଭାଗ ପାଇଁ ଉପଯୁକ୍ତ । ଆଦର୍ଶ ଶିକ୍ଷକ ଅବକାଶ ଭିତରେ ବିକାରଗ୍ରସ୍ତ ହେବେନି, ରାଜକୋଷକୁ ତାଙ୍କର ନିଷ୍ଠାପାଇଁ ପ୍ରଚୁର ପଇସା ଆସିବ । ଶିକ୍ଷକତାରୁ ଅବକାଶକୁ ତାଙ୍କୁ ବଦଳି କରାଗଲା । ଗଡ଼ଜାତ ରାଜାମାନଙ୍କର ଏଇ ପ୍ରକାରର ଖେୟାଳ ଥିଲା । କା ଭା କେତେଟା ଗଡ଼ଜାତକୁ ଗ୍ରାହ୍ୟଦେଲେ ଅଧିକାଂଶ ରାଜ୍ୟରେ ଏଇ ପ୍ରକାରର ଶାସନ ଥିଲା । ପଣ୍ଡିତଙ୍କୁ ନେଇ ବ୍ୟୂରକ କରାଯାଉଥିଲା, ଅବକାଶବାଲାଙ୍କୁ ଦଣ୍ଡ ଦେବାପାଇଁ ଶିକ୍ଷକ ରୂପେ ବଦଳି କରାଯାଉଥିଲେ । ଶୁଣାଯାଇଛି ଡାକ୍ତର ମଧ୍ୟ ଇଞ୍ଜିନିୟର ଭାବରେ କାମ କରିଛନ୍ତି । ସମରେନ୍ଦ୍ର ଗଡ଼ଜାତ କାହାଣୀ ଶୁଣି ଆନନ୍ଦରେ ହସି ଉଠିଲେ ।

ତା'ପରେ ସେ ଆରମ୍ଭକଲେ ତାଙ୍କର ଘର ଛଅଣର ଅଦ୍ଭୁତ କାହାଣୀ । ସମରେନ୍ଦ୍ର ନୀରବ ଶ୍ରୋତା ଭାବରେ ସବୁ ଶୁଣୁଥାନ୍ତି । ଏଥି ଭିତରେ

'ପାଞ୍ଚ ପାଞ୍ଚଜଣ ମିସ୍ତ୍ରୀ ଠକଦେଇ ଚାଲିଗଲେଣି । କାହାପାଖରେ ଶହେ, କାହାପାଖରେ ପାଞ୍ଚଶହ ଏମିତି ପଡ଼ିଛି । ଘର ଜଗିବା ଲୋକ ଧନକୁ ପାଞ୍ଚଟଙ୍କା ପାଏ, ଅଥଚ ସେ ଧନ ଦିନ କେତେବେଳେ ଦେଖେ ନଥାଏ । ମୋତେ ଦେଖିଲାକ୍ଷଣି ତହିଁକି ଆସି କହେ, "ଆଜ୍ଞା; ମୁଁ ଆପଣଙ୍କ ଘର ଜଗି ପାରିବିନି । ଏ ଦାୟିତ୍ୱ ମୁଣ୍ଡେଇ ପାରିବିନି । ନାଇଟ ନାଇଟ ସେଇ ଦଣ୍ଡ ବାଲିଙ୍ଗା ଟୋକାଗୁଡ଼ାକ ଆସି ଏଇଠେ ହଂଗାମା କରୁଛନ୍ତି । ମୁଁ ତାଙ୍କ ବାପ ମା'ଙ୍କୁ ତାଗିଦ୍ କରି ଏଇ ଅବସ୍ଥା ଫେରୁଛି ।" ଆଉ କେତେବେଳେ କହେ, "ଆଜ୍ଞା, ମୁଁ ଆଉ ଛ'ମାସ ଆପଣଙ୍କ ଘର ଯଦି ଜଗିବି, ତା'ହେଲେ ମୋ ଆୟୁଷ ଦଶବର୍ଷ କମିଯିବ । ସେଇ ଯୋଉ ଓଭରସିୟର ବାବୁଙ୍କ ଏ ମାଇଁରେ ଅଛି, ସେ ତାର ଗ୍ରାହକମାନଙ୍କୁ ନେଇ ଚୁଟ୍ କରି ଏଇଠିକି ପଳେଇ ଆସୁଛି । ମୁଁ ତ ସବୁବେଳେ ରହିପାରୁନି, ବଜାର ଯିବି, ସଉଦା ପତ୍ର କରିବି । ଆସିଲାବେଳକୁ ତା' ଗୃହପାଖରେ ସି. ଆର. ପି. ପୁଲିସ୍ ବାବୁମାନଙ୍କର ଜମାଣି । ଆଜ୍ଞା, ଆଖି ଦେଖିବନି କି କାନ ଶୁଣିବନି ।

ସମରେନ୍ଦ୍ର କହିଲେ, "ସେ ମିଛ କହୁନଥିବ ଆଜ୍ଞା, ମୁଁ ତ ମୋର ଏଇ ଅଧା ତୋଳା ଘରେ ଗ୍ରୀଷ୍ମ ରାତି ଦଶଟାଯାଏ ରହେ । ସେମାନେ ବି ଏଠିକି ପଶିଆସନ୍ତି । ମୋତେ ଦେଖିଲେ ଲୁଚି ହୋଇ ଖସିଯାଆନ୍ତି । ଅବଶ୍ୟ ତାଙ୍କ ସାଥିରେ ମୋର ଢଙ୍ଗାହାଙ୍ଗିମା କେବେ ହୋଇନି । ମୁଁ ଜୀବନକୁ ବିପନ୍ନ କରିବା ଆପେକ୍ଷା ବରଂ ଚୁପ୍‌ଚାପ୍ ଖସିଯାଏ । ପାଖକୁ ଲାଗି ଆଉ ଦୁ' ଚାରିଟା ଘର ହୋଇଥିଲେ କିମ୍ବା ଦୁ' ଚାରିଜଣ ମଣିଷ ଏ ପାଖରେ ଥିଲେ ଏସବୁ ପାଇଁ ସେମାନେ ସାହସ କରନ୍ତେନି ।"

ସେ ପରା ଆଜ୍ଞା କହେ, "ମଦ ବୋତଲ ପାତାଳା ରବର ମୁଣି ନାଇଟ ନାଇଟ ଫୋପାଡ଼ି ଫୋପାଡ଼ି ମୋତେ ବଜାର ଲାଗିଗଲାଣି ସାର୍ । ଘରଟା ଜଗିଛି ସେତେବେଳେ କାମଟା ତ ପୂର୍ଣ୍ଣ କରିବି । ପେଟ ମୁଠାଏକ ପାଇଁ ମଣିଷ ନରକ ଘାଣ୍ଟୁଛି ଆଜ୍ଞା । ପୁଲିସ ବାବୁମାନେ ଡିଉଟିରେ ଆସି ଏଇଠେ ଶୋଇପଡ଼ି ରାତି ପୁହାଇ ଦିଅନ୍ତି । ଦିନବେଳା ଏଇଠେ ତାସ ପଚିଶ ଖେଳନ୍ତିଲେ, ପଦ୍ମଭାଠୁ ପନ୍ଦର ତାରିଖଯାଏ । ଘଇଡା ସରିଗଲେ ଖେଳ ବନ୍ଦ ହେଇଯାଏ । ମତେ ଡରେଇଲେଣି ଆଜ୍ଞା, କଥା ପ୍ରକଟ କରିଦେଲେ ମାରିଦେବେ ବୋଲି । ଆପଣ ଏଥର ଆପଣଙ୍କ ଘରକଥା ବୁଝନ୍ତୁ, ମୁଁ ବିଦାହେଲି । ତା'ର ସବୁଦିନେ ଏଇ ପ୍ରକାରର ଅଭିଯୋଗ । ଭିତରକୁ ପଶି କଥା ବୁଝିଲାବେଳକୁ ଏଇ କସ୍ଥଳୀ

ବୁଢ଼ାଟା ସବୁ ନାଟର ଗୋବର୍ଦ୍ଧନ । ସବୁ ଅସାମାଜିକ କାମର ଏଜେଣ୍ଟ । ସେଥିରୁ ସେ ବେଶ୍ ଦି'ପଇସା ଉପାର୍ଜନ କରୁଛି । ମଝିରେ ତାକୁ ବାହାର କରିଦେଇ ପାଞ୍ଚ ପାଞ୍ଚଟା ଲୋକ ଘୋଟାଳ ପରେ ଗୋଟେ ରଖିଲି, ତା' ପ୍ରତାପରେ କେହି ଜଣେ ବି ରହିପାରିଲେନି । କଟକ ବାବୁ ତାଙ୍କର ଅନୁଭୂତ ବର୍ଣ୍ଣନା କରି ଚାଲିଲେ, ବେଳେ ବେଳେ କଣ୍ଠ ଟିକିଏ ଓଦା ହୋଇ ଯାଉଥାଏ, ଆଖିପତା ଛଳଛଳ ହୋଇଆସେ । ଅବକାଶ ଶରୀରର କଠିନ ଖୋଳ ଭିତରୁ ସେଇ ମାଷ୍ଟ୍ରିଆ ସରଳିଆ ରୂପଟି ବାହାରି ଆସେ । ସେ ନିଜକୁ ଅସହାୟ ମଣନ୍ତି । ସମରେନ୍ଦ୍ର ତାଙ୍କୁ ଆଶ୍ୱାସନା ଦିଅନ୍ତି, ନିଜର ହତାଶ ଇତିହାସ କହି ।

କଟକବାବୁ ପୁଣି ତାଙ୍କ ଅଧୁରା କଥାର ଖିଅ ଯୋଡ଼ି କହନ୍ତି, "ବୁଝିଲେ ଆଜ୍ଞା, ଆପଣ ଜାଣିଥିବେ ଇଏତ ଏକ୍ସାଇଜବାଲା, ଅନ୍ୟକୁ ମଦ ପିଆଇ ନିଜେ ଟଙ୍କା ଗୁଡ଼ାକ ସରବତ କରି ପିଉଥିଲେ, ଝାଡ଼ା ଫେରୁଥିବେ, ଇଟା ପଥର ବଦଳରେ ଏଇ ଟଙ୍କାଗୁଡ଼ାକ ଖଞ୍ଜି ଘରତିଆରି କରିଥିବେ । ତା' ନୁହେଁ ଆଜ୍ଞା, ମୁଁ ବିଲକୁଲ୍ ସେଇ ପାଣିଚିଆ ମାଷ୍ଟ୍ରିଆ ମଣିଷ, ମାଷ୍ଟ୍ରିଆ ହୋଇ ରହିଯାଇଛି । ଅଳପକେ ସନ୍ତୁଷ୍ଟ । ଟଙ୍କା ଧରିଲେ ଦେହ ଥରିଲା । ଖାଲି ଭୟ ସେଇ କାଳ ଆଖିଆ ଧର୍ମଟାକୁ । ସେଇ ଭାଗ୍ୟଟାକୁ ତ ମୁଁ ଦେଖିନି, ତା କରାମତି ଶୁଣୁଛି, ସେଇଟା ମୋତେ ଯୋଉ ହନ୍ତସନ୍ତ କରୁଛି ନା, କହିଲେ ନସରେ । ପିଲାଦିନୁ ସେ ଭାଗ୍ୟଟା ମୋତେ ଇମିତି ଡରେଇ ଦେଉଛି ଯେ, ପୌରୁଷଟା ମୋର କଅଁଳା ବାଛୁରି ପରି ଲୁଦାମାରିବା ତେଣିକି ଥାଉ, ଚେଙ୍କ ଖିଆ ବାଉଳା ବଳେଇପରି ସବୁବେଳେ ଭୟରେ ଥରହର । ଇମିତି ବି ଗୋଟେ ଦୁଇଟା ଘଟଣା ଘଟିଯାଇଛି ଯାହାକି ଭାଗ୍ୟ ପ୍ରତି ଭୟଟାକୁ ମଜଭୁତ୍ କରି ଦେଉଛି ।

"କଣ, ସେ ଘଟଣା ଆଜ୍ଞା ! କ୍ଷମା ଦେବେ, ନାଁ ତ ଜାଣିନି, ଏଇ ଅବ୍ବା "କଟକବାବୁ" ବୋଲି ବାହାରି ଆସୁଥିଲା । ହେଃ…ହେଃ · ହେଃ… ।

ଘଟଣା କ'ଣ କି, ମୋ ଜାଗାପାଖରେ ଆଉ ଜଣେ ବାବୁ ଘର କରୁଥିଲେ, ମୋ ପଡ଼ୋଶୀ ବାବୁ, ତାଙ୍କ ସାଥିରେ ମୋର ଡାଇରେକ୍ଟ କେବେ କଥା ଭାଷା ହୋଇନି । ଶୁଣିଛି ଯେ ଜଣେ ଆଇ. ଏ. ଏସ୍. ଅଫିସର । ସେ ଘର କରିବେ ବୋଲି ଶୁଭ ପକେଇଲେ । ହୋମ ଫୋମ ଟିକିଏ କରିବାର ଯୋଗାଡ଼ ହେଲା । ତାଙ୍କ ସ୍ତ୍ରୀ ବି ଆସିଥିଲେ । କହିପାରିବି ନି, ସେ ଆମର ଓଡ଼ିଆ ଲୋକ ନା ବିଦେଶୀ ଭଦ୍ରମହିଳା · ତେବେ ବିଦେଶିନୀ ପରି ଜଣା ପଡ଼ୁଥିଲେ । ସେଫ୍ଟିପିନ୍ ମାରି

ଶାଢ଼ୀ ପିନ୍ଧିଥିଲେ, ଅଣ୍ଟାରେ ବେଲ୍ଟଟାଏ ବି ଥିଲା, ଅବଶ୍ୟ ଚମତ୍କାର ନୁହେଁ । କଳା କଳା କାଚ ଦୁ'ଦୁ'ପଟ ପିନ୍ଧିଥିଲେ,- ସୁନାକାଚ ମଝିରେ । ଦେହ ହାତକୁ ଭରି ମାନୁଥିଲା । ପାଦରେ ଅଳତାର ଗୋଟିଏ ରକ୍ତମେଖଳା ଥିଲା, ମୁଣ୍ଡ ବାଳ କଳା ମଚ ମଚ୍...କୁଞ୍ଚୁ କୁଞ୍ଚିଆ । ଆଖିରେ ଦଇଟା କଜ୍ଜଳ ଗାର କାନଯାଏ ଲମ୍ବିଥିଲା, କାନଫୁଲକୁ ଛୁଉଁଥିଲା, ନ ଛୁଉଁଥିଲା ..ଏଇମତ ।

ଆଚ୍ଛା ଘଟଣାଟା କ'ଣ କହନ୍ତୁ 'କଟକ' ବାବୁ ! କ୍ଷମାଦେବେ, ପାଟିରୁ ବାହାରି ପଡ଼ିଲା । ନାଁଟା ତ ଜାଣିନି ।

ବାହାରି ଆସିବା ଉଚ୍ଛ୍ୱାସକୁ ଗୁପି ନେବାର କାରଣ କିଛି ନାହିଁ ଆଜ୍ଞା, ମୋ ନାଁଟା ନବୀନ ବାବୁ । ନବୀନ କୁମାର ପ୍ରଧାନ । ଭେଣ୍ଡରମାନେ ଲବୀନବାବୁ ଡାକନ୍ତି । ଆପଣ ତ ବୋଧହୁଏ ସମରେନ୍ଦ୍ର ଚଉଙ୍ଗୀ...ମାନେ · ବୋଧହୁଏ ଏଇ ମୂଲିଆ ମିସ୍ତ୍ରୀମାନେ ଡଙ୍ଗୀବାବୁ ବୋଲି ଡାକନ୍ତି । ଡ଼ାକ ନାଁ ଆଉ କ'ଣ ଥିବ କେଜାଣି । ସେ ଯାହା ହେଉ କଥାଟାର ଉତ୍ସମ ଖଣ୍ଡିଯାଇଚ । ମାନେ ସ୍ୱାମୀ ସ୍ତ୍ରୀ ଦହେଁଯାକ ହୋମରେ ବସିଲେ । ମୁଁ ଘରର କାନ୍ଥରେ ପାଣି ପକାଉଥାଏ । ଏ ଦୃଶ୍ୟ ବି ଦେଖୁଥାଏ । ପେଟୁ ପଣ୍ଡିତେ ଶ୍ଳୋକଗୁଡ଼ାକ ଗାଇଯାଉଥାନ୍ତି । ହୋମ ଆରମ୍ଭ ହେଲା । କାଠରେ ନିଆଁ ଧରିଲା, ଘିଅ ଆହୁତି ପାଇ ନିଆଁ ସାଇଁ ସାଇଁ ହୋଇ ଉପରକୁ ଉଠିଲା । ଏତିକିବେଳେ ବୃଷଭାତ ଦିଗରୁ ପବନ ଝଲକାଏ ଉଡ଼ିଆସି ନିଆଁ ଶିଖା ତାଙ୍କ ଶାଢ଼ୀରେ ଚଢ଼ିଗଲା । ଶାଢ଼ୀରୁ ନିଆଁ ତ ବାହାରୁନି । ତନୁ ଯେତେବେଳେ ଉଠି ଦେହକୁ ଛୁଇଁଲା ସେ ଯନ୍ତ୍ରଣାରେ ଚିତ୍କାର କଲେ । ଆଖିପିଛୁଳାକେ ଚମ ଉପରେ ତରଳ ଶାଢ଼ୀର ଚିଆଁ ଗୁଣ୍ଡିଅଡ଼େ ମାଡ଼ିଗଲାଣି । ଯେ ଏପାଖ ସେପାଖ ଦଉଡ଼ିଲେ, ଲୋକେ ମୋ ହାତରୁ ପାଣି ପାଇପ୍‌ଟା ଛଡ଼େଇ ନେଇ ତାଙ୍କୁ ଗାଧେଇ ପକେଇଲେ । ମୁଁ ଯେତେ ବାରଣ କଲି ମୋ କଥା ମାନିଲେନି, ଦେହରୁ ଚମ ଗୁଡ଼ି ଆସିଲା, ତାଙ୍କୁ ଷଡାକୁ ଅବସ୍ଥାରେ ଗାଡ଼ିରେ ଡାକ୍ତରଖାନା ନେଇଗଲୁ, ମଝିରେ ମଝିରେ ମୁଁ ଅଜ୍ଞା, ତାଙ୍କୁ ଦେଖିବାକୁ ଯାଏ ..ଛଅମାସ ପରେ ଘରକୁ ଫେରିଲେ ବିକଳାଙ୍ଗ ହୋଇ । ସ୍ୱାକୁ ଭାଗ୍ୟ କୁହାଯିବନି ଆଉ କ'ଣ କୁହାଯିବ ଆଜ୍ଞା ।"

"ଭଗବାନ ରକ୍ଷା କରିଦେଲେ ନବୀନ ବାବୁ, ଯାହା ହେଉ ସେ ବଞ୍ଚିଗଲେ । ଆକ୍‌ସିଡେଣ୍ଟ ଇଜ୍ ଆକ୍‌ସିଡେଣ୍ଟ । ଭାଗ୍ୟ ବୋଲି କାହିଁକି କହିବା ! ମଣିଷ କେତେବେଳେ କ'ଣ ଭୋଗିବ କିଏ କହିବ ।"

"ଆପଣ ଯାହା କହନ୍ତୁ ପଛକେ ଷଡ଼ଙ୍ଗୀବାବୁ, ମୋର ଧାରଣା, ଘରଟା ଗୋଟାଏ ଅପଦେବତା । ତାର ଦୌରାତ୍ମ୍ୟ ସବୁଠୁ ବେଶି । ସେ କାହାକୁ କମିତି କଷ୍ଟ ଦିଏ କହି ହେବନି, ତା'ଛଡ଼ା ଭାଗ୍ୟକୁ ମଣିଷ ଫାଙ୍କି ଦେଇ ପାରିବନି । ସେଦିନ ତାଙ୍କର ଅବସ୍ଥା ଯିଏ ଆଖିରେ ଦେଖିଛି, ସେ କହିବ ଶତ୍ରୁକୁ ବି ଏ ଦୁଃଖ ନପଡ଼ୁ । ଆଚ୍ଛା ଆଜ୍ଞା, ଚିହ୍ନାପରିଚୟ ତ ହେଲାଣି, ଏଣିକି ଆସି ଆପଣଙ୍କ ପାଖରେ ଝୁଣ୍ଟିଯିବି । ମୁଁ ଟିକିଏ ଗପୁଡ଼ି ଲୋକ, ମାଷ୍ଟିରଆଡ, ଗୋଟାଏ ଗପଛୁ କରିଦେଲେ ମନଟା ହାଲ୍‌କା ହୋଇଯାଏ । ଏ ମିସ୍ତ୍ରୀ ମୂଲିଆ ମୋତେ ଖାଲି ଠକୁଛନ୍ତି, ଆପଣ ଅଭିଜ୍ଞ ଲୋକ, କାମ ଠିକ୍‌ତାକୁ ବୁଝିଥିବ । ଆସୁଛି···ନମସ୍କାର ।"

ବୁଢ଼ୋ ଫାଟକକୁ ଲାଗି ଆସି ତୁନି ତୁନି କହିଲା, "ଆଜ୍ଞା କଟକବାବୁ ରକ୍ଷା ପାଇଗଲେ । ସେ ଯୋଉ ଆଗ ମିସ୍ତ୍ରୀଟା ଲାଗିଥିଲା, ତାକୁ ବାହାର କରି ନ ଥିଲେ ସେ ତାଙ୍କୁ କଳାକନା ପିନ୍ଧେଇ ଦେଇଥାନ୍ତା । ମୁଁ ସବୁ ଆଖିରେ ଦେଖିଛି, ସେ ଲୋକଟା ଆଉ ଜଣେ ମାଲିକର କାମକଲା, ତା'ର ଖାସ ବିଶ୍ୱାସୀ ହୋଇଗଲା, ଭିତରର ମର୍ମ ସବୁ ଜାଣିଗଲା । ଖବର ନେଇ ବୁଝିଲା ଯେ ମାଲିକ ଏ ଜାଗାର ଲୋକ ନୁହେଁ, ତାଙ୍କର ମଧ୍ୟ ଆଗକୁ ପଛକୁ ଲୋକବଳ କେହି ନାହାନ୍ତି । ଘର କାମ ସରିବାପରେ ବାବୁ ଗାଁକୁ ଯାଇଛନ୍ତି, ଏଣେ ତା ଗାଁର ଟୋକା ଦଳକୁ ଧରି ଘରେ ଆସି ତାଲା ପକେଇ ଦେଲା । ଲେବର ଅଫିସରେ ଦରଖାସ୍ତ କରିଦେଲା ଯେ ବାବୁ ଉପରେ ତାର ଚଉଦହଜାର ଟଙ୍କା ବାକି, ସେ ତା ମଜୁରି ଏଯାଏ ପାଇନି । ବାବୁ ଫେରି ଆସି ମୁଣ୍ଡରେ ହାତ ଦେଇ ବସିଗଲେ । ସେ ଯେତେ ଧର୍ମପୁରାଣ ନୀତି କଥା କହିଲେ, ଯେତେ ଗୋଡ଼ ହାତ ଧରିଲେ, ଏ ଗୁଣ୍ଡାଲ ଆଜ୍ଞା କିଛି ଶୁଣିଲାନି, ଓଲଟି କହିଲା—ତମେ ସବୁ ପଇସା ମୋତେ ଠକିଦେଇ ପାରୁ ପାଇ ଯାଉଥିଲ ସେ ଧର୍ମ ସହୁଥିଲା, ମୋ ମଜୁରି ପାଇଲା ବେଳକୁ ଧର୍ମ ମୋତେ ସହିବନି ! ନଯାନ୍ତୁ, ବାମ୍ଭଣ ପଣ୍ଡିତ ଲୋକଙ୍କ ମତରେ ଯେତେ ପାପରୁ ତ ଅଭିଶାପ୍ୟ ଦିଅ । ମୁଁ ପଇସାଟା ପାଇଗଲେ ସେଇ ବାମ୍ଭଣଙ୍କୁ ଡାକି ହୋମଟେ କରି ଦି'ପଇସା ଦାନ ଦକ୍ଷିଣା ଦେଇ ଫେରି ତମରି ଉପରକୁ ଲେଉଟେଇ ଦେବି । ବିଚରା ବାବୁ ରସିଦ ରଖିଥିଲେ ଏତେ ହଟହଟା ହେଇ ନ ଥାନ୍ତେ । ଲେବର୍ କୋର୍ଟରେ ମକଦ୍ଦମା ପଡ଼ିଲା, ସେ ଦଉଡ଼ ଦଉଡ଼ ଆଜ୍ଞା ନୟାନ୍ତ ହେଲେ । ପ୍ରମାଣ ହେଲା ସେ ଅନ୍ୟାୟପତ୍ର ଦେଇନାହାନ୍ତି, ସବୁ ଟଙ୍କା ଦେବାକୁ ହେବ । ବହୁତ କୁହାକୁହି ପରେ

ଉତ୍ତରୋତ୍ତର ପରି କଥାଟାକୁ ଟେନିସ୍‌ନେଇ ରୁଟେଇଲେ । ଗାଁର ମୁନ୍‌ସଫ ଦ'ଶହ, ଗାଁ ଠାକୁରାଣୀ ଶହେ, ଅଫିସ୍‌ବାଲା ଦ'ଶହ ଟଙ୍କା ପାଇଲେ, ମିସ୍ତ୍ରୀ ଡାକ୍ତରଶହ ଟଙ୍କା ପାଇଲା । ଆଠଶହ ଟଙ୍କା ଦେଇ ସେ ଖାପଲୁ ମୁକ୍ତ ପାଇଲେ ଅଜ୍ଞା ।

''ସତରେ ବୁଝୁ ଏ ସଂସାରଟାରୁ ଧର୍ମ ବୁଡ଼ିଗଲାଣି । ଏତେ ଅଧର୍ମରେ ଏ ସଂସାରଟା ଚାଲୁଚି କମିତି, ମୁଁ ଖାଲି ସେଇକଥା ଭାବୁଚି ।''

''ଅଜ୍ଞା, ଲୋକଙ୍କ ଆଖି ଯେତକ ଫିଟିଲା, ପାଞ୍ଚକଥା ଯେତକ ଜାଣିଲେ, କୁଟ କପଟ, ଛଳମାୟା, ଅବିଶ୍ୱାସ, ଅଧର୍ମ ସଂସାରରେ ସେତକ ବଢ଼ିଲା, କେବେଲେ ବି ଧର୍ମ ଅଛି, ନ ଥିଲେ ଏ ସଂସାରଟା ଚାଲନ୍ତା କମିତି । ଧରମ ଡଙ୍ଗା କୋଉଦିନୁ ବୁଡ଼ିଯାଆନ୍ତାଣି । ଥରେ ଆମେ ଜଣେ ବାବୁଙ୍କର କାମ କରୁଥିଲୁ, ସେ ଧରମ ବିଷୟରେ କମିତି କଥାଟିଏ କହିଲେ ଯେ, ମୋ ମନରେ ଗାର ପକେଇଲା ପରି ତାହା ଆଜଯାଏ ବି ରହିଚି ।''

''କ'ଣ ସିଏ କହୁଥିଲେ, ଶୁଣେ ।''

ସେ କହୁଥିଲେ, ''ଜଣେ ଜଣେ ଧାର୍ମିକ ଲୋକ ପ୍ରତି ବସ୍ତିରେ କୋଉଠିରେ ଲୁଚି ଛପି ଅଛନ୍ତି । ତାଙ୍କୁ କେହି ଚିହ୍ନନ୍ତିନି । ତାଙ୍କ ମାଝରେ ଏତେ ଗୁଣ ଅଛି ବୋଲି କେହି ଜାଣନ୍ତିନି, ସେ ନିଜେ ଜାଣନ୍ତିକି ନାହିଁ କିଏ ବା କହିବ । ସୂର୍ଯ୍ୟ ଦେବତା ଦେହରୁ ଆଲୁଅ ବାହାରି ଯିମିତି ସାରା ସଂସାରଟା ଆଲୁଅ ହେଇଯାଉଚି, ସିମିତି ତାଙ୍କ ଦେହରୁ ଗୋଟେ ଆଲୁଅ ବାହାରି ସେ ଅଞ୍ଚଳରେ ଥିବା ସବୁ ଲୋକଙ୍କର ପାପକୁ ଧୋଇଦେଇ ପକାଉଚି । ସେ ଆଲୁଅକୁ ସାଧାରଣ ଲୋକ କେହି ଦେଖି ପାରନ୍ତିନି, ଯୋଉଦିନ ସେ ଲୋକ ବସ୍ତି ଛାଡ଼ି କୁଆଡ଼େ ଦୂରକୁ ଚାଲିଯାଏ, ଠିକ୍ ସେଇଦିନ ସେ ଅଞ୍ଚଳରେ ନାନା ବିପତ୍ତି ହୁଏ । ସେ ଲୋକ ମରିଗଲା ଦିନ ସେ ବସ୍ତିଟାରେ ପ୍ରଳୟ ମାଡ଼ିଯାଏ । ଅଜ୍ଞା, ଆପଣ ତ ଜାଣିବା ଶୁଣିବା ଲୋକ, କହନ୍ତୁ . . କଥାଟା କ'ଣ ସତ ?''

''ବିଲ୍‌କୁଲ୍ ସତ, ଏଥିରେ ଟିକିଏ ବି ଧିଲା ମିଲା ନାହିଁ । ଧର୍ମ ରଥଟା ତା' ପଡ଼ିଆ ଗୁଳାରେ ଚାଲିଛି । ଏଇ ମହତକଥା ଲୋକଗୁଡ଼ାକ ସେଇ ରଥ ଚକର ଗୋଟିଏ ଗୋଟିଏ ଗ୍ରେଣ୍ଟିଆ ଅଙ୍କେଲା । ଏତେ ବଡ଼ ରଥର ଭାର ସମ୍ଭାଳିଛନ୍ତି । ସେଥିରୁ ଗୋଟିଏ ଖସି ପଡ଼ିଲେ କି ଭାଙ୍ଗିଗଲେ ରଥ ନିଶ୍ଚୟ ଚୂର୍‌ମାର୍ ହୋଇଯିବ । ମଣିଷ ରଥକୁ ଟାଣୁଥାଏ, ତା'ର ଅଙ୍କେଲା ଅଡ଼ାକୁ

ବୁଦ୍ଧି ପକାଏନାହିଁ । ଯେ ସବୁଠୁ ବେଶୀ କଷ୍ଟ ପାଏ, ବେଶି ପୋଷଣ ପାଏ । ଜଣେ ଜଣଙ୍କର ଧର୍ମବଳ ସଂସାରର କୋଟି କୋଟି ଲୋକଙ୍କ ପାପଭାରକୁ ସମ୍ଭାଳି ନିଏ ।"

"ମୁଁ ସେଇ କଥାପଦକୁ ଜୀବନସାରା ଗଣ୍ଠି କରିଛି ଆଜ୍ଞା, ତେବେ ଗୁରୁଜୀଙ୍କ ଭିତରେ ଇମିତି ଲୋକ କ'ଣ ନ ଥିବେ ଆଜ୍ଞା ?"

"ନିଶ୍ଚୟ ଥିବେ···ବେଶୀ ଥିବେ···। ଧନ ସହିତ ଧର୍ମର ସମ୍ପର୍କ ବେଶି ନାହିଁ, ତାର ପ୍ରକୃତ-ସମ୍ପର୍କ ମନ ସହିତ । ବୁଝିଲୁ ଦୁଃଖୀ ।"

"ଆଜ୍ଞା ଠିକ୍ କହିଲେ, ଠିକ୍ କହିଲେ, ମନ ସାଥିରେ ଧର୍ମର ମେଳକଟା ଦେଖି, ଶାସ୍ତ୍ର ପୁରାଣ କ'ଣ ମିଛରେ କହୁଚନ୍ତି—ଯା ମନ ଯେତେ, ତା ପ୍ରଭୁ ସେତେ ।"

"ଆଚ୍ଛା, ସେ ତ ଯାହାହେଲା, ଏବେ ଆମେ କ'ଣ କରିବା ?"

"କୋଉ କଥା କହୁଚନ୍ତି ଆଜ୍ଞା ?"

"ମୁଁ କ'ଣ କହୁଚି କି, କାଲୁ ତ ପ୍ରାୟ ଉଠିଗଲାଣି, ବସାରୁ ଜିନିଷପତ୍ର ନେଇ ଏଠାକୁ ଆସିବାରେ ବହୁତ ପଇସା ଖର୍ଚ୍ଚ ହେଉଛି । ମୁଁ ଭାବୁଚି ଏଇଠେ ଛୋଟିଆ ଘରଟିଏ କରିଦେଇ ଆସ୍‌ବେଷ୍ଟସ୍ ପକାଇ ଦିଅନ୍ତୁ । ଜିନିଷପତ୍ର, ସାଜ ସରଞ୍ଜାମ ସବୁ ଏଇଠେ ରହନ୍ତେ, ସିମେଣ୍ଟ ରହନ୍ତା । ତୁ ଦେଖାରଖା କରନ୍ତୁ । ପ୍ରତିଦିନ ଘରକୁ ଯାଇ ଖାଇଆସନ୍ତୁ । ସାଇକେଲ ତ ରହନ୍ତା, ଶିଖିବୁ କି ନାହିଁ ?"

ଆଜ୍ଞା, ମୋ ମନ କଥା ଛଡ଼େଇ ନେଇ ଆପଣ କହୁଚନ୍ତି । ମୁଁ ବି ଦିନତମାମ ତାଙ୍କ କାମ ଦେଖିବି, କାମ ମଧ୍ୟ କରିବି । ସାଇକେଲ ଶିଖିଲେ ମୋ ଅପଟେକର ଚଳିବାକୁ ଅସୁବିଧା ହେବ । ମୁଁ ଚାଲି ଚାଲି ପଳେଇବି । ଆଉ ଗୋଟେ କଥା··· ।"

"ଆଉ କ'ଣ କହ, ସାଇକେଲଟେ ଅଛି ମରାମତି କରିଦେଲେ ଚଳିବ ।"

"ଆଉ କ'ଣ କି, ମା'ଙ୍କୁ ଘରେ ବହୁତ କାମ ପଡ଼ୁଚି । ଛୁଆ କାମ, ଘର ଗୋଠାକର ପାଇଟି, ରନ୍ଧାବଢ଼ା, ବାସନମଜା, ପାଣିଅଣା, ସେ ଜଣେ ଲୋକ ଏତେ କାମକରି ପୁଣି ସ୍କୁଲକରିକି ଯିବେ, ମୋ ଦିହ ସହୁନି ଆଜ୍ଞା । ମୁଁ ଟିକିଏ କାମରେ ସାହାଯ୍ୟ କରନ୍ତି, କୁନ୍‌ମୁନ ମୋ ଉପରେ ଘୋଡ଼ା ବସନ୍ତେ । ମା'ଙ୍କୁ ଟିକିଏ ତ ସାହାଯ୍ୟ ମିଳିଯାଆନ୍ତା ।"

Digitized by srujanika@gmail.com

"ତା ଠିକ୍ ଯେ, ଘରକାମକୁ ନ ଜଗିଲେ ସେପଟେ ଝଡ଼ଟା ବେଶି ହେବ । ମୁଁ ଭାବୁଥିଲି, ଝାଡ଼ୁବାଲା ସଞ୍ଜବେଳେ ନୂଆ ଘରକୁ ଆସନ୍ତି, ବଡ଼ ଯୋଗାଣି ହେବ, ସକାଳେ ତାଙ୍କ ବନ୍ଧ କରିଦେଇ ଫେରନ୍ତି । ଅପର କାଳକିଆ ଟିକିଏ ଖାଇଦେଇ ଜାଗାଠିକୁ ଯାଆନ୍ତେ । ଲୋକଙ୍କୁ କାମରେ ଲଗାଇଦେଇ ଚାଲିଆସନ୍ତେ । ମୁଁ ଦଶଟା ଯାଏ ମା'ଙ୍କୁ ଟିକିଏ କାମରେ ସାହାଯ୍ୟ କରିଦେଇ ଯାଆନ୍ତି । ଅପଣ ସଞ୍ଜବେଳେ ଅଫିସରୁ ଫେରି ଜାଗାଠିକୁ ଗଲେ ମୁଁ ଆସନ୍ତି । ଏଇମିତି ନେଉଥିବା ଚାଲିଲେ ଲୋକେ ଜାଣିଯାଆନ୍ତେ ଯେ ବାବୁ ଲୋକ କେହି ଜଣେ ଏଇଠେ ରହୁଛି, ଟିକିଏ ଡର କମିଯାଆନ୍ତା । ତା'ପରେ ଆପଣ ସଞ୍ଜବେଳେ ନ ଗଲେ କିଛି ଯାଏ ଆସେନି । କହନ୍ତୁ କଥାଟା ମନକୁ ପାଉଛି କି ନାହିଁ ।"

"ଠିକ୍ କହିଲୁ ଦୁଃଖୀ, ଏ ଘର କାମ ବି ହେବ, ସେ ଘର କାମ ବି ହେବ । ଗୋଟାଏ କଥା ପଚାରିବି ପଚାରିବି ବୋଲି ଭାବୁଛି କେବେ ପଚାରି ପାରୁନି ।"

"କ'ଣ ଇମିତି କଥାଟା ଯେ ଆପଣ ପଚାରି ପାରୁନାହାନ୍ତି, ବାପା ମା' ହିସାବରେ ଆପଣଙ୍କୁ ବାପା ମା' ପାଇଛି, କାହିଁକି ଆପଣ ପଚାରି ପାରୁନାହାନ୍ତି !"

"ଆଚ୍ଛା ମାସକୁ କେତେନେଉ, କଥାଟା ଉଠିଗଲେ ଭଲ, ତୋ' ମନରୁ ସନ୍ଦେହ ଯିବ, ମୋ ମନରୁ ଅଡୁଆ ଛୁଟିବ, ମାସକୁ ମାସ ତୋ', ଦି'ପଇସା ତତେ ଦେଇ ଦେଲେ ମୁଁ ବି ଖୁସି ।"

"ଆପଣ କ'ଣ ପଚାରୁଚନ୍ତି ଆଜ୍ଞା ? ମୋତେ ଆପଣ ବିପଦବେଳେ ଆଶ୍ରା ଦେଲେ, ପେଟକୁ ଦାନା, ଅଣ୍ଟାକୁ କନା ଦେଲେ. ଘର ଭୁଲିଯାଇଥିଲି, ଘରଟିଏ ପାଇଲି ମା' ଭୁଲିଯାଇଥିଲି, ମା'ଟିଏ ପାଇଲି, ଯାହା ହଜେଇଥିଲି ସବୁ ତ ଆପଣଙ୍କଠୁ ପାଇଲି ମୋତେ ଋଣି ଦେବେ କ'ଣ ? ଏଣିକି ମୋର ଶୁଝିବା ପାଳି । ନ ଶୁଝିଲେ ଧାରୁଆ ହୋଇ ରହିଯିବି, ମଲା ପରେ ନର୍କରେ ପଡ଼ିବି ।"

"ନା ନା ସେ ସବୁ କଥା ନୁହେଁ, ବିନାପଇସାରେ ତୁ ଖଟିବୁ କାହିଁକି ? କହ ତୁ କେତେ ଟଙ୍କା ନେବୁ !"

"ଠିକ୍ ଅଛି ଆଜ୍ଞା, ଟଙ୍କା ଦେଲେ ଆପଣଙ୍କୁ ଲୋକ ମିଳିଯିବେ, ଦୁଃଖୀଭଳି ଗୋଟିଏ ବୋଲି ପେଟ, ସେ ଆଉ ଟଙ୍କା ଖୋଜୁନି, ଘରର ଆଶ୍ରା ଟିକିଏ ଖୋଜୁଛି । ଆପଣ ଦେଇଥିଲେ, କାର୍ଯ୍ୟ ହେବେ ନ ଦେବେ, ମୁଁ ବା କ'ଣ କରିପାରିବି । ଯାଉଚି ଫୁଟ୍‌ପାଥ୍ ଉପରେ ଝୁଲୁଡ଼ିଟିଏ ମାରି ରହିବି । ରାଜଧାନୀର ରାସ୍ତା କଡ଼ରେ

ତ' ପୁଣି ଏତେ ଗୁଡ଼ାଏ ଲୋକ ଗଛତଳେ ଘର ସଂସାର ଚଳେଇଛନ୍ତି । ତାଙ୍କର ସାଥିରେ ମିଶିଯିବ, ଦି'ଓଳି ଦି'ପଟ ଲୁଚି କରେ ନାଲିଗୁ ହେଇଗଲେବି ଚଳିଯିବ । ଦ ସ୍ୱରଗଜ ମାର୍କିନ ନନା ହେଲେ ଅଣ୍ଟାକୁ ବନ୍ଧକ ପଡ଼ିବ । ସେଥିକି କ'ଣ ଅରଜି ପାରିବନି । ନ ପାରିଲେ ରେଲ ଲାଇନଟା ଦାଣ୍ଡ କେତେ ବାଟକି, ହେଲେ ମୁଁ ସେ ଦ୍ୱିନମାନିଆ କାମ କରିବନି । ବାହା ଦଇଟା ହଲେଇ ଦେଲେ ପେଟ, ପାଟି,ଅଣ୍ଟା ସବୁ ପୂରିଉଠିବ । ଆଉ ଦଇଟା ଅନାଥ ପିଲାଙ୍କୁ ବି ଚଳେଇ ନେବ ।

“ଆଚ୍ଛା, ଠିକ୍ ଅଛିରେ ଦୁଃଖା, ତୁ ଗୋଟାଏ ସମ୍ପୂର୍ଣ୍ଣ ଅଲଗା ମଣିଷ । ମୁଁ ସେ ପ୍ରଶ୍ନ ତୋତେ ଆଉ ପଚାରୁନି, ତୁ ଯଦି ସତରେ ମା'ଙ୍କୁ ମା ବୋଲି ଭାବୁଛୁ ତା ହେଲେ ତୋ' ଅଳି ଅମର୍ଦ୍ଧାଳିରୁ ଯେପରି ମା ବଞ୍ଚିତ ନ ହୁଏ । ମନକଥା ଖୋଲି ଦେବାକୁ ପଡ଼ିବ, ମା···ମା ହୋଇପାରିଲେ, ପୁଅ ପୁଅ ହୋଇପାରିଲେ ସେ ପ୍ରଶ୍ନଟା ଆଉ ଉଠିବନି । ତା' ହେଲେ ତୋର କଥା ହିଁ ହେଉ । ଅନ୍ଧମାନ ଅଙ୍କଟା ଛିଣ୍ଡେନା ସେଇଟା ସବୁବେଳେ ଅଛିଣ୍ଡା ।”

ଦୁଃଖା ଖୁବ୍ ଜୋରରେ ହସିଲା, ଏ ହସ ଚୂର୍ଣ୍ଣିଲ ମନଟା ଭିତରେ କୋଉଠି ଥିଲା କେଜାଣି ସମସ୍ତଙ୍କୁ ଚହଲେଇ ଦେଲା । ସେ କହିଲା ଆଜ୍ଞା, ମୁଁ ତୃତୀୟ ଶ୍ରେଣୀ ଯାଏ ପଢିଚି, ଆଉ ମନେଅଛି ସେ ଇସ୍କୁଲ ପିଲାଏ ସବୁବେଳେ ଟାହି ଟାପରା କରି କହନ୍ତି—

“ଦୁଃଖିଆ ପାଲ
ଅଙ୍କ ନାଁ ଧରିଲେ ବାହାରେ ମଲ ।”

ମାଷ୍ଟ୍ରେ ଭାରି ବାଡ଼ାନ୍ତି, ପିଲାଏ ଇମିତ ଚିଡ଼ାନ୍ତି, ବଗରେ ପାଠରୁ ଛାଡ଼ିଦେଲି ସେଇ ଅଙ୍କ ପାଇଁ, । ମୁଁ ଯେତେ ଅଙ୍କ କଷେ କାହିଁ ଛିଣ୍ଡେନି, ମାଷ୍ଟ୍ରେ ପିଠିରେ ଛାଡ଼ାନ୍ତି । ଆପଣଙ୍କ ପାଟିରୁ ଅଙ୍କନାଁ ଟା ଶୁଣି ହସମାଡ଼ିଲା । ଅନ୍ଧମାନଟା ପୁଣି ଗୋଟାଏ ଅଛିଣ୍ଡା ଅଙ୍କ ବାବୁ କହୁଛନ୍ତି···ହେଃ · ହେଃ···ଦୁଃଖା ପୁଣି ହସିଲା ।

ଛୋଟିଆ ଘରଟିଏ ହୋଇଗଲା ।

ଦୁଃଖା ଘର ଜଗି ରହିଲା । ତା' ପାଖରେ ସିମେଣ୍ଟ ଛଡ଼ ଘରର ଆଉ ସବୁ ଉପକରଣ ରଖାଗଲା । ଏଥି ଭିତରେ ଦୁଃଖାର ରୂପ ବଦଳିଯାଇଛି । ରକ୍ତହୀନତା କମିଯାଇଛି । ଫୁଲିଗଲା ଦେହ ସ୍ୱାଭାବିକ ଅବସ୍ଥାକୁ ଆସିଗଲାଣି । ତନାରକ୍ତ ଦେହସାରା ଖେଳିଗଲାଣି । ଜୀବନ ପ୍ରତି ତା'ର ବିଶ୍ୱାସ ଜମାଟ ବାନ୍ଧିଲାଣି । ସେହି ଛୋଟିଆ ଘର ଖଣ୍ଡିକ ତା'ପାଇଁ ଆତ୍ମମସ୍ତ ହୋଇଉଠିଛି । ପଥର କାନ୍ଥ ଭେଦ ପବନ, ବର୍ଷା,

ଶୀତ, କାକର ଘର ଭିତରକୁ ପଶିପାରେନା । ସେଥିରେ ସେ ଏକା ଶୁଏ, ସମୟରେ ଜଣେ ଅନ୍ତତଃ ମଣିଷର ଅଭାବ ଅନୁଭବ କରେ, ଅଜଣେ କିଏ ଥାଆନ୍ତା କି, ସେ ନିବିଡ଼ ଅନ୍ଧାକାର ମଧ୍ୟରେ ତା' କାନେ କାନେ ମନର ଲୁଚିଣିଆ କଥା ସବୁ କୁହନ୍ତା, ଆନନ୍ଦର ଅମୃତରୁ ନାଣିଟିଏ ତା'କୁ ଚଖାନ୍ତା । ତା' ଦୁଃଖିଲ ଜୀବନର ଘା' ଘଉଡ଼ ସବୁ ମନର ଆବରଣ ଖୋଲି ଦେଖାନ୍ତା । ସେ ଟିକିଏ ଆହା କହିଦେଇ ଅଉଁସି ଦେଲେ ସ୍ୱର୍ଗବୈଦ୍ୟ ଅଶ୍ୱିନୀ କୁମାରଙ୍କର ହାତର ସ୍ପର୍ଶପରି ଅନୁଭବ କରନ୍ତା । ଦିନ ଦିଇଟାରେ ଘା' ଘଉଡ଼ କୁଆଡ଼େ ଶୁଖିଯାଇ ଯନ୍ତ୍ରଣା ସବୁ କମିଯାଆନ୍ତା । ସତରେ ସାଥୀହରା ଜୀବନଟା କି କଷ୍ଟ !

ନିଇତି ନିଇତି ସେ ସେହି ଅନ୍ଧାରିଆ ଘରକୁ ଆସେ ।

ସାମନାଟା ଚଞ୍ଚା ଚଞ୍ଚି କରି ପରିଷ୍କାର କରିଦେଇଚି । ପଥର ଦିଇଟା ପକେଇଚି, ସେ ତା'ରି ଉପରେ ଆସି ବସେ । ଆକାଶର ମେଞ୍ଚା ମେଞ୍ଚା ତାରାଗୁଡ଼ାକ ସାଙ୍ଗରେ ଗପସପ କରେ । ଖୁବ୍ ଉଚ୍ଚରେ ଅନ୍ଧାର ଭିତରେ ପକ୍ଷୀଗୁଡ଼ାକ ଅଙ୍କାବଙ୍କା ଗାର କାଟି ଉଡ଼ିଯିବାର ଦେଖେ । ମଝିରେ ମଝିରେ କଲବୁଙ୍ଗନ ଛୁଟିକି ଆସି ତା' କାନରେ ପଡ଼େ । ସେ ତା' ଉପରେ କେତେ କଥା ଭାବେ । ଏତେ ରାତିରେ ଏତେ ଉଚ୍ଚରେ ଏତେ ଅନ୍ଧାର ଭିତରେ ସେମାନେ ଯାଉଛନ୍ତି କୁଆଡ଼େ ··କାହିଁକି ଯାଉଛନ୍ତି, ବାଟ ଦେଖାଯାଉଛି କିମିତି···। ବଡ଼ ଖଣ୍ଡେ ବାହାରି କରି ଝାଡ଼େ । ଶିର ଭ୍ରଣିବରେ ଚମକ ଖେଳିଯାଏ । ଆଉଟିକିଏ ତାଜା ହୋଇଉଠେ । ଦିନେ ଦିନେ ଆସିଲାବେଳେ ବାଟରୁ ବାଉମଜା, ଚୁଡ଼ାଭଜା, ଚିନାବାଦାମ କିଣି ଆଣିଥାଏ, ଏକୁଟିଆ ଅନ୍ଧାରରେ ବସି ତାରାମାନଙ୍କୁ ଚୁଟି ପାଟିରେ ପକାଇବାରେ ଭାରି ମଜା । ତା' ମା ଏମିତି ଅନେକଦିନ ତା' ଅଣ୍ଟିରେ ମୁଢ଼ି, ଚିନାବାଦାମ, ଚୁଡ଼ାଭଜା, ମକାଭଜା ଫୁଟିଲା ଚଣା, ଫୁଟିଲା ଶିମ୍ବମଞ୍ଜି ଆଣି ଅଜାଡ଼ିଦିଏ । ଖାଇ ସାରିବାପରେ ଏଇଟା ତା'ର ଝଙ୍କ । ଯାହାହେଲେ ଦି'ଇଟା ପାଟିରେ ପକେଇଦେଲେ ମନଖୁସି ।

ସେ ମନରେ ଅସରନ୍ତି କଥା ଥାକ ଥାକ କରି ସାଇତି ରଖିଚି ।

ମିସ୍ତ୍ରୀଠାରୁ ଏ ସଜାଇବାଟା ସେ ଶିଖିଚି । ଘରଟା ଆଉ ଅଧିକା କ'ଣ ! ଏଇ ଇଟା ପଥରକୁ ସଜେଇ କରି ଥୋଇଦେଲେ ଘର । ସେ ସବୁ ସୁନ୍ଦର ଶିଳାକୁ ଗୋଟିକ ପରେ ଗୋଟାଏ ସଜାଏ, ସୁନ୍ଦର ଗୋଟାଏ ମହଲ ତିଆରି କରେ, ତା' ଭିତରେ ମନଟା ତା'ର ପ୍ରଜାପତି ପରି ଗୋଟିଏ କୋଠରୀରୁ ଆଉ ଗୋଟିଏ କୋଠରୀକୁ ଉଡ଼ିବୁଲେ । ବହୁତ ସମୟ ପରେ ହାଇ ଆସେ, ସେ ପଥର ଉପରୁ ଉଠି

ଅଣ୍ଟା ସଳଖି ଶୋଇବାକୁ ଯାଏ । ଗୋଟାଏ କାଠର ଫ୍ରେମ ଉପରେ ଦି ଚଉକଟା ପଟା ପଡ଼ିଛି, ସେ ତା'ରି ଉପରେ ବସ୍ତା ପାରିଦେଇ ଶୁଏ । କାଠକାମ ହେଲାବେଳେ ମହାରଣା ଏ ଫ୍ରେମଟାକୁ ତିଆରି କରିଥିଲା ।

ମଝିରେ ମଝିରେ ନିଦ ଭିତରେ ସେ ତା ମା'କୁ ସପନ ଦେଖେ, ମା' ଆସି ତା ଦେହକୁ ଆଉଁସି ଦେଉଛି, ଗୋଡ଼ ହାତ ମୋଡ଼ି ଦେଉଛି, ତାକୁ ଭାରି ଉଷୁମ ଲାଗୁଛି । ଚମକିକରି ତା ନିଦ ଭାଙ୍ଗିଯାଏ, ଆଖି ଖୋଲି ଦେଖେ ସତେ ଯିମିତି ତା ମା'ର ଛାଇଟା ଘର ଭିତରୁ ବାହାରି ଯାଇ ଉପରକୁ ଉଠୁଛି···ସେ ବାହାରକୁ ବାହାରି ଆସି ଆକାଶକୁ ଚାହେଁ । ହାତଯୋଡ଼ି ପ୍ରଣାମ କରେ । ସେ ଛାଇ ଉପରର ଅନ୍ଧାର ସାଥିରେ ମିଶିଯାଏ । ଦୁଃଖା ଦୀର୍ଘ ନିଃଶ୍ୱାସଟିଏ ପକାଇ କହେ, "ମା, ତୁ କେବେ ତୋ' ପାଖକୁ ମୋତେ ନେବୁ !" ତା' ପରେ ଆଖି ବୁଲାଏ ଚାରିଆଡ଼େ, କୌଣସି ଆଡ଼େ କେହି ନାହାନ୍ତି । ଚମକିକରି ଖଣ୍ଡେ ଦୂରରେ ଗୋଟିଏ ମିଞ୍ଜି ମିଞ୍ଜିଆ ଆଲୁଅ ପଡ଼େ । ଘରର କାନ୍ଥକୁ ଅଉଜି ନିଃଶ୍ୱାସ ବନ୍ଦକରି ସେ ନିରୀକ୍ଷଣ କରେ, ଚିରଗୁଣୀ ଆଲୁଅ ନୁହେଁ ତ ! କାନପାରି ଶୁଣେ, ଚିରଗୁଣି କୁଆ କାନ୍ଦୁଛନ୍ତି ତା ଧପା ଧପା ହୃଦର କୁଆର ଛୁଟିଆସେ, ଆଖିକୁ ଖୁବ୍ ଜୋରରେ ଖୋଲି ଅନାଏ, ପୁଣି ଆଲୁଅ ଜଳିଉଠେ । ତା'ରି ଭିତରେ ଦେଖେ, ମୁଣ୍ଡରେ ପଗଡ଼ି ବନ୍ଧା ଗୋଟାଏ ନୂଆ ଫୁଟିଆ ମଣିଷ ତା' ଶିକାର ଉପରେ ଝୁଙ୍କି ପଡ଼ି ଆଦମ ଅଙ୍ଗୁଳିକୁ ଖିନ୍ ଭିନ୍ କରି ମନ୍ଥନ କରୁଛି । ବହୁତ ଥର ଦୁଃଖା ତାକୁ ଦେଖିଛି, ସେ ମିଲିଟେରିର ଜଣେ କେହି ବଡ଼ ହାକିମ ବୋଧହୁଏ... ଏଇ ବାଟେ ସାଇରି ଓଲେଇ ଗାଈଟାକୁ ନେଇ ଅନ୍ଧାରରେ ଯାଆନ୍ତି, ଦୁଃଖାକୁ ଦେଖିଲେ ହସି ହସି କହନ୍ତି, "କ୍ୟା ଆଚ୍ଛା! ଭଲ ସାହେବ ।" ସେ ବୋଧହୁଏ···ନିଶ୍ଚୟ ସେ ହୋଇଥିବେ । ସେଇଟା ସେ ଓଳେଇ ହୋଇଥିବ ।

ଦୁଃଖା ଭିତରକୁ ଯାଇ ପୁଣି ଶୁଏ । ମଶାଗୁଡ଼ାକ ଗୁଣୁ ଗୁଣୁ କରୁଥାନ୍ତି, ଚଦରଟି ଦେହରେ ପକାଇ ଦେଇ ସେ ଶୁଏ । ମଶାଗୁଡ଼ାକ ତା' ଚାରିପାଖରେ ପହଁଆରି କରି କାହିଁ ଦେହରେ ଯାଇ ବସନ୍ତି । ଓଡ଼ି ଫାଙ୍କରେ ଧସି ପଶିଲା ପରି କେତେଟା ଅମାନିଆ ମଶା ଚଦରର ଚିରବାଟ ଦେଇ ତା ଭିତରେ ପଶିଯାଆନ୍ତି, ପେଟେ ପେଟେ ରକ୍ତ ପିଇଦେଇ ଏପାଖ ସେପାଖ ହେଉଥାନ୍ତି, ସୁଯୋଗ ପାଇଲେ ଉଡ଼ି ପଳାଇବେ । କାଠ ବେଙ୍ଗଗୁଡ଼ାକ ଚଟେଇକି ଆସିବାପରେ ଘର କୋଣରେ ବାଲି ଉଖାରି ମହା ଆନନ୍ଦରେ ଶୋଇଥାନ୍ତି । ମଝିରେ ମଝିରେ ବାହାରକୁ ଯାଇ ପୋକ ଯୋକ ଖାଇ ଆସନ୍ତି । ଯେଉଁ ଦିନ ଦୁଃଖା ଖଟତଳେ ବସ୍ତା ବିଛେଇ ଗଡ଼ିପଡ଼େ ସେଦିନ ବେଙ୍ଗ-

ଙ୍ଗୁଡ଼ାକ ତା' ଉପରେ କୁଦାମାରି ଯିବାଆସିବା କରନ୍ତି । ହାତ ବାଜିଗଲେ ବେଙ୍ଗ-
ଗୁଡ଼ାକ ତା' ଉପରେ ମୂତଦେଇ ପଳାନ୍ତି । ଝଡ଼େ ଝଡ଼େ ତା' ଦେହର ଉପରେ
ଝାଡ଼ାଫେରି ଦଅନ୍ତି । ସେ ରାଗରେ ଗରଗର ହୋଇ କହେ, "ଜଗନ୍ନାଥ ତମକୁ
ସବୁ ଠିକ୍ କରିଦେବେ, ଶଳେ···ତମେ ସବୁ ମୋ ଉପରେ ପୁଣି ମୂତିବ ହଗିବ !"
ସେ ଉଠିଲାବେଳକୁ ବେଙ୍ଗମାନେ ନଥାନ୍ତି, ତା' ପରେ ସେ ସବୁ ଭୁଲିଯାଏ ।

ଆଖିରେ ନିଦ ଆସିଯାଏ ।

ଦୁଃଖୀ ସପନ ଦେଖେ ।

ସେ ଗାଁରେ ତାଙ୍କ ନିଜ କୁଡ଼ିଆଘରେ ଶୋଇଛି···ତା' ମା' କୋଳରେ
ଗୋଟିଏ କଅଁଳା ଛୁଆପରି ଶୋଇଛି, ବୟସ ତା'ର ବହୁତ କମିଯାଇଛି । ମା'
ତାକୁ କେତେ କଥା କହୁଛି, ପୁଣି ଏଇ ଘର ପରି ଲାଗୁଛି···ମା' ଦେହ ମୁଣ୍ଡ
ଆଉଁସି ଦେଇ କହୁଛି, "ବାପାରେ, ତୁ ଏକା ଏ ଜଙ୍ଗଲଟାରେ ପଡ଼ିଚୁ, ପାଖରେ
ସାହାବାହା କେହି ନାହାନ୍ତି । ବିପଦ ଆପଦକୁ ପାଖରେ ହାତ ଧରିଆର, ଟଙ୍କା
କିଛି ରଖିନୁ, ବାବୁଟା କେଡ଼େ ନିଷ୍ଠୁର ଲୋକ ମ, ତୁ ପିଲାଟା ତତେ ଏକୁଟିଆ
ପକେଇଚି । କିରେ, ତୁ ତଳଟାରେ ଶୋଇଛୁ, ବାବୁ ତତେ ମଶିଣାଟାଏ ବି
ଦେଇନି । ସିମେଣ୍ଟ, ବସ୍ତାଗୁଡ଼ାକରେ ଶୋଇଲେ ଦେହରେ ଘା' ହେଇଯିବନି ।
ଉଠ୍, ମୁଁ ପଟିଆଟିଏ ପାରି ଦେଉଚି । ମୋ କଥାଟା ପାରିଦିଏ, ଉଠ୍ ।" ଚହ୍ କରି
ଦୁଃଖୀର ନିଦ ଭାଙ୍ଗିଯାଏ । ଏଣେ ତେଣେ ଚାହେଁ, କେହି ନାହାନ୍ତି । ଫରଚୁ
ହେଇଗଲାଣି, କୁଆ କାଁ କଲେଣି । ରାସ୍ତାରେ ଗାଡ଼ି ଗଡ଼ି ଗଡ଼ିଲାଣି । ଏଇମିତି
ରାତି ରାତି କଟିଯାଏ ।

ଏଥିଭିତରେ ଦୁଃଖୀର ସମସ୍ତଙ୍କ ସାଥିରେ ଅନ୍ତରଙ୍ଗତା ସୃଷ୍ଟି ହୋଇ-
ଗଲାଣି । ଆଗେ ଯିମିତି ପରିଚୟ କେବଳ ଥିଲା । ଦୁଃଖୀର ସାମାଜିକ ସମ୍ମାନ
ଟିକିଏ ଏଥିଭିତରେ ବଢ଼ିଯାଇଛି । ଅଗରେ ମଳି ମୁଣ୍ଡିଆ ଦୁଃଖୀ ହୋଇ
ସେ ନାହିଁ । ତା' ଚେହେରାରେ ପରିବର୍ତ୍ତନ ଆସିଛି । ମୁଣ୍ଡରେ ମଝି ବଣ୍ଟାଣ ଆଉ
ମୁରବୀ ପଣିଆ ଜମାଟ ବାନ୍ଧିଛି । କଥାରେ ଭଦ୍ରତାର ସନ୍ଧାନ ଅଛି । ବେଶ ପୋଷାକ
ବଦଳିଛି । ବାବୁଙ୍କର ଅଧାରିଆ ପେଣ୍ଟ, କମିଜ, ଚପଲ ତା' ହାତକୁ ଆସିଛି । ସେ
ଦେଖିଲେ ତା'କୁ ଖାତିର ମାନୁଛି ଏଥର । ଚା ଦୋକାନୀ, ପାନ ଦୋକାନୀ···ଆଉ
ଆଉମାନେ ତା'କୁ ମଝିରେ ମଝିରେ ଦୁଃଖୀବାବୁ ବୋଲି ଡାକିଦଅନ୍ତି । ସେ
ଅବଶ୍ୟ ପ୍ରତିବାଦ କରେ ବିନୀତ ଭାବରେ କିନ୍ତୁ ବାବୁ ଡାକିବା ତା' ଶିରା ପ୍ରଶିରାରେ

ଚମକ ଖେଳାଇଦଏ । ଭାରି ମଜ୍ଜା ଲାଗେ ତାକୁ । ବାପ୍ରେ ଓ.କଟାର ଏତେ ଜଗମଗ, ଏତେ ନିଶା, ଏତେ କମାଣ । ସତରେ କ'ଣ ତା' ଭାଗ୍ୟ ଖୋଲିବ, ଯେ ଜୀବନରେ ଧ୍ୟାନୁଟିଏ ହେବ । ଆଖିର ନିବିଡ଼ରେ ଅଖିପତା ଓଦା ହୋଇ ଆସେ । ପୋଛିଦେଇ କଥା ବାଆଁରେଇ ଦଏ ।

ପାନ ଦୋକାନି ତା'କୁ ତୁନି ତୁନି କହେ, ବମ୍ବେ ଦ' ବସ୍ତା ସିମେଣ୍ଟ ବିକି ଦେବାକୁ । ପାଖରେ କମାଭ ଶାଳଟାଏ ଅଛି, ସେ ଆସି ତା'କୁ ଟେକାଟେକି କରି କହେ·· ଛଡ଼ ବିକିବାକୁ ବାଟ ବତାଇଦଏ । ତା' ହାତକୁ ବଡ଼, ଛୁ, କଲଖିଆ ବଢ଼ାଇ ଦଅନ୍ତି । ସେ ସେମାନଙ୍କର ହାତଧରି ନେହୁରା ହୋଇ କହେ, "ଭାଇ, ମୋତେ ସବୁ କହିବ, ଅଧର୍ମ କଥା କିଛି କହିବନି । ମୁଁ ପରକୁ ଠିକିବନି କି ଗୋଡ଼ ଧୋଇବନି । ଧର୍ମ କରିଚି ବୋଲି ଭଗବାନ ମୋର କିଛି ଅଭାବ ରଖି-ନାହାନ୍ତି । ଯୋଉଦିନ ଅଧର୍ମ କାମ କରିଦେବି, ସେଇ ଦିନ ମୋ ଦିହରୁ ଧର୍ମର ହିସା ଚାଲିଯିବ ।

ପାନ ଦୋକାନି ତାକୁ ବୁଝାଏ ।

ବୁଝିଲୁ ଦୁଃଖୀଭାଇ, ଧର୍ମ ଅଧର୍ମ ଏ ସଂସାରରେ କିଛି ନାହିଁ । ଯଉଟା ଯେବେ ବେଳକୁ ଧର୍ମ, ସବୁଟା ବି ଅଧର୍ମ । ଯୋଉ ମହାଭାରତ ଯୁଦ୍ଧଟା ହେଲା, ସେଇଟା କ'ଣ ଧର୍ମଯୁଦ୍ଧ ! ଅର୍ଜୁନ ଭଳିଆ ବୀର ଯୋଦ୍ଧା ବେଳକୁ ନିଜର ବାପ, ଭାଇ, କୁଟୁମ୍ବଙ୍କୁ ମୂଳପୋଛ କଲେନାହିଁ ? ସେଇଟା କୋଉ ଧର୍ମ ! ରାମଚନ୍ଦ୍ରଙ୍କ ପରି ଦେବପୁରୁଷ ରାବଣକୁ ମାରି ମନ୍ଦୋଦରୀକୁ ନେଇ ବିଭୀଷଣ ପାଖରେ ଛାଡ଼ିଦେଲେ, ଏଇଟା କ'ଣ ଠିକ୍ ହେଲା, ସେ ତ ମା' ପରି ବଡ଼ ଭାଉଜ ନା ନୁହନ୍ତି ।

ଭୁ' ଦୋକାନି କଥାରେ ଯୋଗଦେଇ କହେ, ସେଥିକି ନୁହେଁ, ସୀତାଙ୍କ ପରି ନିରୀହ ଝିଅଙ୍କୁ ରାମଚନ୍ଦ୍ର ଯୋଉ ଦଣ୍ଡ ଦେଲେ ଏଇଟା କ'ଣ ଧର୍ମ ? ତାଙ୍କର କ'ଣ ଅଭାବ ଥିଲା । ଯାଉଜୀବନ କଷ୍ଟ ଭୋଗିଲେ କାହା ପାଇଁ ! କୃଷ୍ଣ ଯେ ଗୋପୀ-ମାନଙ୍କ ଦିହରୁ ଲୁଗା ନେଇ ଲୁଚେଇ ଦେଇ ମଜା ଦେଖିଲେ, ସେଇଟା କୋଉ ଧର୍ମ । ଆଜି କାଲିର ଟୋକା ଟୋକୀଏ ସେ କଥା ପଢ଼ିଲେ, ସେ କଥା ସିନେମାରେ ଦେଖିଲେ ରାସ୍ତାରେ ଆଉ ମଣିଷ ଚାଲିବୁଲି ପାରିବେ କି । ତୁ କିଣ 'ଧର୍ମ ଧର୍ମ ଖାଲି କହୁଛୁ ! ଏ ଧର୍ମଟା ଖଣ୍ଡାଧରି ଆମପରି ଗରିବ ଗୁରୁବାଙ୍କୁ ଖାଲି ଜଗିଚି, ଟିକିଏ ଏପଟ ସେପଟ ହେଲେ ବେକରେ ଚେଙ୍କ ପକାଇବ । ଧନୀ ଆଉ ବଡ଼ ବଡ଼ ଲୋକଙ୍କୁ, ହାକିମ ହୁକୁମାଙ୍କୁ ଅଧର୍ମ ରାସ୍ତାଟା ସାହାଣ ମେଲା । ସେ ଯାହା ମନ ତା' କରିପାରିବେ···ସେତେବେଳକୁ ଧର୍ମ କୁଆଡ଼େ ଗଲା !

ଦୁଃଖୀ କହେ, "ମୁଁ ବୁଝୁଚି ଯେ ଆମେ ଭିତରର ଗୁମରଟା କେହି ଜାଣିନେ ବୋଲି ଏଇଆ ହଉଚି । ମହା ମହା ପଣ୍ଡିତ ଶାସ୍ତ୍ର ପୁରାଣ ଲେଖିଚନ୍ତି, ସେମାନେ କ'ଣ ମୋଦକଖାଇ ଢୁଳେଇ ଢୁଳେଇ ଏ କଥାଗୁଡ଼ାକ ଲେଖିଚନ୍ତି, ତାଭିତରେ କେହି ଅସଲ ଗୁମର ଅଛି, ଆମେ ବୁଝି ପାରୁନେ ।"

ଲେମ୍ପୁ ବୁଝିବୁ...ଲୁଣ ବୁଝିବୁ । ଲୋକେ ପଢ଼ିବେ ବୋଲି ତ ଶାସ୍ତ୍ର ପୁରାଣ ଲେଖାଗଲା । ସେମାନେ ଯଦି ବୁଝି ନ ପାରିଲେ ତାଙ୍କ ଗୁମର ତାଙ୍କ ପାଖେ ଥାଉ । ଆଚ୍ଛା, ମଣିଷଗୁଡ଼ାକ ସିନା ଭୁଲ୍ କରି ପକଉଛନ୍ତି, ନିଜେ ଭଗବାନ୍ କଣ ନ-କରୁଛନ୍ତି । ପୋଖରୀରେ ଯୋଉ ମାଛ ସବୁ ଅଛନ୍ତି ସେମାନେ ବଞ୍ଚିଛନ୍ତି କିପରି ! ବଡ଼ ମାଛ ସାନ ମାଛକୁ ଖାଉଚି...ସାନ ମାଛ । ନଗିଳିଲେ ସେ ବଞ୍ଚିବନି...ଏଇଟା କୋଉ ନ୍ୟାୟ...କୋଉ ଧର୍ମ । ଆରେ ବୋକା, ସେ ବାବୁଭୟା ଧନୀଲୋକଗୁଡ଼ାକ ବଡ଼ ମାଛ, ଆମେ ସବୁ ସାନ ଲୋକ ସାନ ମାଛ । ଆମକୁ ନଖାଇଲେ ସେମାନେ ବଞ୍ଚିବେନି । ଗୋଟିଏ ଗୋଟିଏ ବାହା ଧରେଇ ଦେଇ ଜାଲ ଭିତରେ ବନ୍ଧ-ରଖିଛନ୍ତି । ଧର୍ମ ଗାଡ଼ିଆରେ ବୁଡ଼ିଛେ ତ, ଜାଲଟା ଆମ ଆଖିରେ ପଡୁନି । ତାଙ୍କର ଦରକାରବେଳେ ଟାଣିଦେବେ, ଆମେ ସମସ୍ତେ ଛଟପଟ ହେଲାବେଳେ ଗୋଟେ ଦଇଟାଙ୍କୁ ନେଇ ଗିଳିବେ, ଆଉମାନଙ୍କୁ ପୁଣି ଗାଡ଼ିଆକୁ ଛାଡ଼ିଦେବେ ସେଇ ଜାଲ ଭିତରେ । ସେମାନେ ମରଣ ମୁହଁରୁ ଫେରିଆସି ଭାବିବେ, ଓହୋ ଧର୍ମ ରଖିଦେଲା, ବାବୁ ବଡ଼ ମହତକିଆ ଲୋକ, ଆମ ଛଟପଟରେ ବ୍ୟାକୁଳ ହୋଇ ସେ ରକ୍ଷା କରିଦେଲେ । କି ଧର୍ମ ନକଲେ ସେ ! କି ଧର୍ମବଳ ଆମର ନଥିଲା ! ବୁଝିଲୁ ଦୁଃଖୀ, ବାବୁଆଣିର ଜାଲରେ ପଡ଼ିଚୁ, ବଡ଼ମାଛ ନିଶ୍ଚେ ଗିଳିବ । ସେ ତତେ ପାଟିରେ ପୂରେଇ ଚୋବେଇଲାବେଳେ ତୁ ଧର୍ମଟାକୁ ପାଟିରେ ପୂରେଇ ଚୋବଉଥିବୁ । ଚୋବେଇ ଚୋବେଇ ପିଠଉ ହେଇଗଲେ ସେ ତୋତେ ଆଉ ତୋ ଧର୍ମକୁ ଏକା ଥରକେ ଢୋକି ଦେବସେ ତା ପେଟ ଦରିଆରେ ଯାଇଁ ଭଜିଥିବୁ ।" ଏକା ନିଃଶ୍ୱାସରେ କହିଗଲା ସେଇ କମାର ପିଲା । ଦୁଃଖୀ ଉଁ କି ଚୁଁ କିଛି କହିପାରିଲାନି ।

ଗରଖିମାନଙ୍କ ଭିତରୁ କେତେଜଣ ଆସି ତ୍ରିକିଆରେ ଯୋଗଦିଅନ୍ତି । କା' ହାତରେ ପଥରକଟା କୁରାଢ଼ି, ଗଇଁ, ଓଳମ, କରଣି । କାହା ହାତରେ କଡ଼େଇ ବେଲଚା, ଫାଉଡ଼ା । ସେମାନଙ୍କ ଭିତରୁ କେହି କେହି କହନ୍ତି, "ଦୋକାନୀ ବାବୁ ଯାହା କହୁଛନ୍ତି, ତା ବିଲ୍‌କୁଲ୍ ଠିକ୍ । ଆମେ ଖଟି ଖଟି ଆମ ରକ୍ତ ପାଣି ଫାଟିଯାଉଚି, ଦେହରୁ ବାହାରି ଯାଇ ମାଟିଭିତରକୁ ପଶୁଚି । ମାଟି ଭିତରେ ପେଟ୍ରୋଲ୍, ଡିଜେଲ ପାଲଟି ଯାଉଚି । ତାକୁ ଆଣି ବାବୁଭୟା, ଧନୀ

ଲୋକମାନେ ତାଙ୍କ ଗାଡ଼ିରେ ଯାଉଛନ୍ତି, ତାଙ୍କ ଗାଡ଼ି ପବନ ପରି ଉଡ଼ୁଛି ପୁଣି ଆମ ପିଲା ଛୁଆଙ୍କୁ ରାସ୍ତାରେ ଚାପିଦେଇ ପଳାଉଛି । ଏଇଟା କ'ଣ ଧରମ ରାଇଜର ଗୁମର । ଅସଲ କଥାଟା ହେଲା ସେମାନେ ତାଙ୍କ ବାଟରେ ଯାଆନ୍ତୁ ଆମେ ଆମ ବାଟରେ ଯିବା; ସେମାନେ ଯିମିତି ଛକାପଞ୍ଝାରେ ଅଛନ୍ତି, ଆମେ ବି ସିମିତି ରହିବା, ବାଗ ପଡ଼ିଲେ ସେ ଆମକୁ ଗିଳିବେ ଆମେ ବି ତାଙ୍କୁ ଗିଳିବା ।"

କେତେଜଣ ହସିହସି କହିଲେ, "ତମ ଦାନ୍ତି ଯାଉ ପେଟ ଯାଉ, ଗିଳିବ କିମିତି ? ଗିଳି ନ ପାରିଲେ, ଥାନ ଅଥାନରେ ଗୁଣ୍ଡି ପକେଇଲେ ରଥ ଚଳିବନି, ତା'ପରେ ଦେଖିଲୁକାମ କରିବାନି ।"

ଏତିକିବେଳେ ଦୂରରୁ ସରଦାରର ଅଭିଯାନ ବନ୍ଧୁକର ଶବ୍ଦଗୁଡ଼ାକ ତାଙ୍କ କାନରେ ପଡ଼େ । ତାଙ୍କ ସଭା ଭାଙ୍ଗିଯାଏ । ସେମାନେ ଟିକିଏ ଇତସ୍ତତଃ ହୋଇଉଠନ୍ତି । ପ୍ରତ୍ୟେକ ନିଜନିଜର ହତିଆରପତ୍ର ଧରି କାମକୁ ବାହାରନ୍ତି । ଗଲାବେଳେ ଦୋକାନରୁ ପାନ, ଧୂଆଁପତ୍ର, ଦୋକତା, ବିଡ଼ି, ପିକା, ଗୁଣ୍ଡାଖୁ, ଯାହାର ଯାହା ଦରକାର ନେଇ ଯାଆନ୍ତି । ଅତି ବେଶି ହେଲେ କେହି କହିପକାଏ, "କାହିଁକି ସିମିତି ଗାଳୁ ଗାଳୁ ହଉଛ ମ ! ସକାଳଟାରୁ, କିଏ ବାଜି ପାଇଛି ଉପରକୁ ଗଲାଣି ଯେ ଆମେ ଯାଇନୁ ବୋଲି ଏତେ ପାଟି । ମଣିଷ କ'ଣ ଦି ଘା ଟିକିଏ ଖାଇବନି ନା କ'ଣ !" ସମସ୍ତେ ଚାଲିଗଲେ ।

ଘିଅ ଦୋକାନୀ, ପାନଦୋକାନୀ ଦୁଃଖୀକୁ ବେଞ୍ଚରେ ବସାଇ ଦୁହେଁ ତା ପାଖରେ ବସିଲେ । ତା କାନ୍ଧରେ ହାତ ପକାଇ ଦୁହେଁ ତା' କାନରେ ପୁଣି କହିବାଟା ଆରମ୍ଭ କରିଦେଲେ ।

ଘିଅ ଦୋକାନୀ କହିଲା, "ବୁଝିଲୁ ଭାଇ, ତୁ ଯୋଉ ଧର୍ମ ବାଟଟା ଧରିଛୁ ସେଇଟା କିଛି କାମର ନୁହେଁ । ଧର୍ମ ଧାରଣା ଏ ଜଗତ, ଧର୍ମରେ ସବୁ ଆତଯାତ । ମୁଁ ମନା କରୁନି, ହେଲେ ଧର୍ମକୁ ରଖିବ ବୋଲି ନିଜ ଜୀବନଟାକୁ ଦେଇଦେବା ନା କଣ ! ଧର୍ମକୁ ଜଗି ଜଗି ମୋ ମଣିଷପଣିଆ ସରିଗଲା । ମୁଁ ଆଜି ଫୁଟପାଥ୍ ଉପରେ ଝୁପୁଡ଼ି କରି ଘିଅ ବିକୁଛି । ଟିକିଏ ଯଦି ଧର୍ମକୁ ଆଖି ବୁଜିଦେଇଥାନ୍ତି ତା ହେଲେ ମଣିଷଭଳି ମଣିଷ ହୋଇ ବସିଥାନ୍ତି । ତୁ ଯଦି ମୋ କଥା ଶୁଣିବୁ, କହିବି..ସେ ଧର୍ମଟା ମୋ ଆଖିରେ ଥରେ ପଡ଼ନ୍ତା କି, ମୁଁ ତା ତଣ୍ଟି ଚିପିଦେଇ ସତୁରି ଅନ୍ତ କାଢ଼ି ଆଣନ୍ତି ।"

ଦୁଃଖୀ ଆଗ୍ରହର ସହିତ ପଚାରିଲେ, "ସତରେ ଭାଇ ? ଆଛା କହିଲୁ ତୋର କ'ଣ ହେଲା ।"

"ମୁଁ ଜଣେ ବଡ଼ବାବୁଙ୍କ ଘରେ ଅର୍ଦ୍ଦଳୀ ଥିଲି । ତାଙ୍କ ଘରେ ପାଞ୍ଚ ପାଞ୍ଚଟା ଚାକର । କିଏ ଖାଇବା କଥା, କିଏ ବଗିଚା ବାଡ଼ି କଥା, କିଏ ଘରଦ୍ୱାର ସଫା କଥା ତ ଆଉ କିଏ ରନ୍ଧାବଢ଼ା କଥା ବୁଝେ । ବାବୁ ଆମର ଭାରି ଟାଣୁଆ ଲୋକ । ତାଙ୍କ ମରଜିରେ ମନ୍ତ୍ରୀ ମଣ୍ଡଳ ଗଢ଼ାଯାଏ, ଭୁଶୁଡ଼ି ଯାଏ । ସେତେକ ଅମଲା, ଅଫିସର, ମନ୍ତ୍ରୀ ତାଙ୍କ ହାତ ମୁଠାରେ । ସିଏ ଯୋଉ ଦଳର ହୁଅନ୍ତୁ ପଛକେ, ସେତେକ ଏମେଲେ ସମସ୍ତଙ୍କର ଆଖଡ଼ା ତାଙ୍କର ଘରେ । ସେଇଠେ ବାଘ ବକରା ଏକା ତୁଠରେ ପାଣି ପିଅନ୍ତି । ଘରଟା ସବୁବେଳେ ହାଉଯାଉ, ସବୁବେଳେ ଲୋକ ଗହଳି । ମା'ଙ୍କର ସାତଦିନକୁ ସତର ପର୍ବ, ମଠା ଖଣ୍ଡିଏ ପିନ୍ଧି, ମାଳକୁ ବେକରେ ଗୋଡ଼ାଇ ଠାକୁରଙ୍କ ଘରେ ଦିନସାରା ବସିଥାନ୍ତି । ତାଙ୍କ ଠାକୁର ଭଲ ତ ସେ ଭଲ । ସେ ଏ ସବୁର ଧାର ଧାରନ୍ତିନି । ଝିଅଟି ଝିଅଟି ଆଉ ଜଣେ ଜଣେ ବାବୁଆଣୀ ଆସନ୍ତି । ବାବୁଙ୍କ ଡ୍ରଇଂ ରୁମ୍‌ରେ ସେ ପଶିଲେ ତାଙ୍କ ଚାରିପାଖରେ ଲୋକଙ୍କର ଜମାଣ ବେଶି । କିଏ କାନ ପାଖରେ କ'ଣ କହେ, କିଏ ହାତକୁ କ'ଣ ବଢ଼ାଇ ଦିଏ, କିଏ ଖାଲି ନାକୁଡ଼ି ମିନତି ହୁଏ, କିଏ ଅଣ୍ଠା ପରିହାସ ବି କରେ । ବୈଠକଖାନାର ସେ ମାମଲତକାରଣୀ । ବାବୁ ବୈଠକଖାନାର ପାଖ ଘରେ ବସିଥାନ୍ତି । ସେଇଠେ ସବୁ ଯେତପାଞ୍ଚ, ଭଙ୍ଗାଗଢ଼ା, ମାରଣ ତାରଣ, ଠିକ୍ କରାଯାଏ । ମଝିରେ ଆସି ବୈଠକଖାନାରେ ଭକ୍ତମାନଙ୍କୁ ଦର୍ଶନ ଦେଇ ଚାଲିଯାଆନ୍ତି । ଚାଲିବେଳେ କହନ୍ତି, "ମାଡ଼ାମଙ୍କୁ ଯାହାର ଯାହା କହିବାର କହନ୍ତୁ । ସେ ସବୁ ମୋତେ ପରେ କହିବେ ।"

ସେ ବାବୁଙ୍କ ଅଫିସ ଲୋକ ନା କ'ଣ ! ନହେଲେ ବାବୁଙ୍କର ଏତେ ବିଶ୍ୱାସୀ ହୁଅନ୍ତେ କିମିତି !

ମୁଁ ତ ଆଗେ ସେଇଆ ଭାବୁଥିଲି, ବୁଝୁ ବୁଝୁ କଣନା ସେ ଆଉ ଜଣେ ବାବୁଙ୍କ ବାବୁଆଣୀ, ସବୁଦିନେ ଅଫିସ ଗାଡ଼ି ଯାଏ, ତାଙ୍କୁ ତାଙ୍କ ଘରୁ ନେଇଆସେ, ସେ ସଞ୍ଜ ଛଅଟାରେ ଆସନ୍ତି, ଫେରୁ ଫେରୁ କୋଉଦିନ ରାତି ଏଗାର, ବାର । ଦିନେ ଦିନେ ଦି'ପ୍ରାଣୀଯାକ ଆସନ୍ତି, ଆମ ବାବୁଙ୍କ ଅଫିସରେ କାମ କରନ୍ତି ନା କ'ଣ । ବାବୁଆଣୀଙ୍କୁ ଛାଡ଼ିଦେଇ ଯାଆନ୍ତି । ଆମ ବାବୁ ତାଙ୍କୁ ଦିନେ ନଦେଖିଲେ ଅନ୍ଧ । ବାବୁଆଣୀ ଏତେ କଥା ଜାଣିବେ ବା କାହିଁକି, କିଏ ତାଙ୍କୁ କହୁଛି । ସେ ଭାବନ୍ତି ଅଫିସ ଲୋକ ହୋଇଥିବେ । ଦିନେ ଦିନେ ପୂଜାସାରି ବାବୁଆଣୀ ଭୋଗ ନେଇ ବୈଠକ ଘରକୁ ପଶିଆସିଲେ ଇଏ ଏପାଖ ହୋଇ ଲୁଚନ୍ତି, ନହେଲେ ଫାଇଲଟେ ନେଇ କାର୍ ପାଖକୁ ଚାଲିଯାଆନ୍ତି । ଡ୍ରାଇଭରଟା ସ୍ୱାଙ୍କର ହାତ

ବାରଣି, ଭାରି ଓସ୍ତାଦ, ତା'ଙ୍କୁ କିଛି ସମୟ ପାଇଁ କୁଆଡ଼େ ନେଇଯାଇ ପୁଣି ଫେରନ୍ତି । ଲୋକବାକ ନଥିଲାବେଳେ ବାବୁଙ୍କ କାନରେ ମନ୍ତ୍ର ଫୁଙ୍କନ୍ତି, ଏ ଅଫିସରଟା ଖରାପ, ସେଟା ଖରାପ, ସେଟା ଲାଞ୍ଚ ଖାଉଛି, ସେ ଆପଣଙ୍କୁ ମାନୁନି ସେ ବଦନାମି କରୁଛି । ଅମୁକ ଜିଲ୍ଲା ଅଫିସର ମାସକୁ ମାସ ଯାହା ଦିଏ ଏଥର ହାର୍ କମେଇ ଦେଇଚି, ମନ୍ତ୍ରୀଙ୍କ ପି.ଏଙ୍କ ଶାଳୀଙ୍କ ପିଲା ସ୍କୁଲଯିବାକୁ ସବୁ ଦିନେ ଗାଡ଼ି ଯାଇପାରୁନି, ଯେ ଭାରି ଖପ୍‌ପା, ଇମିତି କେତେ କ'ଣ ।"

ଦୁଃଖୀ ଏ ଅଫିସ କଥାଗୁଡ଼ାକ କିଛି ବୁଝୁଥାଏ କିଛି ବୁଝୁନଥାଏ । ତଥାପି ମନଦେଇ ଶୁଣୁଥାଏ । ଭାବୁଥାଏ ଗ୍ର'ବାଲର ଏଥିରେ ଛତିହେଲା କ'ଣ ! ତା ଅର୍ଦ୍ଦଳୀ ଚାକିରି ଗଲା କିମିତି, ସେ ତ କାହିଁ ସେକଥା କିଛି କହୁନି । ମଜାଳିଆ କଥା ତ ପକେଇଚି, ସେତକ ସାରିଲେ ତା ଦୁଃଖକଥା କହିବ । ପାନଦୋକାନ ଖୋଲିଛାଡ଼ି ତାକୁ ଆଉ କେତେକ ପ୍ରଶ୍ନ ପଚାରୁଥାଏ ସେ ବି ଗଳା ଚିପି ଚିପି କେତେଟା ଆପତ୍ତିଜନକ କଥା କହୁଥାଏ ।

ଦୁଃଖୀ କହିଲା, "ଏଥର ତୋ' କଥା କହ ।"

ବୁଝିଲୁ ଦୁଃଖୀଭାଇ, ମୋ କଥାବି ସେଇଟା ପରି ଥିଏ । ବାବୁ ଦିନେ ଷ୍ଟୋର ବାବୁଙ୍କୁ ଡାକି କହିଲେ—ପଚିଶବସ୍ତା ସିମେଣ୍ଟ ତାଙ୍କ ନୂଆଘରକୁ ପଠାଇବାକୁ । ଷ୍ଟୋରବାବୁ ଭାରି ସଚ୍ଚୋଟ ମଣିଷ । ଲଙ୍କାର ଫନ୍ଦର ଭିତରେ ସେ ପଶନ୍ତିନି । ସେ କହିଲେ ଲେଖିଦିଅନ୍ତୁ ଦେବି । ବାବୁ ମନାକଲେ, କହିଲେ ଚଳେଇ ନିଅ । ଇଏ ସିଧା ମନାକଲେ, କହିଲେ ଚଳେଇ ପାରିବିନି ।

"କାହିଁକି, ତମ ବାବୁ କ'ଣ ଇଞ୍ଜିନିୟର ବାବୁ କି ?"

"ହଁ, ନହେଲେ ଏଡ଼େ ଗୋଦାମ ଆସିବ କୋଉଠୁ ।"

"ତା'ପରେ କ'ଣ ହେଲା ?"

"ତାପରେ ଷ୍ଟୋର ଚେକ୍ କରି ତାଙ୍କୁ ସସ୍‌ପେଣ୍ଡ କଲେ । ଶେଷରେ ଚାକିରିରୁ ବାହାର କରିଦେଲେ । ଏ କଥାଟା ମୋତେ ଭାରି ବାଧିଲା । ସମ୍ଭାଳି ନ ପାରି ମା'ଙ୍କୁ କହିଲି ବାବୁଙ୍କୁ କହି ତାଙ୍କ ଚାକିରି ରଖିବାକୁ । ବାବୁ ତ' ମୋ ଉପରେ ନିଆଁ ବାଣ । ମା'ନକହୁଣୁ, ସେ ମାଇକିନାଟା ତାଙ୍କ କାନରେ ମନ୍ତ୍ର ଫୁଙ୍କିଦେଲା । ଅଫିସକୁ ଗଲାବେଳକୁ, ମୋ ବଦଳି କାଗଜ ବାହାରି ସାରିଲେଣି, ଜଗପୁର ବଦଳି ହେଇଚି । ଏଠିକାର ଟେଂପରାରି ଚାକିରିକି ଉଡ଼େଇ ଦେଇଚନ୍ତି, ସେଠେ ପୁଣି ନୂଆକରି ଚାକିରି ଆରମ୍ଭ କରିବି ।

ଆଖିରୁ ଗଡ଼ିଆସୁଥିବା ଲୁହକୁ ପୋଛିପକାଇ କହିଲା, "ମୁଁ ଶୁଣିଛି, କେତେ ପାପୀ ପାଉଥାନ୍ତି ଶେଷ ଜନ୍ମ ତଳେ ପରକୁ ପଠେଇଥାନ୍ତି । ସ୍ୱର୍ଗାକଡ଼ରେ ସୁ ବଳୁଚି । ଆଚ୍ଛା କହିଲୁ ଭାଇ, ଏ ସଂସାରରେ ଧର୍ମ ଅଛି ? ମୁଁ କି ପାପ କଲି ଯେ ଏ ଦୁଃଖ ପାଉଛି । ଏବେ ରାଜମହଲ ପରି କାପିଟାଲ୍‌ରେ ପାଞ୍ଚ ପାଞ୍ଚଟା ବିଲ୍‌ଡ଼ିଙ୍ଗ ମାସକୁ ପାଞ୍ଚ ହଜାର ଟଙ୍କା ଭଡ଼ା ଆସୁଚି ସେ ବାବୁଙ୍କର । ଶୁଣିଲି ସେ କୋଉ ଗୋଟାଏ ବଡ଼ ପାହ୍ୱାକୁ ଉଠିଗଲେଣି ।

"ଆଉ ମା, ସେ କଣ ସେଇ ଦିଲ୍ଲୀରେ ?" ପଚାରିଲି ଦୁଃଖୀ ।

ନାଁରେ ଭାଇ ସେ ଚଣ୍ଡାଳ ମା'ଙ୍କୁ ବାହାର କରିଦେଲା । ସେ ଯୋଉ ବାବୁଆଣୀଟା ଅଫିସକୁ ଆସେ ତାର ସବୁ ଫନ୍ଦିରେ । ସେ ତା' ବାବୁକୁ ଛାଡ଼ିଦେଇ ସ୍ୱା ସାଥିରେ ଚାଲିଗଲା । ମା'ଙ୍କ ଭାଇ ମନଦୁଃଖ କରିବାକୁ ବାହାରିଲେ, ହେଲେ ବାବୁଆଣୀ ମା' ରାଜି ହେଲେନି । କହିଲେ ସେ ଦୁଃଖରେ ରହିଲେ । ନିଜ ନାଁରେ ଯୋଉ କୋଠାଟା ଥିଲା ତା'ର ଭଡ଼ାରେ ସେ ଚଳୁଚନ୍ତି । ପିଲାଏ ବଡ଼ ହୋଇ ଗଲେଣି । ବଡ଼ ପୁଅ ଡାକ୍ତର, ସାନ ଝିଅ ଏବେ ଜଣେ ଇଞ୍ଜିନିୟରକୁ ବାହାହେଲେ, ସେ ବି ଚାକିରି କରୁଚନ୍ତି । ମା' ତାଙ୍କ ଠାକୁରଙ୍କୁ ନେଇ ଶାନ୍ତିରେ ଅଛନ୍ତି । ମୁଁ ମଝିରେ ମଝିରେ ଯାଏ । ଝିଅ ବାହାଘରକୁ ବି ଯାଇଥିଲି । ଆଚ୍ଛା କହିଲୁ ଭାଇ, ଧର୍ମ କୋଉଠି ଅଛି । ଏତେ ବଡ଼ ଧାର୍ମିକ ସ୍ତ୍ରୀ, ଲକ୍ଷ୍ମୀଙ୍କ ପରି ଯାହାର ଆଚାର, ସେ ତ ପୁଣି ଦୁଃଖ ପାଇଲେ ! ସେ କି ପାପ କରିଥିଲେ ! ଏ କଳା ସଂସାରରେ ଧର୍ମ ବୋଲି କିଛି ନାହିଁ ।"

ଦୁଃଖୀ ଦୀର୍ଘ ନିଶ୍ୱାସଟିଏ ପକାଇ କହିଲା, "ଏଇଟା ସୁଖ ଦୁଃଖର ସଂସାର, କୁହୁଡ଼ି ପରି ଘାରି ସଂସାରକୁ ଯେମିତି । ଆମେ ତ ତାର ଭିତରେ ଚାଲିଚେ, କିଏ କାହା ଅଛି ମନେ ନାହିଁ । ଯାଉ ଯାଉ ପାତାଳ କୁହୁଡ଼ି ଭିତରେ ଆଲୁଅ ଟିକିଏ ପାଇଲେ ଆମେ ଖୁସିରେ ଡେଇଁଚେ, ମଝିରେ ମଝିରେ ସୂର୍ଯ୍ୟଦେବତାଙ୍କ କିରଣ ବି ଟିକିଏ ମିଳିଗଲେ ଆଉରି ଡେଇଁଚେ, ଏଇ ଆସିଗଲା···ଖରା ଆସିଗଲା, ଖରା ଆସିଗଲା, କୁହୁଡ଼ି ଚାଲିଯିବ । ଆଶାରେ ଆଶାରେ ଟାଇମ୍ ବି ବିତିଯାଉଚି, ସେଇଟା ଘର ଛାଡ଼ିବାକିର ବେଳ । ମୁଁ ଭାବୁଚି ସେଇଟା ସ୍ୱପ୍ନ । ଯୋଉ ଲୋକ ପାତାଳ କୁହୁଡ଼ି ଜଣାଇ ଦେଖିବାଠୁ କୁହୁଡ଼ି ଅନ୍ଧାର ଭିତରେ ଚାଲୁଚି ସେ ବେଶି କଷ୍ଟ ପାଉଚି, ସେ ଭାବୁଚି ଏଇଟା ମୋର ଦୁଃଖ । କାହା ଭାଗରେ ପାତାଳ କୁହୁଡ଼ି କାହା ଭାଗରେ ଅନ୍ଧାରିଆ କୁହୁଡ଼ି ପଡ଼ୁଚି କିଏବା ମଝିଆ ମଝିଆ ବାଟରେ ଚାଲୁଚି ଆଉ କିଏ ବି ଅଛି ଯାର ଆଗେ ଆଗେ

ପଛେ ପଛେ କୁହୁଡ଼ି ମାଡ଼ିଛି; ହେଲେ ତାକୁ ଛୁଇଁନି । କୁହୁଡ଼ିର ଫାଙ୍କ ଦେଇ ଖରା ତରୁଣଟା ତା' ସାଥିରେ ଲାଗିରହିଚି, ଅନେ ତାକୁ ସବୁରୁ ବଳି କପାଳିଆ ଲୋକ ବୋଲି କହୁଚେ । ଯାହାହେଲେ ବି ମଣିଷ ସୁଖ-ଦୁଃଖର କୁହୁଡ଼ି ପହଁରୁଚି । ଧର୍ମ ତା' ବାଟରେ ଅଛି । ଏଇ ଦେଖନ୍ତୁ ମୋ କଥା, ସଂସାରରୁ ସମସ୍ତଙ୍କୁ ଛାଡ଼ି ଦାଣ୍ଡବାଟର ଭିକାରି ହୋଇ ବୁଲୁଅଛି । ଧର୍ମବଳ ଥିଲା ବୋଲି ଏଇଟି କୂଳରେ ଲାଗିଗଲି । ମୁଁ ପୁଣି ଅଧର୍ମ କାମ କରିବି ! ଏନେ ଯେ ଷ୍ଟୋର ବାବୁ ଜମିଦ ଅଛନ୍ତି !

ଏଇ କାଲି ତ ତାଙ୍କୁ ଦେଖିଥିଲି । ଏଇବାଟେ ଯାଉଥିଲେ । ମୋତେ ଦେଖି ଦୋକାନକୁ ଆସିଲେ, ଚା' ବେଲ ଖାଇଲେ, ଦୁଃଖ ସୁଖ ହେଲୁ । ଦେଖିଲି ମୁଣ୍ଡବାଳ ଫୁରୁଫୁରୁ ଉଡ଼ୁଚି, ଚପଲ ଛିଣ୍ଡିଯାଇଚି ଯେ ପିନ୍ କଣ୍ଟା ମାରିଚନ୍ତି, ଲୁଗା ସାତସିଆଁ, ଚପମାରୁ ଯୋଡ଼ାଏ ଗୋଡ଼କାଢ଼ି ଯେ ସୂତା ବାନ୍ଧିଚନ୍ତି, ଯା ହେଲେ ବି ଆଗ ଅପେକ୍ଷା ଫୁର୍ତ୍ତି ଅଛନ୍ତି । ମନଖୁସି ଅଛି । ପଚାରିଲି ସେ କହିଲେ, ଏବେ କ'ଣ ଯୋଡ଼ାଏ ପ୍ରାଇଭେଟି ଟ୍ୟୁସନ କରୁଚନ୍ତି, ଆଗ ଦରମାଠୁ କିଛିଏ କମ୍ । ବେଳାଏ ଜଣେ ପିଲାଙ୍କ ଘରେ ପଢ଼ଉଚନ୍ତି ତା ସାଥିରେ ଆଉ ଦି' ଚାରିଟା ପିଲା ମିଳିଚନ୍ତି, ପିଅଡ଼୍ ଖଣ୍ଡେହେଲେ ମିଳୁଚି । ତାଙ୍କ ପିଲାଗୁଡ଼ିକ ସବୁ ଭଲ ପଢ଼ନ୍ତି, ଶ୍ରେଣୀରେ ସବୁବେଳେ ପାସ୍ । ଛୁଇ ଲୋକଟିଲାପର କାଲି ସକାଳେ ତାଙ୍କ ଦୁଃଖ ଲେଉଟି ପଡ଼ିବ··· ।

"ହଁ, ଏବେ ବୁଝିଲୁ ତ ଧର୍ମ ବଳଟା କ'ଣ । ଧର୍ମ ସବୁ ଚଳାଉଚି, ଦେଖିବୁ ସେ ବାବୁର ଭାଗ୍ୟ ବଦଳିଯିବ । ତୋ ବଡ଼ବାବୁ ଦିନେନା ଦିନେ ତା'ପାଖରେ ମୁଣ୍ଡ ନୁଆଁଇବ । ତୋର ଦା କୋଉ ଦୁଃଖ ହୋଇଯାଇଚି, ଚାକିରି ନୌକରି ଗୋଲାମଗିରି କରିଆନ୍ତୁ । ପେଟରୁ ଦାନା କାଟି, ପିଲାଙ୍କ ମୁହଁରୁ ଦାନା ଛଡ଼େଇ ବାବୁଆନା ଫୁଟାଣିରେ ପଇସା ଉଡ଼େଇଥାନ୍ତୁ, କ'ଣ ମିଳିଥାନ୍ତା ତତେ । ହୁକା ବାହାପିଟିଲୁ, ଦି'ପଇସା ଅରଜିଲୁ, ଧର୍ମ ଧନ ପାଇଲୁ, ପିଲାଙ୍କୁ ମଣିଷ କଲୁ । କେହି ହଁ । ବୋଲି କହିବାକୁ ନାହାନ୍ତି । ଖାଲି ଚାକର··ଚାକର ··ଚାକର ଚାଲିଗଲା ସେ କ'ଣ ଜୀବନଟା ଚାଲିଗଲା ।"

ପାନଦୋକାନୀ ସବୁ ଶୁଣୁଥିଲା । ମଝିରେ ମଝିରେ ଗୋଟିଏ ଗୋଟିଏ ମନ୍ତବ୍ୟ ଦେଉଥିଲା । କେତେବେଳେ ତାହା ଦୁଃଖୀର ମତ ସହିତ ମିଶିଯାଉଥିଲା ତ ଆଉ କେତେବେଳେ ଚା' ଦୋକାନୀର ମତ ସାଥିରେ ସମାନ ହୋଇଯାଉଥିଲା । ସେ ଶେଷରେ ଜୋର ଦେଇ କହିଲା, "ଧର୍ମଟା ନାହିଁ, ଏକଥା ନୁହେଁ, ନହେଲେ

ସଂସାରଟା ଚଳୁଚ କିମିତ । ବଡ଼ବଡ଼ିଆ ଲୋକେ, ଧନଲୋକେ ଧର୍ମଟାକୁ କିଣା ବିକା କରୁଚନ୍ତି ତାଙ୍କ ସୁବିଧା ପାଇଁ । ଆମ ସାନସାନିଆ ଲୋକଙ୍କର ତ ଦୁଃଖ ବେଶି । ଧର୍ମ ଦେବତା ଖୁସି ନହେଲେ ଦୁଃଖ ବଢ଼ିଯିବ ବୋଲି କହି ଆମକୁ ଇମିତ ଡରେଇ ଦେଇଚନ୍ତି ଯେ ଆମେ ସୁଦ୍ଧ ଡର ଡର ଭିତରେ ଦୁଃଖୀ । ଧର୍ମ ନାଁରେ ସେମାନେ ଆମକୁ ଦବେଇ ଦେଇଚନ୍ତି । ତହିଁଅରି ଆମେ ଅଧର୍ମ କରୁନେ, ସେମାନେ ଗୋଟାପଣେ ଧର୍ମଟାକୁ ଗିଳିଦେଇ ହଜମ କରି ପାରୁଛନ୍ତି ନା ନାହିଁ, ତାଙ୍କର କ'ଣ ହେଇଯାଉଚି କହ । ଓଲଟି ଲାଭ ହେଉଚି, ଆମେ ଧର୍ମକୁ ଗିଳିପାରୁନେ, ଉତପାତ ହେଉନେ, ସେମାନେ ଆମ ନିସ୍ପୃହଗୁଡ଼ାକୁ ଧର୍ମର ଆକ୍ରଶ ମାରି ମାରି ଆମକୁ ଡରେଇ ଅରେଇ ଆମ ଉପରେ ବସିଚନ୍ତି । ସେମାନେ ବଡ଼ ବଡ଼ ଅଧର୍ମ କରି ହଦ ପାରି ପାଉଚନ୍ତି, ଆମେ ଛୋଟିଆ ଛୋଟିଆ ଅଧର୍ମ ଟିକିଏ କରିଦେଲେ କୋଉ କ୍ଷତି ହେଇଯାଉଚି । କଣ କରି ସିମେଣ୍ଟ୍ ବସ୍ତାଏ ବିକିଦବା, ଟପଚ୍ ଦିଇଟା ନେଇଯିବା, ଏଇଟା କ'ଣ ଗୋଟାଏ ଅଧର୍ମ କାମ···ହାତସଫେଇ...ହାତସଫେଇ । ଦେଉକ କରିବାକୁ ତୁ ପଛଉଚୁ କାହିଁକି ?"

ଝି' ଦୋକାନି, ପାନ ଦୋକାନର ପିଠି ଥାପୁଡ଼େଇ କହିଲା, "ଏତେ-ବେଳକେ ଠିକ୍ କଥା ପଦେଟେ କହିଲୁ । ଆମେ ତ ଅଧର୍ମ କରିବାକୁ କହୁନ୍ତି, ଟିକିଏ ହାତସଫେଇ ଦେଖା । ଆମ ବଡ଼ବାବୁ 'ହାତସଫେଇ ଦେଖେଇବାରେ ଓସ୍ତାଦ । ସେ ସରକାରୀ ଡ୍ୟୁଟି ପକେଇ ଗାଡ଼ି ନେଇ ଟୁର୍‌ରେ ଯାଆନ୍ତି । ସେଠେ ସେ ଶିଷ୍ୟ ସଂଗ୍ରହ କରି ଗୃନ୍ଦା ହଠାନ୍ତି । ନକେ ଧର୍ମରକା ପାଲଟି ତଳତଳିଆ ବାବୁମାନଙ୍କୁ ଦୀକ୍ଷା ଦିଅନ୍ତି । ତରରେ ବାବୁମାନେ ଦୀକ୍ଷା ନେଇ ତାଙ୍କର ଚେଲା ପାଲଟନ୍ତି । ଯେ ଦୀକ୍ଷା ନନେଲା ତା' ଉପରେ ଖପରିଗ···ତା'ର ସବୁ କ୍ଷତି କରନ୍ତି । ଟୁରୁରୁ ଫେରିଲାବେଳକୁ ଗାଡ଼ି ଜିନିଷ ପତ୍ର, ବ୍ରେଗଲଗରେ ସିମିତ ଭରପୁର, ପକେଟ ମଧ୍ୟ ସିମିତ ଓଜନିଆ । କେଡ଼େ ବଢ଼ିଆ ହାତସଫେଇ, ତୁ କ'ଣ ସାମାନ୍ୟ ହାତସଫେଇ ଦେଖେଇ ପାରିବୁନି ।

ଦୁଃଖୀ ତା କାନ୍ଧ ଉପରୁ ସେ ଦୁହିଙ୍କର ହାତ ଥରେକରି ତଳକୁ ଖସେଇ-ଅଣ୍ଟା ସଳଖି କହିଲା, "ସେଇ ଯୋଉ ହାତସଫେଇ କଥା କହୁଚ, ସେଇଟା ତ ସେଇ ଅଧର୍ମ, ଖାଲି ଭେଳିକି ଭେଳିକି ନାଁ । ମୁଁ ଯୋଉ ବାବୁ ପାଖରେ ଅଛି ସେ ଆମପରି ସାଧାରଣ ଲୋକ । ଭାରି କଷ୍ଟରେ ବିଚ୍ଛର ଘର ଟ୍ରେକ କରୁଚି । ହାତୀ ଦାନ୍ତରୁ ପୁଲାଏ ମାଉସ ଗୁଳିଗଲେ ସିନା ଜଣାପଡ଼ିବନି, ସେ ତ ସାନ ଜୀବଟିଏ,

ଚିମୁଟାଏ ଗଳିଗଲେ ଜୀବନଟା ବି ଗଳିଯିବ । ମୁଁ ନିଜ ଆଖିରେ ଦେଖିଛି, ସିମେଣ୍ଟ କିଣିବାକୁ ପଇସା ପାଇଲେନି ଯେ ମା'ଙ୍କର ଗହଣାତକ କାହାକୁ ବନ୍ଧକ ଦେଇ ସିମେଣ୍ଟ କିଣିଲେ । ତାଙ୍କ ବେକ ହାତ ଲୁଣ୍ଡା ହେଇଗଲା । ଦିନେ ଦେଖିଲି ମା'ଙ୍କ ଆଖିରେ ଲୁହଡ଼ବାଳ ହେଉଛି । ହାତଟାକୁ ଥରକୁ ଥର ଚାହୁଁଛନ୍ତି । ବେକଟାରେ ଥରକୁ ଥର ହାତମାରୁଛନ୍ତି । ଦୀର୍ଘ ନିଃଶ୍ୱାସ ପକାଉଛନ୍ତି । ମୋ ଦିଦି ସମ୍ଭାଳିନ, ବାପୁଙ୍କୁ କହିଲି. ଏବେ ଯୋଉ ଗିରଣ୍ଡି ଦିଆ ହାର ମିଳୁଛି, ସୁନାଭଳି, ସେଥିରୁ ଗୋଟେ ଆଉ ଚୁଡ଼ି ଚାରିପଟ ପଚିଶ ଷାଠିଏ ଟଙ୍କା ଦେଇ କିଣିଛନ୍ତି । କୁମାରୀ କହୁଛି, ବର୍ଷେ ଯାଏ ଚକ୍ ଚକ୍ ରହିବ । ବର୍ଷକ ପରେ ଥରେ ରଙ୍ଗ କରେଇ ଆଣିଲେ ପୁଣି ବର୍ଷେ । ମଝିରେ ରଙ୍ଗ ଛାଡ଼ିଗଲେ ସେ ମାଗଣାରେ କରିଦେବ । ଖାଇବାକୁ ଟଣା ଓଟରା, ତା ସାଥିକୁ ମୋ ପରି ଲୋକଟାକୁ ପୋଷିବାକୁ ପଡ଼ୁଛି ।

କରେ ତତେ ସେ ପୋଷୁଛନ୍ତି କ'ଣ ! ତୁ କ'ଣ ତାଙ୍କର କାମ କରୁନୁ ! ବାହାର ଲୋକ ଏତିକି କାମ କରୁଥିଲେ କେତେ ପଇସା ନେଉଥାନ୍ତା ।

ସେ କଥା ପଡ଼ିନି, ମୁଁ ମଜୁରି ଖଟୁଥିଲେ ଦିନକୁ ପାଞ୍ଚଟଙ୍କା ପାଉଥାନ୍ତି, ମାସରେ ଅଧାଦିନ କାମ ବନ୍ଦ । ପେଟେ ଖାଇଲେ ପେଟେ ମରୁଥାନ୍ତି । ସେ ତ ନିଇତି ଖାଇବାକୁ ଦେଉଛନ୍ତି ଚାରି ବେଳ । ଦି' ବେଳ ଭାତ ଦି' ବେଳ ଜଳଖିଆ, ତା'ଛଡ଼ା ଲୁଗାପଟା ପକେଟ ଖରଚ । ଘରଭଡ଼ା ଦେବାକୁ ପଡ଼ୁନି, ପେଟପାଇଁ ଥାଉ ଚିନ୍ତା ନାହିଁ । ମା' ବାପ ଭଳିଆ ସ୍ନେହ । କୋଉଥିରେ ଅଭାବ ଅଛି ! ତାଙ୍କ ଘରକୁ ଆସିଲାବେଳେ ମଡ଼ା ମୂର୍ଦ୍ଦାର ଭଳି ଦିଶୁଥିଲି, ଏବେ ଦେଖିଲେ ମଣିଷ ଭଳିଆ ଦିଶୁଛି । ଯୋଉଠୁ ମୁଁ ଏତେ ଉପକାର ପାଉଛି, ସେଇଠି ପାପବୁଦ୍ଧି ଦେଖେଇବନି ଭାଇ । ତମ ହାତ ଧରି କହୁଛି, ସିମେଣ୍ଟ୍ ଦିଆକଥା ମତେ କୁହନି ।

ଚା' ଦୋକାନୀ ଚଢ଼ାଗଳାରେ କହିଲା, "ତା'ହେଲେ ତୁ ସିମେଣ୍ଟ ଦବୁନି । ଆଛା ହଉ, ଶୋଇଥିବୁ, କିଏ ଯାଇ ତତେ ବାନ୍ଧି ଦେଇ ସବୁତକ ଟେକିଆଣିଲେ କରିବୁ କ'ଣ ?"

କରିବି କ'ଣ, ଧର୍ମ ରକ୍ଷିବ । ଏଇପରି ସେଦିନ ଦେଖିଲି, ଟୋକା ଦୁଇଟା ମଦନିଶାରେ ଟୁଲୁଟୁଲୁ ହେଇ ମତେ କି ହଟହଟା ନକଲେ । ସିମେଣ୍ଟ ବସ୍ତା ଟେକିନେବେ

କ'ଣ ତାଲଦହରେ ଗୃବ ଭର୍ତ୍ତି କରିବାକୁ ଅଧଘଣ୍ଟେ ଗ୍ଲୁଳଗଲା, ପସିଗଲା ବେଳେ ମୁଣ୍ଡବାଳ ବାବୁଙ୍କ ଫ୍ଲୁଟରର ଦରଖ ଟାଯ୍ବାରଟା ଖସିପଡ଼ି ବେକରେ ଗଳିଗଲା । ଜଣା ଖେଲରେ ହାପଭାବ, ମଣଗଲ ମରିଗଲି କହ ପାଟିକରି ହଲଟାଯାକ ଉଠିଲି ଏଉଡ଼ିଲେ ଯେ, ମୁଁ ଝାବଲ ଖାଲରେ ପଡ଼ି ମରିଯିବେ । ତା'ପରଦିନ ମୁଁ ଯାଇ ଦେଖେତ ଟାଯ୍ବାର ମାଇଲଏ ଦୂରରେ ପଡ଼ିଚ । ଦେଖିଲ ତ, ଧର୍ମ ରଖିଲନା ନାହିଁ, ଘରତ ଖୋଲିଥିଲ ତାଳରେ ଗୃବ ଗଲେଇ ଘଣ୍ଟାଏ ଝୁଲିଲେ କାହିଁକି ? ଟାଯ୍ବାର ବେକରେ ଗଳିଲା କାହିଁକି ? ଏସବୁ ଧର୍ମର ହାଲ ନୁହେଁ ! ଯାହାକୁ ରଖିବେ ଅନନ୍ତ କି କରି ପାରେ ବଳବନ୍ତ ।



## ୧୦

ସନ୍ଧ୍ୟାବାଧୀ ଯଠେଇଚ ଆଉଜଣେ ମିସ୍ତ୍ରୀ, କେତେବେଳେ କମିତ ସେ ନଜେ ଆସୁଚ । ଆତ୍ମୀୟତାର ବୁଢ଼ୀଆଣୀ ଜାଲଟିଏ ସୃଷ୍ଟି କର ଦେଇ, ଯେ ତା ସମ୍ପର୍କ ଓ ବ୍ୟବସାୟିକ ବାୟୁମଣ୍ଡଳ ଠିକ ରଖିଚ । ଦୁଃଖାର ଦନ୍ତ ଖରାପ ହେଇଚ, ସେ ଆଉ ଜଗିବାକୁ ଆସି ପାରୁନ । ସମରେନ୍ଦ୍ର, ନୂଆ ମିସ୍ତ୍ରୀ ଜମା ସିମେଣ୍ଟ, କଡ଼େଇ, ବେଲଚ୍ଚ, ଫାଉଡ଼ା ପ୍ରଭୃତ ଦେଇ ଗ୍ଲଣ୍ଡାଯାଆନ୍ତ ଅଫିସକୁ । ଜନତପର ରଖାଯାଇଥିବା ଘର ସାମନାରେ ବାଉଁଶଟିଏ, ଯେ ନଜର ନାଲିଆ ପୁରୁଣା ଗାମୁଛାଟି ତାର ଉପରେ ଟାଣି ଦେଇ ଯାଆନ୍ତ । ଲୋକମାନେ ଭାବିବେ ବାବୁ ଏଇ ପାଖରେ କେଉଁଠେ ଅଛନ୍ତ । ଗଲାବେଳେ ଅଫିସ୍ ନାଁ ଧରନ୍ତନ, କହନ୍ତ ଏଇ ଦୋକାନରୁ ଆସୁଚ । ପ୍ରତ୍ୟେକ ଦନ ଗୋଟାଏବେଳେ ଅଫିସ୍‌ରୁ ଆସି ନଜର ବଳମ୍ବ ପାଇଁ ନାନା କଇଫତ୍ ଦଅନ୍ତ ମିସ୍ତ୍ରୀ ଓ ମୂଲିଆମାନଙ୍କୁ । "ଲୁଡ଼ବାଲ ନଥିଲ ତାକୁ ଜଗିଥିଲ, ବଢ଼େଇ ପାଖକୁ ଯାଇଥିଲ ଯେ ତା ସାଥିରେ ଦେଖା-ହେଲନ, ପଥରବାଲକୁ ତା ଖଣିରେ ଅନେଇ ଅନେଇ ଫେରିଲ, ପେଟିଦାରକୁ କହିଥିଲ ଯେଣ୍ଟେଣଂ ପାଇଁ···ସେ କହିଥିଲ ଏଗାରଟ ବେଳକୁ ଆସିବାକୁ···ଗଲ, ଲୁଭକରୁ ହେଲନ ।" ଏଇମିତ ନତଦନ ନୂଆ ନୂଆ ବାହାନା ।

ମିସ୍ତ୍ରୀ ମୂଲିଆ ଜାଣନ୍ତ ବାବୁ ମିଛ କହୁଚନ୍ତ । ଅଫିସ୍ ଲୋକ, ଅଫିସ୍ ଯାଉଛନ୍ତ । ବରଷ ବରଷ ଛୁଟି ସରକାର କ'ଣ କାହାକୁ ଦବ ? ଅଫିସ୍ ନ ଯାଉଥିଲେ ଠିକ୍ ଟାଇମରେ କମିତ ପ୍ରତଦନ ଫେରୁଚନ୍ତ । ଗାମୁଛାଟା ଶୁଖାଇବା କେବଳ ଉହ୍ଵବାର ବାହାନା । ମିସ୍ତ୍ରୀ କହେ, "ବାବୁ, ଛୁଟିଗୁଡ଼ାକ ଆଣି ଏଇଠେ ଖାଲ ବସିଲେ କାମ କ'ଣ ଚଳବ ! ଏକୁଟିଆ ଲୋକ, ପାଞ୍ଚ-ଯାଗାକୁ ଯାଇ ପାଞ୍ଚକଥା ବୁଝିବାକୁ ପଡ଼ବ । ଆମେ ତ କାମକା ଲୋକ, ବସି-ପାରବୁନ···ବସିଲେ କାମ ଭୂତପର ମାଡ଼ବସିବ । ବାବୁଙ୍କ ଥିବା ନଥିବାରେ ଯାଏ ଆସେ କେତେ ! ବୁଝିଲେ ଆଜ୍ଞା, ମାଲକ ପାଖରେ ଥିଲେ ଆମର ଖୁସି,

ଆମେ ବି ନଉକର, ମାଲିକ ପାଖରୁ ଚାଲିଗଲେ ଆମର ଦଶା ବେଶି । ଚୋରଆଡ଼କୁ ଆଖି ଦେବା ଫଳରେ ଦାମ ଧସେଇ ଯାଏ । ସବୁବେଳେ ଭାବନା, ଜିନିଷପତ୍ର କିଏ ନେଇଗଲାକି, ମସଲା ଶୁଖିଗଲାକି, ବାବୁ କ'ଣ ଜିନିଷ ଖୋଜି ଗଲେକି, ଗୋଦାମ ଘରେ କିଏ ପଶି କ'ଣ ନେଇଗଲାକି ! ଏଇମିତି ନାନା କଥା ।"

ସମରେନ୍ଦ୍ର ଚାଲିଗଲା ପରେ ସେମାନେ ମହାଆନନ୍ଦରେ ବଞ୍ଚୁଛନ୍ତି । କିଏ ଜଣେ କହେ ବାବୁ ଛୁଟି ବୁଲିବାକୁ ଯାଇଛନ୍ତି । ପାଞ୍ଚ ବାଜିଲେ ଫେରିବେ । ରେଜାଟା ମହାଓସ୍ତାଦ୍ । ନାଁଟା ତା'ର ରାଧା, ଯୋଗକୁ ମିସ୍ତ୍ରୀଟା ନାଁ କୃଷ୍ଣ । ନାଁ ସହିତ ଉଭୟଙ୍କର ବେଶ ପୋଷାକ, ଅଙ୍ଗପରିପାଟୀ, ଚାଲିଚଳନର ଗୃହିଣୀର ବେଶ୍ ସମ୍ପର୍କ ଥିଲା । ସେ ଥିଲା କୃଷ୍ଣ ମିସ୍ତ୍ରୀର ପ୍ରେରଣାର ଉତ୍ସ ।

ସ୍ନାନଘରରେ ପଥର ଯୋଡ଼େଇ କାମ ସରିଯାଇଛି, ଗ୍ରୀଲ ପଡ଼ିଯାଇଛି । ମେନ୍ ବିଲ୍ଡିଂର । ଗାଧୁଆ ଘର, ପାଇଖାନା, ଷ୍ଟୋରେଇ ଘରର ଗ୍ରୀଲ କାମ ବାକି ଅଛି, ଯୋଗାଡ଼ ଚାଲିଛି । କୃଷ୍ଣ ବଡ଼ଘରର ପଲସ୍ତରା କାମ ଆରମ୍ଭ କରିଛି । ସେ ସମରେନ୍ଦ୍ରଙ୍କୁ କହିଛି ବାଛି ବାଛି ସରୁ ବାଲି ମଗାଇବାକୁ, କାମ ଚକ୍‌ଚକ୍ ହେବ, ମଜଭୁତ୍ ବି ହେବ । ଇମିତି ପାଲିସ୍ ହେବ ଯେ କାନ୍ଥଟା ଦର୍ପଣ ଭଳି ଦିଶିବ । ସେ କହେ, "ସବୁ ମିସ୍ତ୍ରୀଙ୍କର ସବୁ କାମରେ ହାତ ନ ଥାଏ ! କିଏ ଯୋଡ଼େଇରେ ଓସ୍ତାଦ୍, କିଏ ପଲସ୍ତରାରେ, କିଏ ଗ୍ରୀଲ ପକାଇବାରେ, କିଏ ମେଜିଆ ପକାଇବାରେ, ଯାହାର ଯୋଉଥିରେ ହାତ ଅଛି । ମୁଁ କିନ୍ତୁ ପଲସ୍ତରା ଆଉ ମେଜିଆ ପକାଇବାରେ ଓସ୍ତାଦ୍ ଆଜ୍ଞା ! ଅନ୍ୟ କାମ ମୋଠୁ ବଳିଯିବେ ଯେ, ହେଲେ ପଲସ୍ତରା ମେଜିଆ କାମରେ ମୁଁ ପୋକ । ସାନ ତୁଣ୍ଡରେ ବଡ଼ କଥା କହୁଛି ଆଜ୍ଞା ! ଦେଖିଥା କିଏ ପୁଅ ଅଛି ଏଇ ବ୍ୟାପିଟାଲରେ ମୋ ସାଥିରେ ମେଜିଆ ପଲସ୍ତରାରେ ଟକ୍କର ଦେବ । ଏସବୁ କାମ ଆଜ୍ଞା ମୁଁ ଶିଖିଛି ମୋ ବାପାଠୁ । ମୋ ବାପା ସରକାରୀ ଦପ୍ତରରେ ନାଁ କରିଛି ଆଜ୍ଞା ! ଏଇ ଯୋଉ ନ' ମହଲା କୋଠା, ମୋ ବାପା ତାର ହେଡ଼ମିସ୍ତ୍ରୀ ଥିଲା । ସାର୍ଟିଫିକେଟ୍ ପାଇଛି ।

ସମରେନ୍ଦ୍ର ପଚାରନ୍ତି—ତୁ କ'ଣ କରୁଥିଲୁ ।

"ମୁଁ ଆଜ୍ଞା ସେତେବେଳେ ବାପାର ହେଲପର ଥିଲି, ତା' ପାଖେ ପାଖେ ରହି ତା'ଠୁ ସବୁ କାମ ଶିଖିଛି । ଏଇ ଦେଖନ୍ତୁ ନାହାନ୍ତି, ମୋ ହାତରେ ଗୋଟାଏ ଖଣ୍ଡିଆ ଚିହ୍ନ । ସେଦିନ ସେ ମୋତେ କାମଟେ ବରାଦ ଦେଇ ଚାଲିଗଲା, ମୁଁ ଭଲି,

ସେ ଫେରିବ ପରେ ଦେଖିଲି, ମନ ପାଇଲାନି, ଫେଟାଏ ଗୋଇଠା ମାରି କାମଟା ଭାଙ୍ଗିଦେଲା । ମୁଁ ତ ଆଜ୍ଞା ବଗିଡ଼ିଗଲି, ସତେ ଯିମିତି ଗୋଇଠାଟା ମୋ ଛାତିରେ ଆସି ବାଜିଲା । ସେ କି ଆଉ ସମ୍ଭାଳେ ? କରଣିଟା ମୋ ଉପରକୁ ଫୋପାଡ଼ିଦେଲା ଯେ, ତା ମୁନିଆ ପଟଟା ମୋ ଜାନୁରେ ସିଧା ପଶିଗଲା । ପିଚ୍ ପିଚ୍ ରକ୍ତ ବାହାରି ପଡ଼ିଲା । ଏଇ ରାଧା ବି ବାପା ସାଥିରେ କାମ କରୁଥାଏ । ସେ ତା' ପଣତ କାନିରୁ ଖଣ୍ଡେ ଚିରି ଦେଇ ରକ୍ତ ବାହାରିବା ଜାଗାକୁ ଚପିଧରିଲା । ବାପା ରିକ୍ସା ଡାକି ଡାକ୍ତରଖାନାକୁ ନେଲା । କ'ଣ କହିବି ଆଜ୍ଞା, ସେଇଠେ ମାସେ ପଡ଼ିଲି । ବାପା ବହୁତ ପଇସା ଖର୍ଚ୍ଚ କଲା, ଫଳମୂଳ ଓଷୁଅ, ମସୁଖ ଖାଇବାକୁ ବହୁତ ଦହୁତ ଦେଲା । ଦିନ ରାତି ବାପା ମା' ମୋତେ ଜଗିଥାନ୍ତି । ବାପା ରାତିରେ ମା' ଦିନରେ, ଭଉଣୀଏ ସ୍କୁଲଟାବେଳେ । ମୋ ଆତ୍ମା ସେଇଦିନଠୁ ତାକୁ ଡରିଯାଇଚି ଆଜ୍ଞା ! ମାଷ୍ଟ୍ର ଆଣ୍ଠୁଟିରେ ଥରେ ପଥର ଛେଚି ଦେଲେ ବୋଲି ବାପା ତାଙ୍କ ବେକ ଚିପୁଣି ଦେଇ ମତେ ପାଠରୁ ଛଡ଼େଇ ଅଣିଲା । ତା' ନିଜ ପାଠ ପଢ଼ାଇଲା ଯେ, ଶେଷରେ ମାରି ଦେଇଥାନ୍ତା ଆଜ୍ଞା, ଭାରି ଅବାଗିଆ ମଣିଷ । ଅଜ୍ଞା, ଇମିତି ଡରିଗଲି ଯେ ତା' ପାଖକୁ ଆଉ ଗଲିନି, ସେଇଦିନଠୁ ଅଲଗା କାମ କରୁଚି ।"

"କରେ ବାପଠୁ ଅଲଗା ହେଇଗଲୁ ··ଆଉ କି କାମ ଶିଖିଲୁ । ଏଇଟା ତୋର ଭଲ କଥା ନୁହେଁ ।"

"ଆଜ୍ଞା, କ'ଣ କରିଥାନ୍ତି ଯେ, ଦୁଷ୍ଟ ଲୋକଠୁ ଆପଯଣ ରହିଲେ ଭଲ । ତାକୁ ଆଜ୍ଞା, ମୁଁ କ'ଣ ବଡ଼ ବଡ଼ ଇଞ୍ଜିନିଅର ବାବୁମାନେ ଡରନ୍ତି । କାମରେ ତାକୁ ପଚାରନ୍ତି । ତା' ମନକୁ ନ ପାଇଲାଭଳି କାମ ଇଞ୍ଜିନିଅର ବାବୁ ବତେଇଲେ ବି ସେ ଆଦୌ କରେନି । କହେ ବାବୁ, ମୁଁ ଇମିତି କରୁ କାମ କରିପାରିବିନି, ଭୁଲ କାମ ଜାଣିଜାଣି କରିବିନି, ଆପଣ ସିନା ପୋଥି ବାଇଗଣ ଶିଖିଛନ୍ତି, ମୁଁ ନଇଁଠା ବାଡ଼ି ବାଇଗଣ ଖାଉଚି । ମୋ କାମ ମନକୁ ନ ପାଇଲେ ମୋତେ ବାହାର କରିଦିଅନ୍ତୁ ।"

ଆଚ୍ଛା, ତୋ ବାପା ଜମା ତ ଖାଣ୍ଟିଆ ଲୋକ ନୁହେଁ । ତୁ ଆଉ କେତେଦିନ ତା' ପାଖରେ କାମ କରିଥିଲେ କେତେ ନୂଆ ନୂଆ କଥା ଶିଖିଥାନ୍ତୁ ।"

"ଅଜ୍ଞା, ଗୁମରଟା ଶିଖିଯାଇଚି । ସେ କହେ, "ବିଲଡିଂଟା ଝିଅ, ମିସ୍ତ୍ରୀ ତାର ମା' । ଗଢ଼ିଦେଲା ପରେ ସେ ଘର ମିସ୍ତ୍ରୀକି ଦେଖିଲେ ତାର ଇଟା, ପଥର ବି ମିସ୍ତ୍ରୀ ସାଥିରେ କଥାବାର୍ତ୍ତା କରନ୍ତି । ଦୁଃଖ-ସୁଖ ହୁଅନ୍ତି । ଝିଅଟି ବେମାରିଆ, ଦୁର୍ବଳିଆ

ହେଲେ ସେ ଯିମିତ ମା' ମୁହଁକୁ ଅନେଇ ସବୁବେଳେ ଭେଁ ଭେଁ କରୁଥାଏ, ତା'ମନର କଷ୍ଟ ଭିତରର ଦୁଃଖଯାତନା ଆଖିଲୁହରେ ନିଗାଡ଼ିଦିଏ, ଘରଟା ଯିମିତ ଦୁର୍ବଳିଆ ହୋଇଥିଲେ ମିସ୍ତ୍ରୀ ମୁହଁକୁ ଅନେଇ କାନ୍ଦେ । ନିଜ ଦୁଃଖ କଥା ଆଖି ଲୁହରେ ତା ମା' ମିସ୍ତ୍ରୀକୁ କହେ । ସବୁ ମିସ୍ତ୍ରୀ କ'ଣ ସେ ଦୁଃଖ ବୁଝିବେ ନା ସବୁ ମିସ୍ତ୍ରୀଙ୍କ କାନରେ ତା' କାନ୍ଦଣା ପଡ଼ିବ । ଯିଏ ଠିକ୍ ମିସ୍ତ୍ରୀ ସେ ଘରର ବ୍ୟଥା ବୁଝି ପାରିବ । ମୋ ବାପା ସେଇ କାଟର ଜଣେ ମିସ୍ତ୍ରୀ । ସେ କହେ, ଇମିତ ଛୁଆ ଜନମ କରି ଦେଇଥିବା ଯେ ଆମେ ମୁଆଡ଼େ ଗଲେ ବି ଆମ ଛୁଏ ସବୁଥି ଫଳପରି ଦିସୁଥିବେ । ଖରା, ବରଷା, ଶୀତ, କାକର, ବଢ଼ି, ବାତ୍ୟା କୋଉଥିରେ ଡରି-ଯିବେନି ।"

"ଆରେ କୃଷ୍ଣ, ଏଇ ମନ୍ତ୍ରଟିକୁ ତୁ ତୋ ବାପାଠୁ ଶିଖିଚୁନା, ନାହିଁ । ଯଦି ଶିଖିଥିବୁ, ତା ଭଳି ଭଲ ମିସ୍ତ୍ରୀଟିଏ ହେବୁ । ଏତେ ବଢ଼ିଆ ବାପାକୁ ଛାଡ଼ି ତୁ ଅଲଗା ରହୁଚୁ ।"

ଆଜ୍ଞା ଏକଲବ୍ୟ କଥା ଶୁଣିଥିବେ ନିଶ୍ଚୟ, ପାଠୁଆ ଲୋକ ଆପଣ । ମୁଁ ତା'ପରି ସାଧନା କରୁଚି । ମୋ ଆଖି ଆଗରେ ମୋ ବାପା । ତାକୁ ଜୀବନରେ ଗୁରୁ କରିଚି, ମରିଯିବ ପଛେ କାମରେ ହାରିବନି । ଆଜ୍ଞା, ମୋ ବାପା କ'ଣ, ମା' କଥା ଶୁଣିଲେ ଆପଣ ହାଲ୍‌ଚାଲ ହେବେନି । ବିମାତା ହେଲେ କ'ଣ ହେବ, କୋଉ ନିଜ ମା' ତାକୁ ବଳିଯିବ ମା' ପଣିଆରେ । ସଂସାରରେ ସବୁବେଳେ ବିମାତାର ନିନ୍ଦା, ସମସ୍ତେ କରନ୍ତି, ମୁଁ ତ ମୋ ନିଜ ମା'କୁ ଦେଖିନି, ତା' ମା' ପଣିଆତ ପାଇନି । ହେଲେ ଦୁନିଆ ମା'ଙ୍କୁ ତ ଦେଖିଚି । ମୋ ମା' ସେମାନଙ୍କଠୁ ଢେର ଭଲ । ମୋ ନୂଆ ମା'ର ପିଲାପିଲି ଛଅ, ସବୁ ଗୁଡ଼ାକ ଝିଅ । ସେ ଜାତିରେ ତେଲଙ୍ଗା ଆଉ ମୋ ବାପା ପଞ୍ଜାବୀ ।

"ଆରେ ଇଏ କି କୌତୁକ ! ରାଗିଲାବେଳେ ବାପା ହିନ୍ଦି କହୁଥିବ, ମା' ତେଲେଗୁ କହୁଥିବ, ତମେ ପିଲାଏ ତାଙ୍କ ଡ୍ରାମା ଦେଖି ଓଡ଼ିଆରେ କ'ଣ ଗୁଡ଼ାଏ କହି ଯାଉଥିବ । ଯାହାହେଉ ଉତ୍ତରଭାରତ, ଦକ୍ଷିଣଭାରତ ଆଉ ମଧ୍ୟ-ଭାରତର ମିଳନ ଗୋଟିଏ ଘରେ ହୋଇଚି । ଭାରି ଚମତ୍କାର କଥା, ତମେ ସବୁ ଘରେ ଓଡ଼ିଆରେ କୁହନ୍ତି ।"

"ଆଜ୍ଞା ଆମେ ପିଲାଏ ଖାଣ୍ଟି ଓଡ଼ିଆ, ମୋ କଥା ଭାଷାରୁ ଆପଣ ଠଉରେଇ ପାରୁନାହାନ୍ତି, ମୋ ଭଉଣୀମାନେ ତ ହିନ୍ଦି ତେଲଗୁ ଜାଣନ୍ତିନି । ବାପା ଖଣ୍ଡି ଓଡ଼ିଆରେ କେତେବେଳେ କମିତ କହେ, ମା' ତାଠୁ ଟିକିଏ ଭଲ ଓଡ଼ିଆ

କହେ । ବାପାର ହୃଦଗୁଡ଼ାକ ତ ବିଲକୁଲ୍ ଓଡ଼ିଆ ଭଳି । ହେ, ହେଁ ହୁଁ ଓଡ଼ିଆରେ ଲଗେଇ ତା' ସାଥିରେ କଥାବାର୍ତ୍ତା କଲେ ବିଲକୁଲ ତା ସାଥିରେ ମିଶିଯିବ । ତା ହୃଦ ନାଁକୁ ହୃଦ ନହେଲେ ଗୋଟାପଣେ ଓଡ଼ିଆ…ଭଙ୍ଗା ଭଙ୍ଗା ଓଡ଼ିଆ । ହବେ ରାଧା ! କଥା କାନେଇଚୁ କ ମଜଲ ଆଣୁଚୁ, ଭେ ପୋ ହାରାମି ଅଛୁ । ମୁଁ ବାବୁ ସାଥିରେ ଗପ କଲିବୋଲି ସେ ବସିଗଲା । ତାକୁ ସେ ପିଲାକୁ, ବୋର୍ଡ଼ରେ ବାଲି ପକଉ, ସିମିଟି ନଉ, ଶଳା ବସିବାକୁ ଆସିଚି ଏଠିକି । ଅବେ ଆମେ ଗପ କଲେବି ମୋ ହାତ ବନ୍ଦ ହଉଚି ? ଉଠା, ଗଜ, ଗୁଲଚ ନା ନାହିଁ ?

ରାଧା ଝପଝାପ୍ ଉଠିପଡ଼ି ମୁଣ୍ଡରେ ମୁଚୁଲାଟାକୁ ଦେଇ କଡ଼େଇ ଧରି ଚମ୍‌ଚମ୍ ହୋଇ ବୋର୍ଡ ଉପରକୁ ଉଠିଗଲା । ସୁପରେଣ୍ଡ୍ କହିଲେ, "କୃଷ୍ଣ, ତୋ ନିଜ ମା' କଥା କିଛୁ ମନେ ଅଛୁ ? ସେ ଆସିଲା ଆଉ ଗଲା କେମିତି ?

"ଆଜ୍ଞା, ସେଇଟା ତ ଆଉ ଗୋଟାଏ ପୋଥି । ମୋ ବାପା ତା'ଦେଶ ଛାଡ଼ି ପଳେଇ ଆସିଥାଏ କଟକ । କ'ଣ ଗୋଟାଏ ହଣାମରା ଚାଲିଲାନି ? ଭାରତ ପାକିସ୍ଥାନ ଭିତରେ କ'ଣ ହେଲା କେଜାଣି, ଗୋଟାଏ କ'ଣ ଗୋଳମାଳ ହେଲା, ଗାଁ ଖାଲି ହେଇଗଲା, ଶହ ଶହ ଲୋକମଲେ । କାହାର ବଂଶ ବୁଡ଼ିଗଲା, କାହାର ସବୁ ଚାଲିଗଲେ, କିଏ କୁଆଡ଼େ ଛିନଛତ ହେଇଗଲେ । ଗାଁ ମଶାଣି ପାଲଟିଲା । ସେତିକିବେଳେ ବାପା ମୋର ପଳେଇ ଆସିଲା କଲିକତା । ସେଠେ କେତେ ବର୍ଷ ରହିଲା, ତା'ପରେ ପଳେଇ ଆସିଲା କଟକ । କଟକଠେ ତା'ର ବାହାଘର ହେଲା, ମୋ ମା'ସାଥିରେ ।

କେମିତି ?

ବାପା ତ ମିସ୍ତ୍ରୀକାମ କରେ, ଜଣେ ବଙ୍ଗାଳୀ ବାବୁଙ୍କର ଘରେ କାମ କରୁଥିଲା । ବାପା କାମରେ ବାବୁ ଏତେ ଖୁସି ହେଇଗଲେ ଯେ ତାଙ୍କ ଗାରେଜ୍‌ଟା ଛାଡ଼ିଦେଇ ବାପାକୁ କହିଲେ, "ଗାଡ଼ିତ ବିକି ହେଇଯାଇଚି, ତୁ ଏଇଠେ ରହିଯା, ଭଡ଼ାଘରେ ରହିବୁ କାହିଁକି । ବାପା ସେଇଠେ ରହିଲା, ମାସେ ଦି'ମାସ ରହୁ ରହୁ ଦି ତିନି ବରଷ ରହିଗଲା । ମୋ ମା' ବାବୁଙ୍କ ଘରେ ସେତେବେଳେ କାମ କରୁଥିଲା, ତାକୁ ବାବୁ ବାବୁଆଣୀ ଝିଅ କରିଥିଲେ । ତା'ର ବାପ ମା' କେହି ନଥିଲେ, ସେ ଥିଲା ଛେଉଣ୍ଡ ଝିଅ, ବଙ୍ଗାଳୀବାବୁ ଅଉ ମା' ପଇସା ଖର୍ଚ୍ଚ କରି ଜାକଜମକରେ ମୋ ବାପା ସାଥିରେ ତାକୁ ବାହାକରି ଦେଲେ । ବାବୁଙ୍କର ଭୁବନେଶ୍ୱରରେ ଘାଗାବାଡ଼ି ତ ଥିଲା, ସେ ସେଥିରୁ ଗୁଣ୍ଠେ ଜମି ମା' ନାରେ

ରେଜେଷ୍ଟ୍ରି କରିଦେଲେ, ଘର କରିବାକୁ କିଛି ପଇସାପତ୍ର ବି ଦେଲେ । ବାପା ମା' ଦହେଁଯାକ ମିଶି ଘରଟିଏ ବନେଇଲେ । ବାବୁ ଆଉ ମା' ଝଞ୍ଜିଟିଏ କରି ମୋ ବାପା ମା'ଙ୍କୁ ଆଣି ନୂଆ ଘରେ ପ୍ରତିଷ୍ଠା ଦନ ଗୁଡ଼ିଦେଇ ଚାଲିଗଲେ । ବରଷକ ପରେ ମୋତେ ଜନମ ଦେଇ ଅଚେତା ହୋଇଗଲା ଯେ, ଆଉ ଚେତିଲାନି । ଚାଲିଗଲା ଆଜ୍ଞା !

"କରେ ସେ ସବୁ କଟକରେ ଅଛନ୍ତି ?"

'ନାହିଁ ଆଜ୍ଞା ! ବାପା କହୁଥିଲା, ସେ ତାଙ୍କ ଦେଶକୁ ପଳେଇଲେଣି । ଘରଦ୍ୱାର ବନ୍ଦ ହୋଇଗଲା ।"

"ଆଚ୍ଛା ନୂଆ ମା' କେମିତି ଆସିଲା ?"

"ଏଇ ହାସପିଟାଲରେ ବାପା ତ କାମ କରୁଥାଏ, ମୋ ନୂଆ ମା' ତା ପାଖକୁ କିମିତି ଆସିଲା କହୁଚି । ବସନ୍ତି ପଡ଼ିଲା ବେଳେ ସେ ଦାଣ୍ଡକୁ ନେଇ କାଢ଼ିଲା ଆଜ୍ଞା, ନ ହେଲେ ତା' ଭଳିଆ ଲୋକ ବାହାରକୁ ଆସିଥାନ୍ତା କାହିଁକି ? ତା'ହାତ ଅନ୍ନ କିଏ ଖାଉଥାନ୍ତା ।"

"କ'ଣ ହେଲା କି କୃଷ୍ଣ ?"

"ହ ବେ ରାଧା..ହେ ରାଧା·· ମସଲା···ମସଲା ଆ.., ସେ ଟୋକାକୁ କହ ସିମିଣ୍ଟି ସାଥିରେ ବାଲି ମିଶୁନି, ଭଲକରି ଫେଣ୍ଟିବ । ବାବୁ ପାଖରେ ବସିଚନ୍ତି, ତମର ଟିକିଏ ଡରଭୟ ନାହିଁ । ହଁ, କ'ଣ କହୁଥିଲି ଆଜ୍ଞା, ନୂଆ ମା' କଥାଟି । ତା ଗିରସ୍ତ ଦରଜି ଦୋକାନ ଦେଇଥିଲା; ଲୋକ ଦଶଟା ବି ରଖିଥିଲା, ସେ ବି ସିଲେଇପଟ ଶିଖିଥିଲା । ବସନ୍ତରେ ତା'ଗିରସ୍ତ ଚାଲିଗଲା । ଡାକ୍ତର କିଛି କରି ପାରିଲେନି । ତା' ଚାଳଚଳନ ପରେ ଶୁଣିଘର ଯାଇନି, ଚ'ମାସର ଛୁଆଟିଏ ବି ଥିଲା ସେଟା ବି ଚାଲିଗଲା । ସ୍ୱାର ସଂସାରରେ ଆଉ କେହି ନାହିଁ, ବସ୍ତିର ନାଲ ବାଟ ରେଲ୍ ଲାଇନକି ଯାଉଥିଲା । ମୋ ବାପା କଟେ ବାବୁର ଗ୍ରାଉ ଉପରେ ଇଟା ବସଉଥାଏ । ଦୂରରୁ ତାର ନଜର ପଡ଼ିଗଲା ସ୍ତ୍ରୀ ଉପରେ । ସେ ଭାବିଲା ନିର୍ଜନିଆ ଜାଗାଟାରେ ଯୁବା ସ୍ତ୍ରୀ ଲୋକଟା ବୁଲୁଚି କାହିଁକି ? ରେଲଲାଇନକୁ ଉଠିଆସି ଖୁବ୍ ଦୂରକୁ ଚାହୁଁଚି, ପୁଣି ଓହ୍ଲେଇ ଲାଇନତଳେ ବସୁଚି । ବାପା ଲୋକମାନଙ୍କୁ କହିଲା, ତମେ କାମ କରୁଥା, ହେଲପର୍‌କୁ ବତେଇଦେଲା କେମିତି ଇଟାବସେଇବ କ'ଣ କେମିତି କରିବ । କହିଲା, "ଆସୁଚି, ପେଟ କାଟି କାଟି ହେଉଚି, ଗୁଳା ଝାଡ଼ା କରିବି, ଯାଏ ପୋଖରୀପାଣି ବସିକରି ଆସେ ।"

"ଆଚ୍ଛା ବଢ଼ିଆ କଥା, ତା'ପରେ କ'ଣ ହେଲା କୃଷ୍ଣ ?"

"ଆରେ ଶୁଧା⋯ ଶୁଧାରେ⋯ ସେ ସ୍ଥାନ ଗଳଟା ଆଣିଲୁ, ବଡ଼ ଗଳଟା ଏଠେ ଚଳୁନ । ହଁ, ତା'ପରେ କ'ଣ ହେଲା କି, ବାପା ବାହାନା କରି ବାଲିବାଡ଼ି ଖାଲ ଖମଣ ଦେଇ ଲୁଚି ଲୁଚି ପହଞ୍ଚିଗଲା ରେଲଲାଇନ କଡ଼ରେ । କଆବୁଦା ଉହାଡ଼ରେ ଲୁଚି ରହିଲା । ତାକୁ ଲୁଚି ଲୁଚି ଚାହିଁଲା ସେ କ'ଣ କରୁଚି । ଦୂରରୁ ଆକାଶକୁ ଧୂଆଁ ଉଠିଲା, ସେ ସ୍ତ୍ରୀ ଲୋକଟା ଲାଇନର ଆର ପାଖରୁ ଉଠି ସେଇ ଆଡ଼କୁ ଚାହିଁଲା । ତା'ପରେ ଚାରିଆଡ଼କୁ ଚାହିଁ ଅନାଷା କଲା । ଦେଖିଲା କିଏ କୁଆଡ଼େ ନାହାନ୍ତି । ଲୁଗା କାନିରୁ ଅଳଙ୍କାରତକ ବାହାର କଲା, ବ୍ଲାଉଜଟା ଦେହରୁ ଖୋଲି ସେଥିରେ ଅଳଙ୍କାର ତକ ବାନ୍ଧି ତା'ଭିତରେ କାଗଜ ଖଣ୍ଡେ ଗୁଡି ପରସ୍ତ କରି ଭାଙ୍ଗି ରଖିଦେଲା । ଲାଇନ୍ କଡ଼ରୁ ପଥରଟିଏ ଉଠାଇ ତା'ଉପରେ ଥୋଇଲା । ବାପା ସବୁ ଦେଖୁଥାଏ ସେଇ କଅଁବୁଦା ଭିତରୁ । ଦୂରରୁ ଗାଡ଼ି ଦେଖାଗଲା, ସେ ଚଟାପଟ ଧର୍ମଦେବତାଙ୍କୁ ମୁଣ୍ଡିଆଟିଏ ମାରି ଲାଇନ୍ ଉପରେ ବେକରଖି ଶୋଇଗଲା । ଗାଡ଼ି ସେତେବେଳକୁ ପାଖେଇ ଆସିଲାଣି । ଖୁବ୍ ଜୋରରେ ହୁଇସିଲଟା ବାଜିଲା । ବାପା ଧପ୍‌କିନା କଆବୁଦାରୁ କୁଦାଏ ମାରି ତା' ହାତଧରି ଘୋଷାରିଆଣି ଗଡ଼େଇ ଦେଲା ତଳକୁ । ଫଟବଲପରି ଗଡ଼ି ଗଡ଼ି ଆସି ବାଲିରେ ପଡ଼ିଲା । ଗାଡ଼ି ଝୁକୁଝୁକୁ ଝୁକୁଝୁକୁ କରି ଚାଲିଗଲା ଆଗକୁ । ବାପା ବାଲିରୁ ତା'କୁ ଉଠେଇ ଧିଆଁଧୋଇକରି କୋହ୍ଲାରେ ଆଣି ପକେଇଲା ଘରେ । ପଥର ବାଜି ଦେହହାତରୁ ରକ୍ତ ବାହାରୁଥାଏ । ସେତେବେଳକୁ ତାର ହୋସନଥାଏ । ଚେତା ଫେରିଲେକୁ ପଚାରିଲେ—ମୁଁ କେଉଁଠେ ଅଛି ?

"ଓହୋ ଭଗବାନ ରକ୍ଷାକରି ଦେଲେରେ କୃଷ୍ଣ !"

"ହଁ ଆଜ୍ଞା, ମୋ ବାପା ତା'କୁ ଆଉଁସିଦେଇ କହିଲା—ଘରେଅଛୁ । ତା'ପରେ ପଚାରିଲେ, ମୋ ଝୁଅ କାହିଁ ? ଏତିକବେଳେ ମୋତେ ନେଇ ତା କୋଳରେ ଶୁଆଇଦେଲେ । ତାର ସାଙ୍ଗେ ସାଙ୍ଗେ ଚେତା ବୁଡ଼ିଗଲା ଦି ତିନି ମିନଟ୍‌ପାଇଁ ତାପରେ ଚେତାହେଲା⋯ମୋତେ ଛାତିକୁ ଟେକି ନେଇ ଅନ ଚଟେଇଲା, ମୁଁ ତ ଜାଣିନି⋯ ସାଇ ଲୋକେ ଯାହା କହନ୍ତି ମୁଁ ଯୋକଭଳିଆ ତା ଛାତିରେ ଲାଗିଗଲି । ମା'ଅନ ତ ପାଇ ନଥିଲି, ପାଇଲି ପରେ ମନଭରି ପେଟେ ପିଇ ଦେଇ ଅନ ଛାଡ଼ିଦେଲି । ତା ମୁହଁକୁ ଚାହିଁ ହସିଲି, ହାତ ବଢ଼ାଇଲି ତା ନାକ କାନ ଛିଣ୍ଡିବାକୁ । ସେ ମୁହଁ ପାଖକୁ ନେଇ ଚୋକଟିଏ ଦେଲା । ତା'ପରେ ତଳେ ଶୁଆଇ ଦେଇ କାନ୍ଦିଲା । ସାଇବାଲା, ଝିଅ ବୋହୂ, ବୁଢ଼ାବୁଢ଼ୀ ସମସ୍ତେ ଆସି ତାକୁ ବୁଝେଇଲେ, ବାପା କହିଲା କିଛି ଚନ୍ତା କରନା, ମୁଁ ଅଛି । ମୋ ଘର ଭାଙ୍ଗି ଯାଇଚି, ଝୁଅଟା ବସି

ଯାଉଚ, ତୁ ଆମକୁ ରକ୍ଷାକର । ଧର୍ମ ଦେବତାକୁ ସାକ୍ଷୀ ରଖି କହୁଚି ଏ ଜୀବନ ଥିବାଯାଏ ମୁଁ ତୋତେ ଅନ୍ତର କରିବିନି । ତୁ ବି ପ୍ରତିଜ୍ଞା କର, ଏ ଝିଅକୁ ଆଡ଼େଇ ଦେଇ ତୁ ବାହାରକୁ ପାଦ କାଢ଼ିବୁନି । ସାଙ୍ଗର ଜଣେ ଅଧବୁଢ଼ୀକୁ କହିଲା, "ଏ ପୁତ୍ଳା ଫିଟାଅ, ତା ଅଳଙ୍କାର ତାକୁ ପିନ୍ଧେଇ ଦିଅ ।" ଶାଇ ମାଇପେ ତାକୁ ଅଳଙ୍କାର ପିନ୍ଧେଇ ଦେଲେ, ମୁଣ୍ଡରେ ସିନ୍ଦୂର ନାଇ ଦେଲେ । ହାତରେ ଚୂଡ଼ି ପିନ୍ଧେଇ ଦେଲେ, ଗୋଡ଼ରେ ଅଲତା ମାଖି ଦେଲେ, ସେଇଠେ ପଣ୍ଡାଙ୍କ ହାତକୁ ଏକାଠି କରିଦେଇ ତା' ଉପରେ 'ଜଗନ୍ନାଥଙ୍କ ନିର୍ମାଲ୍ୟ ଥୋଇ ଦେଲେ । ହୁଳହୁଳିରେ ସାରା ଖଜପଡ଼ିଲା । ମୁଁ ମୋ ନୂଆ ମା' କୋଳରେ ଜକୁଜକୁ ହୋଇ ବସିଥାଏ । ଛ ମାସର ଛୁଆ ତ, ବୁଝିବି କ'ଣ । ସାଙ୍ଗ ମାଇପେ ମୋତେ ମୋ ମା' କୋଳରେ ଥୋଇ ଦେଇ କହିଲେ, "ଯଶୋଦାଙ୍କ କୋଳକୁ କୃଷ୍ଣ ଆସିଚି...ଗୋପପୁର ଆଜି ଆନନ୍ଦରେ ଉଛୁଳି ଉଠୁଚି ।" ମୋ ନାଁ ଟା ଆଜି ସେଇ ଦିନୁ କୃଷ୍ଣ ହେଲା, ସମସ୍ତେ କୃଷ୍ଣ କୃଷ୍ଣ ବୋଲି ଡାକନ୍ତି । ମୋ ମା' କିନ୍ତୁ ମୋତେ ଆଉ ଗୋଟେ ନାଁ ଦେଇଚି ।

"କଣ ସେ ନାଆଁଟା...?"

କୃଷ୍ଣ କିଛି ସମୟ ଅଟକିଗଲା, କିଛି କହିଲାନି । ରାଧା ତା' ହସିଲା ମୁହଁରେ ପଣତ କାନିଟା ଅଧା ଘୋଡ଼େଇ ଦେଇ ହସି ହସି କହିଲା, "ମୁଁ କହିବି ?"

ସମରେନ୍ଦ୍ର ତା' ମୁହଁକୁ ଚାହିଁ ହସି ହସି ପଚାରିଲେ, କହୁନୁ · ସେ ଲାଜଉଚି । ସେ କହିଲା, "ଆଜ୍ଞା ତା ମା' ତାକୁ ଦୁର୍ ବୋଲି ଡାକେ ।"

"କରେ ଦୁର୍ କ'ଣ ? ଇଏ କି ନାଁ ?"

ରାଧା ହସି ହସି କହେ, ବାବୁ ଲମ୍ବା ନାଁଟାତ, ମାଇକିନିଆ ପାଟିରେ ପଡ଼େନି ଦୁଃଖ ପାସୋର୍' । ସେଇଠୁ ସେ ଛୋଟିଆ କରି ଦେଇଚି..ଦୁର..। ଆମେ ତା'କୁ ଆଉ ଟିକିଏ ବଦଳେଇ ଦେଇ ଡାକୁଚୁ "ଠୁର୍" । ମାଲିଆମାନେ କହନ୍ତି 'ଠୁର୍' ମିସ୍ତ୍ରୀ । ବାଙ୍ଗର ଲୋକଟିଏ ତ' ବାବୁମାନେ ଏ ନାଁ ତ ଜାଣିନାହାନ୍ତି କୃଷ୍ଣବୋଲି ଡାକନ୍ତି ।

ସମରେନ୍ଦ୍ର ହସିହସି ବେଦମ ହୋଇଗଲେ । ରାଧା କଡ଼େଇ ଧରି ବୋର୍ଡ ଉପରକୁ ଚାଲିଗଲା । ଏତିକିବେଳେ କାହ୍ନୁ ଦେହରେ ଯେଉଁ ସିମେଣ୍ଟ ପଲସ୍ତରା କରିଥିଲା, ସେଥିରୁ ଖଣ୍ଡେ ଖୁଡ଼ୁପଡ଼ି ତଳେ ବସ୍ତେଇ ହୋଇଗଲା । କୃଷ୍ଣ ରାଗରେ ଜର୍ ଜର୍ ହୋଇ କହିଲା, ଏ ଶାଳି ମାଇକିନାକୁ କାଲିଠୁ କାମକୁ ଆସିବିନି । ଥାନ ଅଥାନ କିଛି ଜାଣୁନି, ଯାହାକୁ ମନ ଯାହା କହି ପକଉଚି ।

ରାଧା କହିଲା, "ମୁଁ କ'ଣ କଲି, ଉଷୁଅ ଘରରେ ତାଟିଆ କାମୁଡ଼ୁଚ କାହିଁକି ? ତମ ଗଜ ବାଜିଲା, ମେଞ୍ଚାଏ ଝିପିପଡ଼ିଲା, ମୋର ଦୋଷ କ'ଣ !"

ଆହେ ଯା...ମସଲ ତ ପାଣିଆ କରଚ, ମୋ ଗଜ ବାଜିଗଲା ! ବସ୍ତାଖୋଲି ଶୁଖିଲା ସିମିଣ୍ଟି ଆଣ, ଯେ ଟୋକାକୁ କହୁ ବାଲିରେ ସିମେଣ୍ଟ ମିଶାଇ ଶୁଖିଲା ମସଲା ତିଆରି କରୁ ।

"କିରେ କୃଷ୍ଣ, ତୋତେ ଏତେ କଥା କହିଲା କିଏ ?"

ଯାଇର ବୁଢ଼ାବୁଢ଼ୀ ଲୋକେ କାହାନ୍ତି...ସେଇମାନେ ସବୁ କହନ୍ତି । ସେମାନେ ଯଯ୍ୟ ଆମର ଜୀଅନ୍ତା ଚଳନ୍ତି ଇତିହାସ, ଆଗେ କୋକେ ଇତିହାସ ଲେଖୁଥିଲେ ନା କ'ଣ ! ଏଇଟା ଏଇ ହାଲି ଅଳପ କେତେ ବରଷର କଥା ବୋଲି ଆମ ଯାର କହୁଥିଲେ । ଗାଁ ଇତିହାସ ବା ଲେଖୁଚ କିଏ । ଆଗେ ଲୋକେ ଶହେ ବରଷ ଉପରେ ବଞ୍ଚୁଥିଲେ ସେମାନେ ଶହେବରଷର ସବୁ ଘଟଣା କହନ୍ତି । ତାଙ୍କଠୁ ଆଉ-ମାନେ ଶୁଣିଆନ୍ତି, ସେମାନେ ବି କହନ୍ତି, ଆମ ଗରିବ ଗୁରୁଦା, ଗାଁ ମଳିମୁଣ୍ଡିଆଙ୍କ ଇତିହାସ ସେଇଥି ଆମ ଗାଁର ବୁଢ଼ାବୁଢ଼ୀ । ଆପଣଙ୍କ ଇତିହାସ ବହିଟା ଖୋଲିଦେଲେ ଖାଲି ଧଳାମରା, ବିଶ୍ୱାସଘାତକତା, ଅଧର୍ମ, ଅନ୍ୟାୟ କଥାରେ ପୃଷ୍ଠାଗୁଡାକ ପୂରିଚ, ହେଲେ ଆମ ଆଈ ବୁଢ଼ୀର କାହାଣୀ ପେଡ଼ି ଖୋଲି ଦେଲେ ଖାଲି ମଜାମଜା କଥାର ଖଣ୍ଡ ଖଣ୍ଡ ଝଜା ବାହାରି ପଡ଼ିବ । ତାଙ୍କ କଥାରେ ମିଛ ମିଶିନଥାଏ, ଖାଣ୍ଟି ସତ କଥା ପାଞ୍ଚ ତୁଣ୍ଡରେ ପଶି ବାହାରିଲେ ବେଳକୁ ଟିକିଏ ମୋଟା ବା ସରୁ ହେଇଯାଇଥାଏ । ଅପଣଙ୍କ ଇତିହାସ ବହିର କଥାଗୁଡ଼ାକ ତାହାମିଛ । ସତ ଭାଗ ଟିକ୍ ଅଳପ ମିଛଭାଗ ସବୁଠୁ ବେଶି ।

"କିରେ କୃଷ୍ଣ, ତୁତ କ'ଣ ସତ୍ୟସୁନ୍ଦରକୁ କଥାରେ ବଳିଗଲୁ । ପାଠଶାଠ କୋଉଯାଏ ପଢ଼ିଚୁ ?"

ଆଜ୍ଞା ପଢ଼ିଚ, ସେଇ ମେଟ୍ରିକଯାଏ, ଇଂରିଜିରେ ବେଶିଦେଲଯାଏ କଥା ହେଇ ପାରେନି ସିନା, ଆପଣ ଯାହା କହିବେ, ମୁଁ ସବୁ ବୁଝିବ । ହିନ୍ଦି, ଇଂରିଜି, ବଙ୍ଗାଳି, ତେଲଗୁ, ଓଡ଼ିଆ ତ ସହଜେ କହୁଚ । ଥରେ ଜଣେ ବାବୁଙ୍କର କାମ କରୁଥାଏ, ସେ ମୋ କାମ ବିଷୟରେ ଆଉ ଜଣେ ବାବୁଙ୍କୁ ଇଂରେଜିରେ କହିଲେ । "He is not expert but he knows his work" ମୋ ପାଟିରୁ ଆଜ୍ଞା ଚଟ୍‌କରି ବାହାରି ପଡ଼ିଲା, Exactly so sir, I know my work ।" ସେ ଦିହେଁ ତ ଅବାକ୍...ମୋ ମୁହଁକୁ ବଲ୍ ବଲ୍ କରି ଚାହିଁଲେ,

ତା' ପରେ ମୋ ପିଠି ଆଉଁସେଇ କହିଲେ, ପାଠ ତ ପଢ଼ିଚୁ କରଣୀ ଗୁରୁଦେ, ପିଅନ କାମ କରବୁ ?

ମୁଁ ସିଧା ମନାକରି ଦେଲି, କହିଲି କରଣୀ କାମ କରୁଥିଲେ ଦିନେ ଏଇ ଲଛନ୍‌ରେ ଉଠିବ, କଣ୍ଟ୍ରାକ୍ଟି କରବେ·· ପିଅନ ହେବ କାହିଁକି ?

ସେମାନେ ମୋ ଉଚ୍ଚ ଆଶା ଦେଖି ଭାରି ଖୁସି ହେଇଗଲେ ଆଜ୍ଞା, କହିଦେଲି ସିନା, ମୁଁ କଏ, କଣ୍ଟ୍ରାକ୍‌ଟି କଏ ।

ସମରେନ୍ଦ୍ର ହସିଲେ, କହିଲେ ମନରେ ଯାହା ଭାବୁଚୁ ସେଇଟା ଦିନେନା ଦିନେ ଫଳିବ । ଆଶାର ଗଛଟିକୁ ରୋଇଛୁ' ପାଣି ମୁନ୍ଦେ ମୁନ୍ଦେ ନ ଦେଲେ ଗଛଟି ବଢ଼ିବ କେମିତି···ନ ବଢ଼ିଲେ ଫୁଲଫଳ ଧରିବ କେମିତି । ଗୁଡ କିଛି ଅସମ୍ଭବ କଥା ଭାବନୁ...ତେବେ ଏଥିପାଇଁ ବ ଟିକିଏ ଆନ୍ତରିକ ଚେଷ୍ଟା ଦରକା'ର । ଆଚ୍ଛା ତୋ ବୟସ କେତେ ହେବ, ତୁ ତ ଆଜି ବ ପିଲାପରି ଦିଶୁଚୁ । ସତେ ସିମିତ ଚଉଦ ପନ୍ଦର ବର୍ଷର ପିଲା ପରି ଦେଖାଯାଉଚୁ ।

"ଏଇ ସ୍ୱଭାବ ଯୋଗୁଁ ଆଜ୍ଞା, ନ ମହଲା କୋଠା ଛଆର ହେଲାବେଳକୁ ମୁଁ ବାପା ସାଥିରେ କାମ କରୁଥିଲି । ସେତେବେଳକୁ ସତର ଅଠର ପାଖାପାଖି ହେଇ ଯାଇଥିଲି । ତା ସାଥିରେ ଆଜକୁ ସାତ ଆଠ ବରଷ ମିଶିଲାଣି । ଏଇ ଚବିଶ ପଚିଶ ହେବ । ଟିକିଏ ବୁଢ଼ୁଣିଆ ହେଇଯାଇଚି । ସେଥିପାଇଁ ମୁଁ ଆଜ୍ଞା ଦାସ୍ତୀ ।

"କାହିଁକି ?"

ବାପା ଦାଉରୁ ରକ୍ଷା ପାଇବାକୁ ସିନା ପଳେଇ ଆସିଲି, ହେଲେ ଖିଆପିଆ ସୁବିଧା ହେଲାନି । ଲୁଚି ଲୁଚି ଯାଇ ଖାଇଦେଇ ଘରୁ ପଳେଇ ଆସେ । ମା'ମୋର ବୁହିଥାଏ । ଯୋଉଦିନ ଯାହା ଭଲ କରେ ସାଇତିଥାଏ । ବାପା ଜାଣେନା ଦିନେ ବାପା ହାତୁଡ଼ରେ ପଡ଼ିଲି । ବାପା ବହୁତ ରାଗିଲା, କହିଲା ଘରୁ ପଳାକୁ ଗୋଡ଼ କାଟିଲେ ତତେ ଠିକ୍ କରିଦେବ । ମୋ ସାଥିରେ ଏଥର କାମ କର, ଘର ପଇସା ଘରକୁ ଆସୁ, ହୋଟେଲବାଲା କାହିଁକି ନେବ, ତୋ ବାପା ମା' କ'ଣ ମଲେଣି ? କଥାଟା ବାଧିଲା ମୋତେ, ଘରେ ହପ୍ତାଏ ରହିଲି ସିନା ତା ଦାଉରେ ଚଳି ପାରିଲିନି । ଯାହା କାମ କଲି, କିଛି ତା ମନକୁ ପାଇଲାନି, ଖାଲି ରାଗିଲା, ମଜୁରି କମିଗଲା ଆଜ୍ଞା, ପୁଣି ବାହାରି ଆସିଲି, ଆଉ ଗଲିନି ।

"ଏକୁଟିଆ ହେଇଗଲୁ କାମପାଇଟି ମିଳିଲା କି ନାହିଁ ?"

"ନା ଆଜ୍ଞା, ପ୍ରଥମେ ପ୍ରଥମେ ଭାରି ହଇରାଣ ହରକତ ହେଲି । ମୁଁ ତ ବାଙ୍ଗର ଲୋକଟା, ମାଲିକମାନେ ଭାବିଲେ ଏ ଲୋକଟା କି କାମ କରିବ ! କ୍ରୁଣ୍ଡ୍ରା ଲେମ ଗ୍ରୁଡ଼ନ । ବାଧ୍ୟହୋଇ ଆଉ ଆଉ ବୁଢ଼ା ମିସ୍ତ୍ରୀଙ୍କ ସାଥିରେ କାମକଲି । ମୋ ବାପାର ଟ୍ରେନିଂ ଆଉ କାମ ମୁଁ ତ ଭୁଲିଯାଇଥିଲି, ତାଙ୍କ କାମ ସାଥିରେ ମୋ କାମ-ଖାପଖାଉନଥିଲା । ସେମାନେ ବି ଈର୍ଷାରେ ମୋତେ ବଦଳେଇ ଦେବାକୁ ବସିଲେ । ମୁଁ ଗୋଟାଏ ଉପାୟ ପାଇଲି ଆଜ୍ଞା, ସେଇଟା ମୋତେ ଭାରି ସାହାଯ୍ୟ କଲା ।

"କ'ଣ ସେ ଅଭିନବ ଉପାୟଟା ଶୁଣେ !" କହିଲେ ସମରେନ୍ଦ୍ର ।

"ଏ ରାଧା…ଗଲି ପାନ ଗୁମଟି ଦୋକାନରୁ ଆଣିବୁ । ମୋ ପାନ ଢଙ୍ଗଟା, ବାବୁ, ଆପଣଙ୍କର କେମିତି ?"

"ନା…ନା…ମୁଁ ପାନ ଖାଏନି…ତୋପାଇଁ ମଗା ।"

"ଏଁ ଦାନ୍ତ ପାଟକର ଖଇର କାଠ ପାଲଟିଚି, ଆପଣ ପାନ ଖାଆନ୍ତିନି କହିଲେ ଆମେ ବିଶ୍ୱାସ ଯିବୁ…ସାଧା ନା କଡ଼ା ।"

"ଆଚ୍ଛା ସାଧା ପାନ ଆଣିବୁ…ଧନିଆ, ଲବଙ୍ଗ, ଚମନବାହାର । ମିଠା ମସଲା କିଛି ପକେଇବନି, ନେ ମୋଠୁ ପଇସା ନେ । ଧର, ଟଙ୍କାଟା ଧର ।

ରାଧା କୃଷ୍ଣ ମୁହଁକୁ ଚାହିଁଲା, କିଛି ନଂଧେଣି ପାଇବା ଲକ୍ଷ୍ୟରେ । କୃଷ୍ଣ କହିଲା, "ନେ, ବାବୁ କ'ଣ ଆମଠୁ ଖାଇବେ, ଧାରୁଆ ହୋଇଯିବେ ଯେ…ଆମକୁ ସିନା ଧାରୁଆ କରି ରଖିବେ । ଆଚ୍ଛା ପାନ ଗୁଡ଼ାଟା ତ ଚାରିଅଣା ପଇସା ହେବ ବାକି ପଇସାରେ ଗୁ' ଗୋଟେ ଆଉ ବିଡ଼ି ଆଣିବୁ । ବାବୁ ତ ଦେଉଛନ୍ତି ।" ରାଧା ଚାଲିଗଲା ।

"ବୁଝିଲେ ବାବୁ ! ଗୁମର କଥାଟା ତା' ଆଗରେ କହି ହୋଇନଥାନ୍ତା, ଦିନେ ଜଣେ ବାବୁ ମୋତେ କହିଦେଲେ, 'ତୁ ଟା ଗୋଟେ ମେଣ୍ଢା ଟୋକା, ତୁ କି କାମ କରିବୁ, ମୋତେ ଆଜ୍ଞା ଭାରି ବାଧିଲା, ସେଇଠୁ ଉଠିଲି ସିଧା ଭୁବନେଶ୍ୱର ହାଟକୁ । ଷିଅର ତବାଟାଏ କିଣିଲି ପାଞ୍ଚଟଙ୍କା ଦେଇ । ନିତି ନିତି ଷିଅର ହେଲି । ପ୍ରତିଦିନ ଷିଅର ହେଲି । ସେତେବେଳକୁ ମୁହଁରେ ଦାଢ଼ି ଉଠିନଥିଲା, ଉଠିଥିଲେ ବି କଳା ଗାର ପଡ଼ିଲା ପରି ଜଣା ପଡ଼ୁନଥିଲା । କ୍ଷୁର ବାଜିଲାକ୍ଷଣି ଲେଉଟିଆ କିଆରିରେ ପାଣି ପଡ଼ିଲେ ଶାଗ ଗଛ ଲମ୍ବ ଲମ୍ବ ହୋଇ ବାହାରି ଆସେ, ମୋ ମୁହଁରେ ସିମିତି କଳା କଳା ଦାଢ଼ିଗୁଡ଼ାକ କଅଁଳ ଲମ୍ବ ଲମ୍ବ

କରି ବାହାରି ଆସିଲି । ଆଜ୍ଞା, ସେତେବେଳେ ମୋ ମନର ଆନନ୍ଦ କହିଲେ ନସରେ । ଲଟେରିରେ ଲକ୍ଷେଟଙ୍କା ପାଇଲେ ହୁଏତ ମଣିଷ ଏତେ ଖୁସି ହୁଅନ୍ତା କି ନାହିଁ ମୁଁ କହିପାରୁନି ।

ଆଚ୍ଛା, ଦାଢ଼ିପାଇଁ ତୋର ଏତେ ଆନନ୍ଦ, ସମସ୍ତେ ଆସିବ ଦିନେ ବିରକ୍ତ ହୋଇ କହିବୁ ଏ ଦାଢ଼ିଗୁଡ଼ାକ ନ ଥାନ୍ତାକି’ ବୁଝିଲୁ କୃଷ୍ଣ !

“ଆଜ୍ଞା ସେ ସମୟ ଆସିଗଲାଣି, ହେଲେ ସେତେବେଳେ ମୋ ବିଜିନେସ୍‌ଟା ମାରି ହୋଇଯାଇଥିଲା, କରିଥାନ୍ତି କ’ଣ । ବଡ଼ ମଣିଷର ସାର୍ଟିଫିକେଟଟା ଏଇ ଦାଢ଼ି ମୋତେ ଦେଲା । ମାଲିକମାନେ କେହି କେହି ମୋତେ କୁନି ମିସ୍ତ୍ରୀ ବୋଲି କହିଲେ । ମୁଁ ମୋ ମୁହଁଟାକୁ ଫୁଲେଇ ଦେଇ ଲେମ ମୂଳ ଠାକୁରେଇ ଦିଏ । କଅଁଳିଆ କଳା ମଚ୍ ମଚ୍ ଦାଢ଼ିଗୁଡ଼ାକ ଓଠ ପରି ତାଙ୍କର ଆଡ଼କୁ ମୁହେଁଇ ଦେଇ କହେ, କୁନି ମିସ୍ତ୍ରୀ କ’ଣ କହୁଚନ୍ତି ବାବୁ, ଦେଖୁଚାରେ ଟିକିଏ ସାନ ବୋଲି ମୋର କ’ଣ ବୟସ ହୋଇନି ! ଆପଣ ଆପଣଙ୍କ ବୁଢ଼ାମିସ୍ତ୍ରୀ ଆଣନ୍ତୁ ମୋତେବି ଲଗାନ୍ତୁ, ଆମେ ଅଲଗା ଅଲଗା କାମ କରିବୁ ଦେଖିବେ ବୁଢ଼ା କିଏ ପିଲା କିଏ । ବାବୁମାନେ ଏତିକିରେ ଆଜ୍ଞା ଦବି ଯାଆନ୍ତି, କାମବି ମିଳିଯାଏ, ଗୋଟେ ଦିଇଟା କାମ ମିଳିଗଲେ ତା’ପରେ ଚାଲିଲା । ଏବେ ମୋତେ ଆଜ୍ଞା ଫୁରୁସତ୍ ନାହିଁ । ମୁଁ ଲାଗିଚି ଆପଣଙ୍କ କାମ ସରିଗଲେ ମୋତେ ଯାହୁ ।

“ଆଚ୍ଛା କୃଷ୍ଣ, ତୁ ବାପାକୁ ପଇସାପତ୍ର କିଛି ଦେଉ ନା ନାହିଁ ?”

ନା ଆଜ୍ଞା, ମିଛ କହିବି କାହିଁକି, ପ୍ରତିଦିନ ଦିଏନି, ମାସ ଶେଷରେ ଦଶପନ୍ଦର ଦିଏ, ମଝିରେ ମଝିରେ ହପ୍ତାକୁ ଥରେ ଅଧେ ଘରକୁ ଯାଏ, ଗଲେ ମୋ ମା’ ମୋତେ ଖୁବ ଆଦର କରେ । ଗଲାକ୍ଷଣି ଦଉଡ଼ିଯାଇ ବାଢ଼ିବସେ, ଶାଗ ସେଜ ଯୋଉଦିନ ଯାହା ଥାଏ ବାଢ଼େ । ମୁଁ ମୋ ଭଉଣୀମାନଙ୍କ ପାଖରେ ବସାଏ, ମଜାରେ ଖାଇ ଭଉଣୀ ଗପସପ କରି ଖାଉ । ସମାର ଯାକର କଥା ସେଇଠେ ପଡ଼େ । ମା’ ଦିନେ ଦିନେ ଗପରେ ଯୋଗଦିଏ । ଖାଇଲାବେଳେ ଦିନକପାଇଁ ଦୁଃଖକଥା କିଛି କହେନି । ସାନ ଭଉଣୀଟା ବଡ଼ ଚଗଲା, ବଡ଼ ଗପୁଡ଼ି; କଥାଗୁଡ଼ାକ ବାନ୍ତି ନ କରିବା ପର୍ଯ୍ୟନ୍ତ ତା’ ମନରେ ଶାନ୍ତି ନାହିଁ ମା’ ପାଖରେ ଥିଲେ ସେ ଘରର ଦୁଃଖ ସୁଖ କଥା କିଛି କହେନି । ଖାଇସାରିବା ପରେ ପାଖରେ ବସି ଖୁବ୍ ବିଶ୍ୱାସ ଗଳାରେ ନାନାକଥା କହି ପକାଏ । ସବୁବେଳେ କହେ ମା’କୁ କହିବନି, ମୋତେ ଗାଳି ଦେବେ ।”

କିଏ ଗାଳିଦେବ କାହିଁକି ? ମୁଁ ତାକୁ ଚୁପ୍ ଚୁପ୍ କରି ପଚାରେ । ସେ କହେ ମା’ ତାଗିଦା କରିଚି, କହିଚି, ଖାଇ ପରଘରକୁ କୁଣିଆ ଆସିଲେପରି କେତେ-

ବେଳେ କମିତ ଘରକୁ ଆସୁଚ । ତାକୁ ଦୁଃଖ କଥା କିଛୁ କହିବନି, ତା'ମନ ଫାଟି-ଯିବ, ଆଉ ଆସିବନି ।'' ଅଜ୍ଜା ସତ କହୁଚ, ପରଘର ନାଁ ଟା ଶୁଣିଲାଣି ମୋ ମନ ଭିତରଟା ହାଉହାଉ ହୋଇ ଜଳଉଠେ । ସତରେ କ'ଣ ମୁଁ ପର, ମନକୁ ପଗ୍ଚରେ । ନିଜର ମା'ଟା । ଆଉ ଅଧିକା କ'ଣ ମୋର ତ ଅନୁଭୂତ ନାହିଁ, ଅନେକଙ୍କୁ ପଚ୍ଚରେ ସେମାନେ କହନ୍ତି, ''ନିଜ ପଣିଆଟା ନଣ, ମଣିଷ କଥାରେ କହିପାରିବନି, ସେଇଟା ପଗ୍ ମନର କଥା, ମନର ଚେଉ ମନ ଭିତରର ସୁଅ, ଭିତରେ ଭିତରେ ଅସି ହୃଦୟର କୋଉ କୋଣକୁ ଛୁଇଁ ଦେଇଯାଏ ଯେ କେହି ଦେଖି ପାରନ୍ତିନି, ଯିଏ ଛୁଏଁ ଯାହାକୁ ଛୁଆଁ ଯାଏ ଦୁହେଁଯାକ ନିଜପଣିଆରେ ମାତିଉଠନ୍ତି । ମୋ ମା' ଆଉ ମୋ ଭିତରେ ଗୋଟାଏ ପରପଣିଆର ପରଦା ପଡ଼ିଚ ଟେ ! ମୁଁ ତ ଦେଖି ପାରୁନି, ସେ ଯଦି ଦେଖିପାରୁଥିବ ଦେଖୁଥିବ ।

ନାଇଁରେ କୃଷ୍ଣ, ତୁ ଏଇ ଯେତେଗୁଡ଼ିଏ ଅଭିମାନିଆ କଥା କହିଗଲୁ, ଏ ସବୁଗୁଡ଼ିକ ନିଜପଣିଆର ମନକଥା । ପରପଣିଆର ପଙ୍କରୁ ନିଜପଣିଆର ପଦ୍ମଟା ଫୁଟେ । ପରପଣିଆ ନଥିଲେ ନିଜପଣିଆଟା ଏତେ ଗାଢ଼ତର ହୁଅନ୍ତାନି । ତୋ' ମା' ପରପଣିଆର ପ୍ରେତଟାକୁ ଆଖି ଆଗରେ ରଖି ପିଲାଙ୍କୁ ଡାକଉ କଟେ, ସେଇଟାକୁ ଡର ରଖିଲେ ନିଜପଣିଆ ଠିକ୍ ଚାଲିବ ।''

ଖାଣ ବଢ଼ିଆ କଥାଟାଏ କହିଲେ ଆଜ୍ଜା ! ସବୁ କଥାର ଗୁମର ନ ଜାଣି ମଣିଷ ଯେ ବାହାରେ ବାହାରେ ଗୋଟାଏ ନିଷ୍ପତ୍ତିରେ ପହଞ୍ଚିଯାଏ ସେଇଟା କିଛି ଭଲ କଥାନୁହେଁ । ମୋ ମା'ଙ୍କୁ ମୁଁ ପରବୋଲି ଆଦୌ ଭାବିପାରୁନି । ମୋ ସାନ ଭଉଣୀଟା ଦିନେ ଦିନେ କହେ, ''କୃଷ୍ଣନା ଭାଇ, ତୁ ଘରେ ରହ, ଆମେ ତତେ ଛାଡ଼ିବୁନି, ତୁ ଘରେ ଥିଲେ ନା କେତେ ମଜାହୁଅନ୍ତା ! ଅଫାଗୁଡ଼ାକ ମୋତେ ବାଡ଼ଉଚନ୍ତି, ତୁ ଥିଲେ ମୋ ଦିହରେ ସେମାନେ ଟିପ ଦେଇ ପାରନ୍ତେନି । ଆମ ଘରେ ଭାଇ ନାହିଁ ବୋଲି ଲୋକେ ଆମକୁ ଅପମାନ କରୁଛନ୍ତି, ଡରଉଚନ୍ତି, ନ କହିବା ଲୋକ ପଞ୍ଚ କଥା କହୁଚ । ତୁ ଘରକୁ ଚାଲିଆ, ଆମ ପାଖରେ ଏଥର ରହ ।''

ମୁଁ ତା ପିଠି ଆଉଁଷେଇ ଦେଇ କହେ, ''ବୁଝିଲୁ ମୁକୁତା, ମୋ ବାପାକୁ ସବୁ ନଅଣ୍ଟ । ଏ ସାଇରେ ପୁଣି ଇମିତ ଲୋକ କିଏ ଅଛି ଯିଏ ମୋ ବାପା ମୁହଁରେ ଜବାବ ଦେଇପାରିବ । ମୁଁ ଅପନ୍ତ ଯେ, ବାପା ରଖେଇ ଦେବନି । ସାଙ୍ଗେ ସାଙ୍ଗେ କହିବ ମୋ ସାଥିରେ କାମକର, ନ ମାନିଲେ ପୁରୁଣ ଫିଙ୍ଗେଇବ । ତା' ପାଖକୁ ନ ଆସିଲେ ଭଲ ।

ମୁକ୍ତା ହସି ହସି କହେ, "ଏତେ ତ ବାଡ଼େଇ ପକାଉଚ, ଆମେ ସବୁ କେମିତି ସହ୍ୟକରି ରହୁଚୁ ! ଆମେ ତ ଝିଅ, ତୁ ତ ପୁଅ ପିଲାଟା, ତୋ'ର କ'ଣ ହୋଇଯାଉଚି ?

ମୁଁ ହସି ହସି କହେ ସେଥିପାଇଁ ତ ଝିଅଗୁଡ଼ାକ ସହିବାକୁ ଜନମ ପାଇଚନ୍ତି । ଆମେ ପୁଅପିଲା ସହିବୁ କାହିଁକି ?

ମୁକ୍ତା ଛୁରୁଲେଇ ହୋଇ କହେ—ମୋ ମାଆଲେ ପୁଅପିଲା, ଏପାରି ସେପଟେ ଢଉଁଳାରେ ଗାଁ ଆଉ ଘର ଛାଡ଼ି ପାର୍, ଏଥିରେ କ'ଣ ନା ଆମେ ପୁଅପିଲା । କୃଷ୍ଣା ଭାଇ, ତୁ ସବୁଠୁ ମାଇଚିଆ । ବାପା କଥାରେ ଏତେ ଛଳ କାହିଁକି, ସେ କ'ଣ ବାଘ ହୋଇଚି ଯେ ଖାଇଦେବ । ଯା'ଘରେ ପୁଅପିଲା ନାହିଁ, ତା'ଘର ଲୋକେ ଗାଁ ଭୂଇଁରେ କେମିତି ଲଇଁ ସଇଁ ହୋଇ ଚଳନ୍ତି, ଜାଣିବୁ କେମିତି ! ଭଉଣୀମାନଙ୍କ ପଛକୁ ଭାଇଟେ ଥିଲେ ସରଗଟା ତାଙ୍କ ପଛେ ପଛେ ବୁଲୁଚି ବୋଲି ସେମାନେ ଯେ ଭାବନ୍ତି ଏକା । ତୋ'ପରି ମାଇଚିଆ ପୁଅପିଲା ବୁଝି ପାରିବନି ।

"ଠିକ୍ ଠିକ୍ କଥା କହୁଚ ମୁକ୍ତା ! ତୋ ନାଁଟା ଯିମିତି କଥାଗୁଡ଼ାକ ବି ସିମିତି । ହଇରେ କୃଷ୍ଣ ! ବାପା, ମା, ଭାଇ, ଭଉଣୀର ମନ କଥା ତୁ ଯଦି ଘରର ବଡ଼ ପୁଅ ହୋଇ ବୁଝିପାରୁନ, ତା' ହେଲେ ସାତ ସାନ ଭଉଣୀଠୁ ଗାଳି ଖାଇବୁନି ତ ଆଉ କଣ !"

ଠିକ୍ କହୁଲେ ଆଜ୍ଞା ! ମନକୁ ବୁଝାଉଚି, ବୁଝିଲେ ଘରକୁ ଫେରି-ଆସିବ । ହାତୀ ବନସ୍ତରେ ଥିଲେ ବି ରଜାଙ୍କର । ବାପା କଥା ଯା' ହଉ ପଛକେ ମୋ ମା' ଆଉ ଭଉଣୀଗୁଡ଼ାକୁ ଛାଡ଼ି ଅଲଗା ରହିପାରିବେନି, ବଡ଼ ଭଉଣୀ ଦି'ଟା କିଛି କହିପାରନ୍ତିନି; କିନ୍ତୁ ସାନ ଭଉଣୀ ଏମିତି ମରମଛୁଆଁ କଥା କହିଲାବେଳେ ସେ ଦିହେଁ ଆଖି ଛଳ ଛଳ କରି ମୁହଁ ଫେରାଇନିଅନ୍ତି । ଅଧ ବଅସ ହେଲେ କିଏ କହିପାରେ, ମୁକ୍ତା ତୋ ମୁହଁ ବଢ଼ିଯାଉଚି, ଭାଇକୁ କ'ଣ ଇମିତି କହନ୍ତି । ମା'କୁ କହିଦେବି ଯେ ମଜା ଚଖେଇଦେବ । ଧନେ ଧନେ ମା' ମୋ ପାଖରେ ବସି ମୁହଁକୁ ବଲବଲ କରି ଅନାଏ, ଶୁଖିଲା ମୁହଁ ଦେଖିଲେ ପଚାରେ ମୁହଁ ତୋର କିଆଁ ଶୁଖିଯାଇଚି ? କାମ ଧାମ ମିଳୁନି କି ? ପଇସା ପତ୍ର ପାଖରେ ନାହିଁ ?

ମୁଁ କିଛି କହେନି, ତୁନିହୋଇ ବସିଥାଏ । ସେ ଚଟ୍ କରି ଉଠିଯାଇ ପାଞ୍ଚ ଦଶ ଅଣି ହାତରେ ଗୁଞ୍ଜିଦିଏ, କହେ କାମ ନ ମିଳୁ, ଘରେ ଆସି ଖାଇଯିବୁ । ବାପା ଉପରେ ଏତେ ରାଗ କିଆଁ ! ତୁ ଘରେ ରହ ବାପା

କ'ଣ କହୁଚିଲ ମୁଁ ବୁଝିବି ।" ସମରେନ୍ଦ୍ର ଆନନ୍ଦରେ ବିହ୍ୱଳ ହୋଇ-
ଉଠନ୍ତି । କହନ୍ତି, "କୃଷ୍ଣ, ତୋର ଭଗବାନ ମଙ୍ଗଳ କରିବେ । ସେମାନଙ୍କୁ
ହତାଦର କରିବୁନି । ତମ ଘରଟା ଘରନୁହେଁ ସରଗ ସରଗ, ତୋ ନିଜ
ମା'ଥିଲେ ଆଉ ଅଧିକ କ'ଣ କରିଥାନ୍ତା ।"

ମୁଁ ଜାଣିବାକୁ ଏଇଟା ତ ଆଜ୍ଞା ମୋ ନିଜ ମା । ସାଇରେ କେହି ଅନ୍ୟ
କିଛି ନାଁରେ ମୋ ମା'କୁ ଡାକନ୍ତିନି । ଯିଏ ଡାକେ କୃଷ୍ଣ ମା' ବୋଲି ଡାକେ
ନହେଲେ ମୁକୁତା ମା' ବୋଲି ଡାକେ । ଦିନେ ମୁକୁତା କହିଲା, "ଭାଇ,
ମା'ଟା ଏକୁଟିଆ ତୋର ଆଉ ମୋର. ଏ ଅପା ଭାବନ୍ତେ ମୁହଁ ଫୁଲାଇବ ।"
ବୁଝିଲେ ଆଜ୍ଞା, ମୋ ବାପା ବି ମା'କୁ 'କୃଷ୍ଣ ମା' ବୋଲି ଡାକେ । ତା
ଓ କଥା ମୋ କାନରେ ପଡ଼ିଲେ ଭାରି କୁଣ୍ଢେମୋଟ ହୋଇଯାଏ । ଦିନେ
ମୋର ଆର ଦି' ଭଉଣୀ କହିଲେ; "ମା, ତତେ ତ ସମସ୍ତେ କୃଷ୍ଣନା ଭାଇର
ମା' ବୋଲି ଡାକୁଛନ୍ତି, ଆଉ ଆମର ??" ମୋ ମା' ହସି ହସି କହିଥା
ଉତ୍ତରଟେ ଦିଏ । ସେ କହେ ତୁମ ମୋର ମୂଳ, ତମେ ସବୁ ଡାଳପତ୍ର ।
ମୂଳରେ ପାଣି ଦେଲେ ଡାଳପତ୍ର ବଞ୍ଚିବେ । ଡାଳପତ୍ରରେ ପାଣି ସିଞ୍ଚି ମୂଳରେ
ନ ଦେଲେ ଗଛ ମରିଯିବ । ଏ କଥା ପଦକ ମୋ ମନରେ ଗାରକାଟି ଦେଇଚି
ଆଜ୍ଞା !

"ବୁଝିଲୁ କୃଷ୍ଣ ତୁ ପିଲା ଅଛମାନରେ ଘରଛାଡ଼ି ଚାଲିଆସିଚୁ, ହେଲେ
ତୋ ନାଁଟା ଘରେ ବସା ବାନ୍ଧିଚି । ତାକୁ କେହି ଘଉଡ଼େଇ ପାରିବେନି ।
ବାପା ପାଖକୁ ଏଥର ଫେରିଆ । ଘର ଛାଡ଼ି ବାହାରେ ରହିଲେ ତୋର କ୍ଷତି
ବେଶି, ବାପାର ନୁହେଁ ।"

କୃଷ୍ଣର ଗଳା ଗମ୍ଭୀର ହୋଇଯାଏ, ସେ କହେ, "ମୁଁ ମରିଗଲେ
ମୋର କ'ଣ କ୍ଷତି ହେବ, ସେଇ ବାପାର କ୍ଷତି ହେବ । ବାପାଠୁ ଅଲଗା
ରହିବାରେ ମୋର ଲାଭ ବେଶି । ଯୋଉ ଦିନ ଘରକୁ ଚାଲିଯିବି, ସେ ଦିନ
ମୁଁ ମା'ର ହୋଇଯିବି ସାବତପୁଅ, ଭାଇ ଭଉଣୀର ହୋଇଯିବି ସାବତ ଭାଇ ।
ସ୍ନେହ ଲତାଟା ଗଛଲିଆ ହୋଇ ଯେ ମୋ ଜୀବନରେ ମାଡ଼ିଚି, ଦି' ଦିନରେ
ମଉଳିଯିବ । ଅଘରିଆ ଲୋକ ଘରକୁ ଫେରିଗଲେ ସବୁବେଳେ ଘୃଣା ତା
ଗୋଡ଼ ଦଉଡ଼ିକୁ ଟାଣିବ । ମୁଁ ଘରକୁ ଯିବି ସେ ବସା ବାନ୍ଧିବନି ।"

"ଫେରି ସେ ଅବୁଝା କଥା କହୁଚୁ କୃଷ୍ଣ ! ହଡ଼ା ଚଢ଼େଇର କ'ଣ
ବସା ନଥାଏ ! ଅଘରିଆର ଘର ନଥାଏ, କ'ଣ ଘରଟା ଆଶ୍ରା, ଯିଏ ଯେଉଁଠି
ଆଶ୍ରୟ ନିଏ ସେଇଟା ତାର ଘର ।"

ସମରେନ୍ଦ୍ର କୃଷ୍ଣର ଏଇ ପଦେ ଅଧେ କଥାରେ ଚହଲିଗଲେ । ମନେ ମନେ କୃଷ୍ଣକୁ ତାରିଫ କଲେ, ତା' ଜୀବନଦର୍ଶନ ଗୋଟାଏ ଅବହେଳିଆ ମୋଡ଼ ନେଇଥିଲେ ବି ଅତିରଞ୍ଜନ ନୁହେଁ, ଅନାବଶ୍ୟକ ନୁହେଁ । ତାର ଦର୍ଶନହିଁ ତାକୁ ବଞ୍ଚାଇଛି । ସତରେ ମଣିଷ ତା ଜୀବନ ଉପରେ ଗୋଟାଏ ଦାର୍ଶନିକ ଦୃଷ୍ଟିଭଙ୍ଗୀ ନପକାଇଲେ ବୋଧହୁଏ ଆଗେଇ ପାରନ୍ତା ନାହିଁ · ସଂଘର୍ଷ ଭିତରେ ··କୋଳାହଳ ଭିତରେ । ତା ଚଗଲ ଯୌନ ଉଦ୍ଦଣ୍ଡୀ ମୁକୁଳା ଦର୍ଶନର କି ମହାତତ୍ତ୍ୱ ନ ଶିଖାଇଲା ତାକୁ । ଯେଉଁଠା ଦେଇ ଅଯେଉଁଠା ଦେଇ ମଣିଷର ଜୀବନ ହିଁ ଗୋଟାଏ ମହାକାବ୍ୟ, ତାକୁ ପଢ଼ିବାକୁ କିଏ ଆଗେଇ ଆସୁଛି । ମା' କହନ୍ତି, ସନ୍ତାନ ଘରଠାରୁ ପର ହୋଇଗଲେ ପ୍ରିୟତର ହୋଇ ଉଠେ, ଘରକୁ ଅପଣାର କରି ନେଲେ ଘର ତାଙ୍କୁ ପର କରିଦିଏ, କୃଷ୍ଣର କି ଶାଣିତ ସିଦ୍ଧାନ୍ତ ।

କୃଷ୍ଣ କଥାର ସୁଅ ବଦଳାଏ । ବାବୁଟା ଭାରି ସରଳ ଲୋକ, ଉପରକୁ ସିନା ସରଳିଆ ଜଣାପଡ଼େ, ହେଲେ ମରମ କଥାଗୁଡ଼ାକ ଛଡ଼େଇ ନେବାକୁ ତାଙ୍କୁ ବେଶିବେଳ ଲାଗିଲାନି । କୃଷ୍ଣ ଭାବେ ଯେ କ'ଣ ବାବୁ ପାଖରେ ହାଲୁକା ହୋଇଗଲା ! ନା ନା ବାବୁଟା ବୋଧହୁଏ ସେମିତି କୁଟିଳିଆ ଲୋକ ନୁହେଁ । ସେ ଗଳା ସଫା କରି କହେ, "ବାବୁ କାଲିଠୁ ଆପଣ ମୋ ପାଖରେ ଆଉ ବସିବେନି, ମୁଁ ତ ସହଜେ ଗପୁଡ଼ି ଲୋକ, କଥା ନିଶା ଲାଗିଗଲେ ତେଣିକି ଚାଲିଲା । ଆପଣ ସିନା କିଛି ଭାବୁ ନାହାନ୍ତି, କିଏ ଦେଖିବ କହିବ ଏ ମାଈଟା ଭାରି ଚାଲୁଅଛି । ଗୁଲଗଟି ଗପ ଜମେଇ ଦେଇ ବାବୁଙ୍କୁ ବସେଇ ଦେଉଛି, କାମ ତେଣିକି ହେଲେ ହେଉ, ନହେଲେ ନାହିଁ ।"

ସମରେନ୍ଦ୍ର ହସି ହସି କହିଲେ, "ତୋ ପାଟି ଆଉ ହାତ ଠିକ ତାଳ ଦେଇ ଚାଲିଛି, ମୋ କାମ ବନ୍ଦ ହେଉନି । ଏଇଟା ଗୋଟାଏ ସୁଯୋଗ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଭଲ ଭାବରେ ଜାଣିଲେ···କାମ ତ ଅଳ୍ପଦିନରେ ସରିଯିବ କିନ୍ତୁ ଆମର ଏ ଆଳାପ ଆମକୁ ସବୁଦିନେ ବାନ୍ଧି ରଖିଥିବ ।"

ଆଉ ଦିନକର ଘଟଣା ।

ସମରେନ୍ଦ୍ର ବାରଣ୍ଡାରେ ବସି ରାସ୍ତା ଆଡ଼କୁ ଚାହିଁଛନ୍ତି । ସୁଲୁସୁଲିଆ ଶୀତଳ ପବନ ମନଟାକୁ ଉଲ୍ଲାସରେ ଉତ୍ଫୁଲ୍ଲିତ କରି ଦେଇଛି । କବିତା ଲେଖିବା ପାଇଁ ସେ କଲମଟାକୁ ଧରିଛନ୍ତି । ସାମନା ଝାଉଁ ଗଛର ସରୁ ସରୁ ପତ୍ର ଗୁଡ଼ାକ ପବନରେ ଫହଁରୁଥାଏ । କଅଁଳ ଡାଳଗୁଡ଼ାକ ଆନନ୍ଦରେ

ନାଚୁଥା'ନ୍ତି, ଶୂନ୍ୟତା ସହିତ ପ୍ରତିଯୋଗିତା କରି ଉପରକୁ ଉଠୁଛନ୍ତି ବୋଲି । ହଉତ ଯେପରି ସେମାନେ କରୁଛନ୍ତି, କଅଁଳ ପିଲଙ୍କୁ ଏଇପରି ଉପରକୁ ଛୁଟାଅ ।, ତାଙ୍କର ସବୁ ଭ୍ରମ ବନ୍ଧନ କରି ଉପରେ ରଖ, ତମେ ତାଙ୍କୁ ଟେକି ଟେକି ଦେଲେ ସେମାନେ ଉପରୁ ଉପରକୁ ଉଠି ଉଠି ଯିବେ । ଶିରିଷ ଗଛର ପତ୍ରଗୁଡ଼ାକ ଅର୍ଦ୍ଧମୁଦ୍ରିତ, ପବନରେ ଡାଳଗୁଡ଼ାକ ହଲୁଚି । କୁଆଟାଏ ଆସି ଦୋହଲା ଡାଳରେ ବସିବାକୁ ଗୋଡ଼ ବଢ଼ାଇଲାବେଳେ ଡାଳଟା ପବନରେ ଖସିଯାଉଚି, ତେଣା ଫଡ଼ ଫଡ଼ କରି କରି ସେ ବାଲାନସ୍ ନେଉଚି । ଡାଳଟା ଯଥା ଜାଗାରେ ରହିଲେ ସେ ତା ଉପରେ ବସି ଦୋଳି ଖେଳିବ ।

ସାମନାରେ ଆଉ ଜଣେ ଭଦ୍ରବ୍ୟକ୍ତିଙ୍କ ଘର । ବାଡ଼ିରେ ତାଙ୍କର ନଡ଼ିଆ ଗଛ । ବାହୁଙ୍ଗାର ସରୁସରୁ ପତ୍ରଗୁଡ଼ିକ ସଙ୍ଗୀତବିହ୍ୱଳ ପାଲି ଗାୟକର ଚଅଁରପରି ଏ ପାଖ ସେ ପାଖ ମୁଣ୍ଡ ହଲାଇ ଛନ୍ଦାୟିତ ଗତିରେ ନାଚୁଛନ୍ତି । ଫଳଭରା ପିଜୁଳି ଡାଳଟି ଆଦିବାସୀ ରମଣୀର ନିତମ୍ବ କମ୍ପନ ପରି ପବନ ହିଲ୍ଲୋଳରେ ଦୋଳାୟିତ ହେଉଚି । ସମରେନ୍ଦ୍ର ତନ୍ମୟ ହୋଇ କବିତା ରଚନା କରିବାରେ ବ୍ୟସ୍ତ । ସୌମ୍ୟା ତାଙ୍କର ଟିକି ଝିଅଟିକୁ ନେଇ କବିଙ୍କ ପାଖରେ ପହଞ୍ଚିଗଲେ । ଝିଅକୁ ତାଙ୍କ କୋଳରେ ବସାଇ ଦେଇ କହିଲେ, ତମ କବିତାକୁ କୋଳ କରି ମୋ କବିତାକୁ ସବୁବେଳେ ଦୂରେଇ ଦେଉଚ । ଟିକିଏ ତାକୁ ଧର, ମୁଁ ଦୁଃଖୀକୁ ଖାଇବାକୁ ଦେଇଦିଏ, ସେ ଜାଗଠିକୁ ଯିବାକୁ ତର ତର ହେଉଚି ।"

କୁନି ଝିଅଟି କୋଳରେ ବସିଲା । ହାତରୁ କଲମ ଛଡ଼ାଇ ନେଇ ପାଟିରେ ପୂରାଇଲା । ଖାତାଟାକୁ ଟାଣିଲା ଦି' ହାତରେ, ତାକୁ ମୁଗୁମୁଚ କରି ତା'ର ଟିକି ଟିକି ଆଗଦାନ୍ତ ଦଇଟିରେ ଚୁଣ୍ଡାଇଲା । ପାଟିରୁ ଲାଳ ବହି ସାରା ଦେହ ଜୁଡ଼ୁବୁଡ଼ୁ ହେଇଗଲାଣି । ଶେଷରେ କବିତା ଲେଖା ଖାତାଟି ଉପରେ ସି. କରି ଦେଲା, ହାତରେ ତାକୁ ଲିପିଲା । ସମରେନ୍ଦ୍ରଙ୍କ ମୁହଁକୁ ଚାହିଁ ହସି ହସି କହିଲା ମା···ମା···ପା···ପା···। ସମରେନ୍ଦ୍ର ବ୍ୟସ୍ତ ହୋଇ ସୌମ୍ୟାଙ୍କୁ ଡାକିଲେ ।

ଏ ! ଶୁଭଲକ !!

ତମ କବିତାର ବନ୍ୟାରେ ମୋ ଟେବୁଲ, ଚୌକି, ଖାତା ପତ୍ର, କବିତା, କଲମ ସବୁ ଭାସିଗଲାଣି ।

"ଭଏକ ଡାକିମ, ମୋର କ'ଣ ନାଁ ନାହିଁ"·· ହସିହସି ପଚାରିଲେ ସୌମ୍ୟା ।

"ନିମ ନାଁଟା ଏତେ ମୂଲ୍ୟବାନ, ଏତେ ଲୋଭନୀଆ ଯେ ସବୁବେଳେ ଡାକି ଡାକି ଘସର କରିଦେବା ମୋର ଇଚ୍ଛା ନୁହେଁ । ଏଇ ଅନାମିକା ନାଁଟା ମୋତେ ଖୁବ ଭଲଲାଗେ । ବୋଧହୁଏ ଷ୍ଟାଟିଷ୍ଟିକ୍ସ ନେଲେ ଜଣାଯିବ ଅଧିକାଂଶ ସ୍ତ୍ରୀଙ୍କର ନାଁ "ଏ" ଅଧିକାଂଶ ସ୍ୱାମୀଙ୍କର ନାଁ "ବୁଝିଲକି" । ମୁଁ ତ ସେପରି କିଛି ବ୍ୟାକରଣଗତ ଅଶୁଦ୍ଧି ସୃଷ୍ଟି କରିନି ।

ସୌମ୍ୟା ହସିଲେ ।

କରେ ଚଗଲା, ବନ୍ୟା ସୃଷ୍ଟି କରିଦେଲୁ ! ବାପାଙ୍କର କବିତାଲେଖା ଖାତାଟି ଭାସିଗଲା । ଆ···ଆ । ଅତ୍ୟାଶ୍ଚର୍ଯ୍ୟ ମହାମ୍ମଦ ତୋଗଲକ । ତୁ କାହାକୁ ବସେଇ ଉଠେଇ ଦେବୁନି ।

ଦୁଃଖୀ ଶବ୍ଦରେ ଝାଳନାଳ ହୋଇ ଆସେଇଛି ନୂଆ ଘରକୁ । ମିସ୍ତ୍ରୀ କ'ଣ କାମ ଆରମ୍ଭ କରିଦେଲେଣି ! ପାଖେଇ ଆସିଲାଣି ଦୁଃଖୀ, ହସର ହୁଲ୍ଲୋଳ ଭାସି ଆସୁଛି ଘର ଭିତରୁ । ସେ ଚଟ୍‌କିନି ଭିତରକୁ ପଶିନଯାଇ ବାହାରେ ଠିଆ ହେଲା ପରିସ୍ଥିତି କ'ଣ ଜାଣିବାକୁ । ଦେଖିଲା କୃଷ୍ଣ ଶ୍ରୀମତୀ ରାଧାଙ୍କ କୋଳରେ ମୁଣ୍ଡ ଦେଇ ଊର୍ଦ୍ଧ୍ୱମୁଖରେ ତା'ର ମୁଖମାଧୁରୀ ପାନ କରୁଛି । ଚିଲମରୁ ଦମକାଏ ଧୂଆଁ ଟାଣିନେଇ ଖୁବ୍ ଶ୍ରଦ୍ଧାରେ ରାଧା ହାତକୁ ବଢ଼େଇ ଦେଉଛି । ରାଧା ତା'ର ପାନପତ୍ର ପାଟିରେ ଚିଲମଟିକୁ ମୁଠା ସନ୍ଧିରେ ଥୋଇ, ଖୁବ୍ ଜୋରରେ ଧୂଆଁ-ପୁଞ୍ଜାକ ଭିତରକୁ ଟାଣିନେଇ, ଆସ୍ତେ ଆସ୍ତେ ଛାଡ଼ୁଛି । ପେଟ ଭିତରଟାକୁ ପେହେଁଗ୍ଲ ଦେଇ, ଧୂଆଁ ଗୁଡ଼ାକ ତଳକୁ ବାହାରି ଯିବାର ବାଟ ନପାଇ ପାଟି-ପାଖକୁ ଫେରି ଆସିଛନ୍ତି । ଧାରଧାର ହୋଇ ଉପରକୁ ଉଠିଲାବେଳେ, ତା ସୀମନ୍ତର ସିନ୍ଦୂର ରେଖା ଉପରେ ନାଚକୁଦ ଖେଳିଯାଉଛନ୍ତି । ହସିହସି ସେ ଚିଲମଟିକୁ ବଢ଼େଇ ଦେଉଛି କୃଷ୍ଣ ହାତକୁ । ଆଃ···କି ତୃପ୍ତି···କି ଆନନ୍ଦ ! କୃଷ୍ଣ ଚିଲମଟାକୁ ଉଠାଇଲାବେଳେ ମହାଆନନ୍ଦରେ ଗାଉଛି—

"ଏଇଟା ଆମ ଘର
ତୁ ତ ରାଧା,                ମୁଁ ତ କୃଷ୍ଣ
ଆଉ କାହାକୁ ଡର ।"

ଦୁଃଖୀ ନିଃଶ୍ୱାସ ବନ୍ଦ କରି ଆଗପାଦକୁ ପଛକୁ ଆଣି ଆସ୍ତେ ମୁହଁ ବୁଲାଇଲା ଗଛକୁ । କୃଷ୍ଣର ଭବରେ ସେ ରାସଲୀଳାଟା ବନ୍ଦ କରି ଦେବ କିମିତି ? ତା ଶିର-

ପ୍ରଗୀତିରେ ବି ଉନ୍ମାଦନାର ଉଦ୍ଦୀପନ । ତା'ଭିତରେ ଥିବା ଅଣ୍ଡା ଗଛଟାରେ ବି ନବ ପଲ୍ଲବର ଅରୁଣିମା । ଦୃଶ୍ୟଟା କ'ଣ ଏତେ ହୃଦୟଗ୍ରାହୀ । ଆଖିରେ ପଡ଼ିଲାକ୍ଷଣି ମନ ଭିତରେ ଏତେ ପ୍ରତିକ୍ରିୟା, ଏତେ ଝଡ଼ ତୋଫାନ । ତା' ମଝିରୁ ମନରେ ପଥଭ୍ରଷ୍ଟ ଦକ୍ଷିଣା ପବନର ଉତ୍ପାତ । ପର ମୁହୂର୍ତ୍ତରେ ସେ ବଡ଼ କ୍ଳାନ୍ତ ଓ ଅବଶ ଅନୁଭବ କଲା । ସେ ଅନୁଭବ କରୁଚି ତା ମନଟା ପ୍ରଚଣ୍ଡ ବାତ୍ୟାଗ୍ରସ୍ତ ଏକ ଉପଦ୍ରୁତ ଅଞ୍ଚଳ ।

ଦୁଃଖୀ ଫେରି ଆସିଲା ପାନଦୋକାନକୁ ! କେବେ ତ ପାନ ଖାଏନା, ତେବେ ଆଜି ବସିଗଲା ଖଣ୍ଡେ ସାଦାପାନ ପାଇଁ । ଚୂନ ଥିଲା, ଖଇର ପଡ଼ିବାକୁ, ଧନିଆ ପତ୍ରବାକୁ, ସାମାନ୍ୟ ପାନମହୁରି, ଲବଙ୍ଗ ଆଉ ଟିକେ ମୁହଁବାସ ମସଲା । ପାନ ଦୋକାନୀ ତା'ର ପରିବର୍ତ୍ତନକୁ ଲକ୍ଷ୍ୟ କରୁଚି । ସେ ହସି ହସି କହିଲା, "କି ଦୁଃଖୀ ଭାଇ, ଆଜି କ'ଣ ମନ ଭାରି ଚଇନ । କ'ଣ କିଛି ମିଳିଗଲା କି ?"

"ଦୁଃଖୀକୁ ଦୁଃଖଗୁଡ଼ାଏ ଛଡ଼ା ଆଉ ମିଳିବ କ'ଣ ? ସୁଖ ପୁଳାଏ ମିଳିଲେ ବି ସେଇଟା ପରେ ବେଶି ଦୁଃଖ ଦେଇଥାଏ । ଯାହା ହେଉ ଦୁଃଖୀର ସୁଖ ସାଥିରେ ଅପଡ଼ । ଆଜି ଘରେ ଆଇଁଷ ଖାଇଥିଲି ସେ, ପାଟିରେ ଛେପ କଲକଲ ହଉଚି, ସେଥିପାଇଁ ପାନ ଖଣ୍ଡେ ମାଗିଲି । ଆମେ ତ ପାନେ ଖାଇବା ଲୋକ, ସବୁଦିନେ ପାନ ଖାଇବୁ କେଉଁଠୁ ।"

"ଓ... ଏମିତି, ଆଜି କ'ଣ କାମଧାମ ହେଉନି କି ? ବୋର୍ଡ ଉପରେ ତ କାହିଁ କେହି ନାହାନ୍ତି ।"

"ସେଇଥିପାଇଁ ତ ଫେରିଲି । ମିସ୍ତ୍ରୀ ନାହିଁ, ରେଜା ନାହିଁ, ଆଉ ପିଲାଟା ବି ନାହିଁ, ସେମାନେ ଗଲେ କୁଆଡ଼େ ? ଭାବିଲି ଗୁଁ' ଖାଇବାକୁ ଆସିଥିବେ ।"

"ଆରେ ଘର ଭିତରଟା ଦେଖିଥିଲୁ ନା' ନାହିଁ, ଗୁଲି ଟାଣି ଦେଇ ଝାଲଟାଯାକ କୋଉ କୋଣରେ ପଡ଼ିଥିବେ । ପିଲାଟାକୁ ଘରକୁ ପଠେଇ ଦେଇଥିବେ, ଖାଇ-ଆସିବାକୁ । ତମେ ବି ସିମିତି, ମରଦଟାକୁ ମାଇପିଟେ ଅଣି ଲଗେଇଚ, ସେଥିରୁ ଟୋକାଟା କ'ଣ ବା ଜାଣୁଚ । ଆରେ ଯୋଡ଼ି ଏକାଠି ହେଲେ କାମ ନା ଧାମ ! ହେ... ହେ...ହେ... ।"

"ବୁଝିଲୁ ଭାଇ, ସେଇଥିଆ, ଫଳନ୍ତରି ତ ଠିକାରେ ଦିଆ ଯାଇଚ, ଲୋକ ଆଣିବା ଭାର ତା'ର । ଅଳପ ଲୋକରେ ବହୁତ କାମ କରେଇ ନେବାକୁ ତା'ର

ଇଚ୍ଛା; ମୁଁ କାମ୍ଟ ଦେଖୁଚି, ଲାଭ ପଇସା ତେଣିକି ଥାଉ ଧନିକର ମଜୁରିଟା ଉଠୁଚି କି ନାହିଁ ।"

ତୁ ଜାଣିନୁ ଦୁଃଖୀ, ମେଉଟା ଏକ ନମ୍ବର ଡାକୁ ଏଣ୍ଡିକି ବକଟେ ପିଲା-ପଣ ସିନା ଉଣୁଚି, ହେଲେ ମାଲିକଙ୍କ କଥାରେ କାବୁ କରି ଦେବାକୁ ତାକୁ ବେଶୀ ବେଳ ଲାଗେନା । ମେଉଟି କମ୍ ନାଗରା ଲୁହେଁ, ମେଉ ଯେଉଁ ରେଜାଟାକୁ ଆଣିଚି ସେଇଟା ଗୋଟାପଣେ ତା'ର । ଦେଖୁନୁ ତା' ସିନ୍ଦୁର ଟୋପାଟା କେଡ଼େ ବଡ଼ । ଗେରସ୍ତଟା ତା'ର ଉପାସିଆ ଲୋକ, ଯେ ଘରେ ପିଲାଛୁଆ ସମ୍ଭାଳେ, ରାନ୍ଧ ବାଢେ, ମଝିରେ ମଝିରେ କାଠ ଗୋଲାରେ କାଠ ଚିରେ । କୋଳଲଗା ଛୁଆକୁ ବାପ ପଛକେ ପାଖରେ ନେଇ କାମକୁ ଯିବ, ଏ ଶ୍ରେଣୀ ଛୁଆ ବୋହିବେନ । ବାପ ଅମୂଲ ମେଟ୍ରୀ ଗୋଲାଇ ମଝିରେ ମଝିରେ ଛୁଆକୁ ଖୁଆଇବ ପଛକେ ସେ ଆସିବନି । ଦେଖୁନୁ କେଉଁଠିନ ଯେ ହଳଟା ସଞ୍ଜ ଆଗରୁ ଘରକୁ ଯାଉଚନ୍ତି । ଆମ ବାବୁମାନେ ସିନା ପାଠ ପଢ଼ୁଆ ବାବୁ ବୋଲି ମନେ ମନେ ସିଆଣିଆ, ହେଲେ ସେମାନେ ଏତେ ବୋକା, ଅଫିସରୁ ପାଞ୍ଚଟାରେ ଫେରି ଦେଖିଲାବେଳକୁ ମିସ୍ତ୍ରୀ ଯୋଗସାଜରେ କାମ ଚଳେଇଚି, ସ୍ୱଧଯାଏ ବି କାମ ସରୁନି · ବାବୁଙ୍କ ହିସାବରେ ଖରି ବଢ଼ିଆ ମିସ୍ତ୍ରୀ । ତାଙ୍କ ହିସାବରେ ସେ ଠିକ୍ ଅଛନ୍ତି ।"

"ଆଚ୍ଛା ଯାଉଚି ଭାଇ, ଦେଖେ ସେପୁଡ଼ାକ ଗଲେ କୁଆଡ଼େ । ନେ ·· ପାନ ପଇସା ନେ," କହି ବଢ଼ାଇ ଦେଲା ଦୁଃଖୀ । ପାନବାଲା ହସି ହସି କହିଲା, ର ·ଖି··ନୁ, ଖଟେଣ୍ଡ ପାଦାପାନ ଖାଇଲାପରେ ସାଥୀମାଝି ପଇସା ବଢେଇ ଦେଉଚ, କେବେ ତ ଖାଉନ, ମନ ସନ୍ଧ୍ୟାରେ କେତେବେଳେ ଖଟେଣ୍ଡ ଖାଇ ଦେଲୁପେ ପଇସା କ'ଣ ଦଉଚୁ ମ !"

ଦୁଃଖୀ ଗଲାବେଳକୁ କୃଷ୍ଣ ଆଉ ଗୋଟାଏ ଘରର ମେଜିଆ ପକାଉଛୁ । ଭ୍ରୁଟ କଣ୍ଟାଏ, ଦୁଃଖୀ ତାକୁ ସାହାଯ୍ୟ କଲା । କୃଷ୍ଣର ମୁଣ୍ଡରୁ ଟାଳମ ଜଣାଟା କମିନ । ଦୁଃଖୀକୁ କହିଲା—ଦୁଃଖୀଭାଇ, ତୁ ଯାହା କହୁ ପଛକେ, ମୋ ବାପାକୁ ଛାଡ଼ିଦେଲେ, ମେଜିଆ ପକେଇବାରେ ମୋ ସାଥିରେ ଟକର୍ ଦେବାକୁ ଏ କାପିଟାଲରେ ମିସ୍ତ୍ରୀ ନାହାନ୍ତି । ମୁଁ ଯେତେବେଳେ କରଣୀ ଧରେ, କରଣୀ ମୋ ସାଥିରେ କଥା କହେ । ମୁଁ ତା ସାଥିରେ ଦୁଃଖ ସୁଖ ହୁଏ । ମେଜିଆ ପକେଇ ଦେଇ କରଣୀ ଘଷା ଆରମ୍ଭ କରିଦେଲେ ମୁଁ କାହାର ମୁହଁକୁ ଚାହେଁନା । ସ୍ୱର୍ଗର ଉର୍ବଶୀ, ମେନକା, ରମ୍ଭା ତିନିକୁ ତିନିଏ ଆସି ମୋ ଆଗରେ ନାଚିଲେ ବି ମୋ ଆଖି କରଣୀ ଉପରୁ ଉଠିବନି । ଏ ସଂସାରରେ କାହାର ସାଧନାହିଁ ମୋ

ତପସ୍ୟା ଭାଙ୍ଗିବାକୁ । ଭେ ଯେ ଋଷିଗୁଡ଼ାକ ଟଳିଯିବେ ପଛକେ ମୋତେ ଟଳେଇବାକୁ କାହାର ସାଧ୍ୟ ନାହିଁ ।

ଦୁଃଖୀ ହସି ହସି କହିଲା, "ସେଗୁଡ଼ାକ ତତେ କୋଉଠେ ଟଳେଇ ପାରିବେ ମ । ତତେ ଟଳେଇବା ଲୋକ ଅଲଗା, ଯମୁନା କୂଳରେ କାଠ ଭୁଣ୍ଢୁ ଶୁଭିଲେ ଏଠିକି ବି ଶୁଭିବ, ସେତେବେଳେ ନଟନାଗରଙ୍କର ମନ, କେଜାଣି ଟଳିଲେ ଟଳିଯାଇ ପାରେ; ନହେଲେ ଏ ରମ୍ଭା ଫମ୍ଭା ତତେ ଟଳେଇ ପାରିବେ କୋଉଠେ !

କୃଷ୍ଣ ହସିହସି ବେଦମ ହୋଇଗଲା, ଦୁଃଖୀକୁ କୁଣ୍ଢେଇ ପକାଇ ପିଠି ଥାପୁଡ଼େଇ ଦେଇ କହିଲା, "ତୁ ଏଡ଼େ ଦଲଦାର ଲୋକ, ତତେ ଦୁଃଖୀ ନାଁଟା ଦେଲା କିଏ ? ଏଇ ବାପା ମା' ଗୁଡ଼ାକ ତ ନାଁ ଦେଇ ନଜାଣି ପିଲା ପିଲାଙ୍କର ଜୀବନକୁ ମଡର୍ କରି ଦେଉଛନ୍ତି । କଉ ସଂସାରରେ କାହାର ଦୁଃଖ ନାହିଁ ଯେ ଜଣେ ଲୋକ ଏକା କି ଦୁଃଖୀ ନାଁ ପାଇବ । କରେ ଦୁଃଖୀ ଭାଇ, ଠାକୁର ବେଶ୍ରୁ ବିନୋଦିଆଙ୍କ ରସଟା ତୋ ଆଖିରେ ପଡ଼ିଗଲାନା କ'ଣ ? ନହେଲେ କଥାଟାକୁ ଠଉରେଇ ନେଲୁ କିମିତି ? ଶୁଣ, ସବୁ କରିବୁ, ମାଲିକମାନଙ୍କ ଆଗରେ ପେଟର ଗୁମରଟା ଭୁଲ୍‌ରେ ଖୋଲିବୁନି । ତାଙ୍କ ସଂସାର ଅଲଗା, ଆମ ସଂସାର ଅଲଗା ।

ରାଧା କାନ୍ଥର ଆର ପାଖରେ ବସି ସବୁ ଶୁଣୁଥାଏ । ମନେ ମନେ ବହୁତ ହସୁଥାଏ, ମଝିରେ ମଝିରେ ଅଜଣା ଆଶଙ୍କାରେ ବି ଟିକିଏ ଗମ୍ଭୀର ହୋଇ ଯାଉଥାଏ । ଦୁଃଖୀଟା କ'ଣ ସତରେ ସବୁ ଦେଖିଦେଲା ।

ଆଚ୍ଛା କୃଷ୍ଣଭାଇ କାନ୍ଥର ଧାରଟା ଫସ୍‌ଫସ୍‌ କରୁଛ, ଭଲକରି ଧୁରୁମୁସ୍‌ କରିନୁନା କ'ଣ; ପରେ ଫାଟିଗଲେ ସବୁ ସରିଯିବ ।

"ଧେତ୍ ବୋକା, କରେ ଧୁରୁମୁସ୍ ଟାଣକରି ହେଲେ ମେଜିଆ ରହିବ ? ଉପରଟା ତ ପଥରପରି ହୋଇଯିବ, ଭିତରଟା ହୁଲୁହୁଲିଆ ରହିବ । ଉପରର ମସଲା ଆଉ ରସ ଭିତରକୁ ଯିବନି କି ଚପସ୍‌କୁ କାମୁଡ଼ି ରଖିବନି । ଉପରେ ଉପରେ ମସଲା ରହିଗଲେ ପରେ ଫଟେଇବ । ଏତେ ଲୋକଙ୍କ ପାଖରେ କାମ-କରିଚୁ, ଏତିକି ଜାଣିଲୁନି ।"

ଦୁଃଖୀ କହିଲା, "ଓଲଟା କଥା କହୁଚୁ, ଧାର ମାଡ଼ ନ ଖାଇଲେ ଟାଣ ହେବନି···ନିଶ୍ଚୟ ଫାଟିବ ।"

ଏତିକିବେଳେ ସମରେନ୍ଦ୍ର ଆସି ପହଞ୍ଚିଗଲେ । କୃଷ୍ଣ ମୁହଁ ପୋତିଛି କରଣି ଉପରେ । ହାତ ଗୁଡ଼ିଛି, ବାବୁଙ୍କୁ ଦେଖିଲାକ୍ଷଣି ତା'ର ବକ୍ତୃତା ଆରମ୍ଭ ହୋଇଗଲା । "ମଣିଷ କଇଡ଼ ରାତି ଅଧଯାଏ ଖଟିଖଟି ମଲାଣି । ଏଇତ କାଲି ରାତିସାରା ମେଜିଆ ଘଷି ଘଷି କାମ ତୁଟିଲା ବେଳକୁ କୁଆ କା...କଲା । ବାବୁ ତ ରାତି ବାରଟାରେ ପଳେଇଲେ, ମୁଁ ଏକୁଟିଆ ଘାଣ୍ଟି ହେଉଛି, ଖିଆ ନାହିଁ କି ପିଆ ନାହିଁ ।

"ହୋଟେଲରେ ଖାଇନେଲୁନି, ଟଙ୍କା ତ ଦେଇଯାଇଥିଲି ।"

"ବାରଟା ପରେ ହୋଟେଲରେ ମିଳିବ କ'ଣ, ଫେରିଆସି ପାଣି ପେଟେ ପିଇଦେଇ ରାତିସାରା ବସି ଘଷୁଛି, ନହେଲେ ମେଜିଆଟା ଖରାପହୋଇ ଯିବନି ! ସି. ଆର୍. ପି. ଘଣ୍ଟା ଟାଇଁ...ଟାଇଁ ବାଜିଲା ଦୁଇ । ରାସ୍ତାରେ ଗାଡ଼ି ଗୁଡ଼ାକର ଚଳପ୍ରଚଳ କମିଗଲାଣି । ଭିଁ ଭିଁ ଜନ ନାହିଁ, ପାଖରେ ତ ଘରଦ୍ୱାର ନାହିଁ, ଭାରି ଜଗୁଛିଆ ଲାଗିଲା । ଶୁଣିଲି ଏଇଟା ନିଶାଚରମାନଙ୍କର ବୁଲିବା ସମୟ । ଡାହାଣୀ, ଚିରଗୁଣି, ପିତେଇଶୁଣୀ, ଛୁଆଖିଆ, ଭୂତ, ପ୍ରେତ ଏତିକିବେଳେ ବୁଲନ୍ତି, ହାବୁଡ଼ରେ ଯାହାକୁ ପାଆନ୍ତି ଖାଆନ୍ତି ।"

"ତୁ ତା'ହେଲେ ଭାରି ଡରି ଯାଇଥିବୁ କୃଷ୍ଣ...ମୋତେ ତା'ହେଲେ ଘରକୁ ପଠେଇ ଦେଲୁ କାହିଁକି ? ମୁଁ ବି ରହିଯାଇଥାନ୍ତି, ଦିନକର କଥା ।"

"ଆଜ୍ଞା ମୁଁ ଡରିବି ? ତେଉଁଣିଆ ଲଗେଇଛି ପରା, ମୋର ଡର ଏଇ ମଣିଷଗୁଡ଼ାକୁ...ଭୂତ ପ୍ରେତ ଫୁଙ୍କି ଦେଲେ ଉଡ଼ିଯିବେ । ମଣିଷଗୁଡ଼ାକ ଚର୍କି-ବେଜ । କାଲିରାତି ଘଟଣା ଶୁଣିଛନ୍ତି ?"

"କ'ଣ ହେଲା ?"

"ଗୋଟାଏ ପରେ ହେବ, ଟ୍ରକ୍‌ଟାଏ ପେଟ୍ରୋଲ ଟାଙ୍କି ପାଖରେ ହଡ଼ନ୍ ବ୍ରେକ୍ ଦେଲା । ଦି' ତିନି ମିନିଟ ପରେ ପୁଣି ଘିଁ କରି ଫେର ଭଲିଆ ଛୁଟିଲା, ସକାଳେ ଝାଡ଼ା ଗଲାବେଳେ ଦେଖିଲି ଲୋକ ଦଳଦ୍ୱାର । ରାତିରେ ହୋଟେଲର କାଟିଗର ଝାଡ଼ା ଯାଇଥିଲା, ରାସ୍ତା ପାର ହେଲାବେଳେ ଟ୍ରକ ତା'ଉପରେ ମାଡ଼ିଯାଇଛି । ବୁଝିଲେ ଆଜ୍ଞା, ଆଗେସିନା ଜଙ୍ଗଲରେ ବାଘ ମାତ୍ର ପ୍ରତିଦିନ ଗୋଟେ ଦିଇଟାକୁ ମାରୁଥିଲା, ଏବେ ଏଇ ସହରିଆ ବାଘ ପ୍ରତିଦିନ ଯେ ଶହଶହ ଲୋକ ମାରୁଛି ତାକୁ ମାରୁଛି କିଏ ?"

ସମରେନ୍ଦ୍ର ବ୍ୟସ୍ତ ହେଲେ, କହିଲେ ସତରେ ସହରର ରାସ୍ତାଗୁଡ଼ାକ ଅରଣ୍ୟଠୁ ବଳିଯାଇଛି । ଯୋଉଠେ ଘଞ୍ଚ ଅରଣ୍ୟ, ସେଇଠେ ବାଘ ହାତୀ ରହିବେ, ମଣିଷ ମାରିବେ...କ'ଣ କରାଯିବ ।

"ଆଜ୍ଞା ଆଉ ଗୋଟାଏ ଘଟଣା ଘଟିଲା, ମୁଁ ଜୀବନରେ ଭୁଲିପାରିବିନି । ସେତେବେଳକୁ ରାତି ଅଢ଼େଇଟା । ଆମ ଏଇ ଘର ଭିତରଟା ଚହଚହ ମହମହ ହୋଇ ବାସିଲା । ଇମିତିଆ ମିଠା ବାସନା ମୋ ଜୀବନରେ ମୁଁ ପାଇନଥିଲି । ଭାବିଲି ଆକାଶରୁ ପରୀମାନେ ପୃଥିବୀକୁ ବୁଲିବାପାଇଁ ବୋଧହୁଏ ଆସିଚନ୍ତି । ତାଙ୍କ ଖୋସାରୁ ବୋଧେ ଏଇ ମିଠା ମିଠା ଖୁସ୍‌ବୁ ବାହାରୁଚି । ସେମାନେ ତ ନନ୍ଦନକାନନର ଫୁଲଗୁଡ଼ାକ ଲଗେଇଥିବେ, ନହେଲେ ଏତେ ମିଠା ହୁଅନ୍ତା କିମିତି ? ବାହାରକୁ ଯାଇ ଚାରିଆଡ଼କୁ ଚାହିଁଲି, କୌଣସିଆଡ଼େ କେହି ନାହାନ୍ତି । ବତିଟେ ବାହାର କରି ଲଗେଇଲି । ଆଜ୍ଞା କ'ଣ କହିବି, ପୋଲିସଙ୍କୁ ଭୂତ୍‌ରୂପ ହୋଇ ଦି'ଇଟା ଲୋକ ବାହାରିପଡ଼ିଲେ । ଜଣେ ଚାରିଆଡ଼େ ଝୁପ୍ ଝୁପ୍ ଚାଲିଗଲା .. ଗଲାବେଳେ ଝଣ୍‌ଝାଣ ଶବ୍ଦଟେ ହେଉଥାଏ । ଆର ଲୋକଟା ମାଡ଼ି ଆସିଲା ମୋ ପାଖକୁ, ମୋ ପିଠିରେ ଠେଙ୍ଗାଏ ପକେଇଲା । ମୁଁ କରଣୀଟା ଧରି ତା' ଉପରକୁ ଚଢ଼ିଗଲି । ସେ ମୋ ହାତଟାକୁ ଚଟ୍‌କିରି ଧରିପକେଇ କହିଲା, "ଶାଳ ସିଧୁ କୁଆଡ଼େ, ଚାଲ୍ ଥାନାକୁ ଚାଲ୍ .. । ପୁଲିସ୍ ବାବୁଙ୍କୁ ଆଜ୍ଞା ନେହୁରା ହେଲି, ମେଜଆ କାମ ଦେଖେଇଲି, ତା'ପରେ ବିଶ୍ୱାସଗଲା, କହିଲା ଦେ କ'ଣ ଅଛି, ଆପଣ ଯୋଉ ଟଙ୍କା ପାଞ୍ଚଟା ଦେଇଥିଲେ ଖାଇବାକୁ, ସେତକ ଦେଲି, ସେ ମୋ ପକେଟ୍ ଅଣ୍ଡାଳି ବିଡ଼ି କଟାକ, ଦିଆସିଲି ପୁଡ଼ାଟା ବି ନେଇଗଲା । କହିଲି, ପୁଲିସ୍‌ବାବୁ, ଦି'ଖଣ୍ଡ ବିଡ଼ି ଦେଇକରି ଯାଅ, ନିଦ ଭାଙ୍ଗିବାକୁ ବିଡ଼ି ନଥିଲେ କାମ କିମିତି କରିବି ?"

"ସେ ଶଇତାନଟା ହେଲା ?"

ନା ଆଜ୍ଞା ଓଲଟି ପିଠିରେ ଆଉ ଦି' ଠେଙ୍ଗା ଦେଇ କହିଲା, "ଆଉଥରେ ରାତିଅଧରେ ଏକୁଟିଆ ଘରେ ଲଫର୍ ଫସର୍ ହେଲେ ମାମୁଁ ଘର ଦେଖେଇ ଦେବି ।

"ତେବେ ଶୀଘ୍ର କାମ ସାରିଦେ, ଆଜି ଆଉ ରାତିକରିବାନି ।" କହିଲେ ସମରେନ୍ଦ୍ର ।"

ଦୁଃଖୀ ବାବୁଙ୍କୁ ବାହାରକୁ ଡାକି କାନ ପାଖରେ କହିଲା, "ଆପଣ ଯାହା ସବୁ ଶୁଣିଲେ ସବୁଗୁଡ଼ାକ ଡାହା ମିଛ । ସେ ଗଞ୍ଜେଇ ଟାଣିଦେଇ କାଲି ରାତିସାରା ଚା' ଦୋକାନରେ ଶୋଇଥିଲା, ମୁଁ ଖବର ନେଇଚି । ରାତି କାମ ବନ୍ଦ ନକଲେ ସବୁ ମେଜଆ ଖରାପ ହୋଇଯିବ ।

ସମରେନ୍ଦ୍ରଙ୍କ ଭିତରୁ ଗୋଟାଏ ଦୀର୍ଘ ନିଶ୍ୱାସ ପଞ୍ଜରା ଥରାଇ ବାହାରିଆସିଲା ।

●

ମୁଦ୍ରଣ : ଭାରତୀ ପ୍ରେସ୍, କଟକ-୯